# ଭାଗବତ କଥା

ପଞ୍ଚତ୍ରିଂଶ ଖଣ୍ଡ

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଶ୍ରୀ ଉପେନ୍ଦ୍ରନାଥ ହୋତା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

ପଞ୍ଚତ୍ରିଂଶ ଖଣ୍ଡ

ପ୍ରକାଶିକା :
**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରକାଶନ ଉପଦେଷ୍ଟା :
**ଡକ୍ଟର କୃଷ୍ଣପ୍ରସାଦ ମିଶ୍ର**
ପ୍ରଥମ ସଂସ୍କରଣ-୧୯୮୯

ପ୍ରଚ୍ଛଦ :
ଅସିତ ମୁଖାର୍ଜୀ

ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ

ମୂଲ୍ୟ :
ସାଧା—ଟ. ୧୭-୦୦
ବନ୍ଧାଇ—ଟ. ୨୦-୦୦

# BHAGABAT KATHA

( Thirtyfive Part )
**Sri Prabhudatta Brahmachari**

Publisher :
**Srimati Annapurna Mishra**
Cuttack Students' Store
Balubazar, Cuttack-753002

Publication Adviser :
Dr. K. P. Mishra
First Edition : 1989

Price :
Popular : Rs. 17-00
Deluxe : Rs. 20-00



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ସୂଚୀପତ୍ର





# ସ୍ବୀଙ୍କାର ଆଶା

ପରଂ ସୌଖ୍ୟଂ ହି ନୈରାଶ୍ୟଂ ସ୍ୱୈରିଣ୍ୟପ୍ୟାହ ପିଙ୍ଗଳା ।
ତଜ୍ଜାନତୀନାଂ ନଃ କୃଷ୍ଣେ ତଥାପ୍ୟାଶା ଦୁରତ୍ୟୟା ॥

(ଶ୍ରୀ ଭା ୧୦ ସ୍କ, ୪୭ ଅ, ୪୭ ଶ୍ଳୋ)

## ଛପ୍ପୟ

ଆଶା ତେଁ ସଂସାର ବଁଧ୍ୟୌ ଆଶା ହୀ ଜୀବନ, ।
ଆଶା ହୋଁଲେ ସଙ୍ଗ ସଦା ଘର ହୋ ଅଥବା ବନ ॥
ଆଶା ଜଗକୀ କରୈ ନବଣା ହୀ ଫଳ ପାବୈ ।
ଆଶା ପ୍ରଭୁକୀ କରୈ ବିପତ-ବାରିଧି ତର ଜାବୈ ॥
ଆଶା ତଜି କୈଂ ଧୀର ଜନ, ଜାବୈଂ ଜଗ ତେଂ ନକର କୈଂ ।
ଆଶା ମେରୀ ୟହୀ କବ, ରେଉଁ ପ୍ରଭୁ ପଗ ପକର କୈଂ ॥

ଆଶାକୁ ଆଧାର କରି ଏ ସଂସାର ତିଷ୍ଠି ରହିଛି । ନିରାଶାରେ ଜୀବନ ନାହିଁ, ଚେତନା ନାହିଁ, ସ୍ଫୂର୍ତ୍ତି ନାହିଁ ଓ ଉଲ୍ଲାସ ମଧ୍ୟ ନାହିଁ । ଏ ସଂସାରରେ ଯାହାକୁ ଦେଖ ନା କାହିଁକି, ସେ କୌଣସି ନା କୌଣସି ଆଶା ପୋଷଣ କରି ହିଁ ବଞ୍ଚି ରହିଛି । ଭୀଷ୍ମ ପିତାମହ, ଯାହାଙ୍କୁ କି ସଂସାରରେ କେହି ପରାଜିତ କରିବାକୁ ସକ୍ଷମ ହୋଇ ନ ଥିଲେ, ଶେଷକୁ ସେ ସମର ପ୍ରାଙ୍ଗଣରେ ଶୋଇଗଲେ । ବିଶ୍ୱବିଦିତ ବୀର ଦ୍ରୋଣାଚାର୍ଯ୍ୟ ମୃତ୍ୟୁ ବରଣ କଲେ । ଅପରାଜିତ ସୂର୍ଯ୍ୟପୁତ୍ର କର୍ଣ୍ଣ ମଧ୍ୟ ଚିରନିଦ୍ରା ପାଇଁ ନିଦ୍ରା ଗଲେ । ଅନ୍ତରେ ମଧ୍ୟ ଦୁର୍ଯ୍ୟୋଧନ ବିଜୟ କରିବା ଆଶାରେ ଶଲ୍ୟଙ୍କୁ ସେନାପତି ରୂପେ ବରଣ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ଓ ନିଜେ ମଧ୍ୟ ରଣଭୂମିରେ

କ୍ଷତବିକ୍ଷତ ହୋଇ ପଡ଼ି ରହିଥିଲେ । ତାଙ୍କର ଜାନୁଭଗ୍ନ ହୋଇଥିଲା । ଶରୀରରୁ ରକ୍ତ ବହି ଯାଉଥିଲା । ତାଙ୍କ ଜୀବିତାବସ୍ଥାରେ ହିଁ କାକ, ଶୃଗାଳ, ଶକୁନି, ତାଙ୍କ ଶରୀରରୁ ମାଂସ ଖୁମ୍ପି ନେଉଥିଲେ । ଏପରି ଅବସ୍ଥାରେ ମଧ୍ୟ ବିଜୟ କରିବାର ଆଶା ପୋଷଣ କରି ସେ ଅଶ୍ୱତ୍ଥାମାଙ୍କୁ ସେନାପତି ପଦରେ ଅଭିଷିକ୍ତ କରି ତାଙ୍କୁ ପାଣ୍ଡବଙ୍କ ବିନାଶ ନିମନ୍ତେ ପଠାଇ ଥିଲେ । ଆଶା କେତେ ବଳବତୀ ନୁହେଁ ସତେ ?

ଭରତଙ୍କ ପାଇଁ ତାଙ୍କ ଜୀବଦ୍ଦଶାରେ କେଉଁ କଥାର ବା ଅଭାବ ଥିଲା ? ଯେଉଁ ପିତା ତାଙ୍କଠାରେ ବାତ୍ସଲ୍ୟ ସ୍ନେହ ରଖିଥିଲେ, ସେ ସ୍ୱର୍ଗରେ ଯାଇ ରହିଲେ । ତାଙ୍କର ସୁହୃଦ୍, ବନ୍ଧୁ, ଇଷ୍ଟ ଓ ସର୍ବସ୍ୱ ଯେଉଁ ଶ୍ରୀରାମଚନ୍ଦ୍ର ଥିଲେ, ସେ ମଧ୍ୟ ବନଗମନ କଲେ । ଏବେ ସେ ଶ୍ମଶାନ ସଦୃଶ ଅଯୋଧ୍ୟାରେ ରହିପାରନ୍ତେ ବା କିପରି ? ତାଙ୍କ ପାଇଁ ସେଠାରେ କ୍ଷଣମାତ୍ର ରହିବା ଅସହ୍ୟ ହୋଇ ପଡ଼ିଥିଲା । କିନ୍ତୁ ସେ ସେହିଠାରେ ହିଁ ରହିଲେ । ଦିନେ ଦୁଇଦିନ ନୁହେଁ, ମାସେ ଦୁଇମାସ ନୁହେଁ, ବର୍ଷେ ବା ଦୁଇବର୍ଷ ନୁହେଁ; ପୂର୍ଣ୍ଣ ଚଉଦ ବର୍ଷ । ସେ କେବଳ ଏହି ଆଶା ଭରସାକୁ ନେଇ ଏତେ କାଳ ସେଠାରେ ରହି ପାରିଥିଲେ ଯେ, ଚଉଦ ବର୍ଷ ପରେ ମୋତେ ଶ୍ରୀରାମଙ୍କ ଦର୍ଶନ ମିଳିବ ।

ଶବରୀଙ୍କୁ ଆଉ ଅଧିକ ଦିନ ବଞ୍ଚି ରହିବାର କି ଆବଶ୍ୟକ ଥିଲା ? ତା'ର ଆଉ ସଂସାର ସୁଖ ଭୋଗର ଆବଶ୍ୟକତା ବି ନଥିଲା । ଯାହାଙ୍କର ଛତ୍ରଛାୟା ତଳେ ସେ ଜୀବନ ଧାରଣ କରିଥିଲା, ସେହି ଗୁରୁଦେବ ଭଗବାନ ମତଙ୍ଗ ମୁନି ତ ଏବେ ଆଉ ଇହଧାମରେ ନ ଥିଲେ । କିନ୍ତୁ ଏକ ହଜାର ବର୍ଷ ପର୍ଯ୍ୟନ୍ତ ସେ ସେହି ଆଶ୍ରମରେ ଗୁରୁଙ୍କର ଏହି ବଚନ ଉପରେ ବିଶ୍ୱାସ ରଖି ବଞ୍ଚି ରହିଥିଲା ଯେ, ଦିନେ ନା ଦିନେ ରାମ ସେଠାରେ ପଦାର୍ପଣ କରିବେ । ରାମଙ୍କ ଦର୍ଶନ ଆଶାରେ ହିଁ ସେ ବଞ୍ଚି ରହିଥିଲା ।

ଗୋପିକାଗଣଙ୍କ ପାଇଁ ସେମାନଙ୍କ ସଂସାର ଧ୍ୱଂସପ୍ରାୟ ହୋଇ ଯାଇଥିଲା । ଶ୍ରୀକୃଷ୍ଣ ଯେତେବେଳେ ସେମାନଙ୍କୁ ଛାଡ଼ି ମଧୁପୁରୀ ଚାଲିଗଲେ ସେତେବେଳେ ସେମାନଙ୍କର ଆଉ ବଞ୍ଚିରହିବାର କିବା ପ୍ରୟୋଜନ ଥିଲା ? ତଥାପି ମଧ୍ୟ ସେମାନେ ଜୀବନ ଧାରଣ କରି ରହିଥିଲେ । ସେମାନଙ୍କର ଆଶା ଶ୍ୟାମସୁନ୍ଦର କହି ଯାଇଛନ୍ତି, 'ମୁଁ ପୁଣି ଫେରି ଆସିବି ।' ନିଶ୍ଚୟ ଶ୍ୟାମସୁନ୍ଦର ଫେରି ଆସିବେ, ଏହି ଆଶ୍ୱାସନା ବାଣୀକୁ ଭରସା ରଖି ସେମାନେ ନିଜ ନିଜର ଜୀବନ ଧାରଣ କରିଥିଲେ । ଅନ୍ୟ ସମସ୍ତ ଆଶା ପଛକେ ଲୋପ ପାଇପାରେ; କିନ୍ତୁ ଶ୍ରୀକୃଷ୍ଣଙ୍କ ସହିତ ମିଳନର ଆଶାକୁ ତ୍ୟାଗ କରିବା ଅତ୍ୟନ୍ତ ଦୁଷ୍କର ।

ଦେବଯାନୀଙ୍କୁ ତାଙ୍କ ଇଚ୍ଛାନୁରୂପ ସୁନ୍ଦର, ସ୍ୱାସ୍ଥ୍ୟବାନ୍, ଯୁବକ, ସର୍ବୋତ୍କୃଷ୍ଟ ଗୁଣ, ସଙ୍ଗୀତଜ୍ଞ, ସୁଶୀଳ, କୁଳୀନ, ବିନମ୍ର ଓ ପ୍ରେମୀ ସାଥୀ ମିଳିଯାଇଥିଲା ।

ସେ ନିଜ ଜୀବନର ସମସ୍ତ ଆଶା ତାଙ୍କଠାରେ କେନ୍ଦ୍ରିତ କରି ରଖିଥିଲେ । ସେ ମଧ୍ୟ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ତାଙ୍କର ସମସ୍ତ କାର୍ଯ୍ୟ ଅତ୍ୟନ୍ତ ଉଲ୍ଲାସ ମନରେ ସେ କରିଚାଲିଥିଲେ । ଗାନ, ବାଦ୍ୟ ଓ ନୃତ୍ୟ ଦ୍ୱାରା ତାଙ୍କୁ ଆନନ୍ଦ ପ୍ରଦାନ କରୁଥିଲେ । ତାଙ୍କୁ ପ୍ରେମପୂର୍ଣ୍ଣ କଥା କହି ସ୍ନେହ ସାଗରରେ ନିମଜ୍ଜିତ କରଉଥିଲେ । ସେ ସେହି ଗୁରୁ କନ୍ୟାଙ୍କ ଲାଗି ନିଜର ଶରୀର ସମ୍ବନ୍ଧୀୟ ସୁଖକୁ ସୁଖ ବୋଲି ଜ୍ଞାନ କଲେ ନାହିଁ । ଗୁରୁଙ୍କର ନିଜ କନ୍ୟାଠାରେ ଅତ୍ୟନ୍ତ ଅନୁରାଗ ଥିଲା, ଓ ସେ କନ୍ୟାକୁ ଅତ୍ୟଧିକ ସ୍ନେହ କରୁଥିଲେ । ସେ ପ୍ରସନ୍ନ ହେଲେ ଗୁରୁଦେବ ଭଗବାନ୍ ଶୁକ୍ରାଚାର୍ଯ୍ୟ ମୋ ଉପରେ ପ୍ରସନ୍ନ ହୋଇ ଯିବେ, ଏହି ଆଶା ରଖି ସେ ପ୍ରାଣପଣେ ଦେବଯାନୀଙ୍କର ସେବା ଶୁଶ୍ରୂଷା କରୁଥିଲେ; କିନ୍ତୁ ଦେବଯାନୀ ଅନ୍ୟ ଏକ ଆଶାଲତା ରୋପଣ କରି ତହିଁରେ ସ୍ନେହଜଳ ସିଞ୍ଚନ କରି ତାକୁ ବୃଦ୍ଧି କରାଇବାରେ ଲାଗି ଥାଆନ୍ତି । ଅସୁରମାନେ କେତେଥର କଚକୁ ମାରି ଦେଇଥିଲେ; କିନ୍ତୁ ଦେବଯାନୀଙ୍କ ପ୍ରଚେଷ୍ଟାରୁ ଓ ଗୁରୁଙ୍କ କୃପାରୁ ପ୍ରତ୍ୟେକ ଥର ସେ ଜୀବିତ ହୋଇ ଉଠିଥିଲେ ଏବଂ ଗୁରୁ ତାଙ୍କ ସେବାରେ ସନ୍ତୁଷ୍ଟ ହୋଇ ତାଙ୍କୁ ସଞ୍ଜୀବନୀ ବିଦ୍ୟା ପ୍ରଦାନ କରିଥିଲେ । କଚ କୃତକାର୍ଯ୍ୟ ହୋଇ ନିଜ ଗୃହକୁ ପ୍ରତ୍ୟାବର୍ତ୍ତନ କରିବାକୁ ବାହାରିଲେ । ସେତେବେଳକୁ ଦେବଯାନୀଙ୍କର ଆଶାଲତା ଆବଶ୍ୟକତାଠାରୁ ଅଧିକ ମାତ୍ରାରେ ବଢ଼ି ଯାଇଥିଲା । ତହିଁରେ କଳିକା ଦେଖା ଦେଇଥିଲା । ସେ କଚ ରୂପୀ ଭ୍ରମରକୁ ରସପାନ କରିବାପାଇଁ ଆହ୍ୱାନ କଲେ । କିନ୍ତୁ କଚ ତାଙ୍କର ଆମନ୍ତ୍ରଣକୁ ସ୍ୱୀକାର କଲେ ନାହିଁ । ସହସା ଆଶାଲତା ଉପରେ ତୁଷାରାଘାତ ହେଲା । ତାହା ମଉଳିଗଲା, ଶୁଖିଗଲା, ରଙ୍ଗ ପରିବର୍ତ୍ତିତ ହୋଇ ତାହା ବିବର୍ଣ୍ଣ ଦିଶିଲା; ଆଶା ନିରାଶାରେ ପରିଣତ ହେଲା । ପ୍ରେମ ସେତେବେଳେ କୋପରେ ପରିଣତ ହେଲା । ଉଭୟ ପକ୍ଷରୁ ଅବିଶ୍ରାନ୍ତ ଅଭିଶାପ ଧାରା ବର୍ଷଣ ହେଲା । ଏ ସମସ୍ତ କେବଳ ସେହି ଆଶା ଯୋଗୁଁ ହିଁ ସଂଘଟିତ ହୋଇଥିଲା ।

ନୈରାଶ୍ୟ ହେଉଥିଲେ ମଧ୍ୟ ନିଶ୍ଚୟ ପରେ ଆଶା ସର୍ବଦା ସଜାଗ ରୁହେ । ଦେବଯାନୀ ପିତାଙ୍କ ସ୍ନେହର ଦୁରୁପଯୋଗ କଲେ । ତାଙ୍କର ଆଶା, ମର୍ଯ୍ୟାଦାହୀନ ଥିଲା । ବୃଦ୍ଧ ଶୁକ୍ରାଚାର୍ଯ୍ୟ ସେହି ଯୁବତୀକନ୍ୟାର ବଶ ଏପରି ହୋଇଯାଇଥିଲେ ଯେ, ସେ ତା' ହାତର ଖେଳନା ହୋଇ ରହିଥିଲେ । ମର୍ଯ୍ୟାଦା ତ୍ୟାଗ କରି ଯେଉଁମାନେ ଦୁଃଖରେ ଆଶା ରଖନ୍ତି, ସେମାନଙ୍କୁ ସର୍ବଦା ଦୁଃଖ ଭୋଗ କରିବାକୁ ପଡ଼ିଥାଏ । ସୌଭାଗ୍ୟକ୍ରମେ ତାଙ୍କର ରାଜା ଯଯାତିଙ୍କ ସହିତ ଭେଟ ହୋଇଗଲା । ସେ ତାଙ୍କ ଆଗରେ ଅନୁଚିତ ପ୍ରସ୍ତାବ ବାଢ଼ି ବସିଲେ । ବ୍ରାହ୍ମଣ କନ୍ୟା ହୋଇ ସେ କ୍ଷତ୍ରିୟ ସହିତ ବିବାହ କରି ସୁଖ ପ୍ରାପ୍ତିର ଇଚ୍ଛା ପ୍ରକାଶ କଲେ । ରାଜା ଯଯାତିଙ୍କର ମନ ମଧ୍ୟ ଏଥିରେ ବିଚଳିତ ହୋଇଗଲା । କିନ୍ତୁ ସେ ସର୍ବଜ୍ଞ ଶୁକ୍ରାଚାର୍ଯ୍ୟଙ୍କୁ ଭୟ କରୁଥିଲେ । ଦେବଯାନୀ ପିତାଙ୍କୁ ଏଥିରେ ସମ୍ମତ କରାଇନେଲେ । ଏହାଦ୍ୱାରା ତାଙ୍କର ମର୍ଯ୍ୟାଦା ହୀନ ବିବାହ

ହୋଇଗଲା । କିନ୍ତୁ ଏହାର ପରିଣାମ ଯାହା ହେବାର କଥା, ତାହା ହିଁ ହେଲା । ଦେବଯାନୀଙ୍କର କୌଣସି ପୁତ୍ର ରାଜ୍ୟର ଅଧିକାରୀ ହେଲେ ନାହିଁ । ସେମାନେ ସମସ୍ତେ ବର୍ଣ୍ଣାଶ୍ରମୀ ବହିଷ୍କୃତ ହେବାରୁ ରାଜାଙ୍କର ଦେବଯାନୀଙ୍କଠାରେ ଆଉ ସୁଖର ଆଶା ରହିଲା ନାହିଁ । ଯେଉଁ କାରଣରୁ ତାଙ୍କୁ ଯୁବାବସ୍ଥାରେ ହିଁ ବାର୍ଦ୍ଧକ୍ୟ ପ୍ରାପ୍ତ କଲା । ପୁତ୍ରର ଯୁବାବସ୍ଥାକୁ ନେଇ ସେ ଭୋଗ କଲେ ଯେତ, କିନ୍ତୁ ତାଙ୍କର ବିଷୟତୃଷ୍ଣା ଶାନ୍ତ ହେଲା ନାହିଁ । ଶେଷରେ ଅତ୍ୟନ୍ତ ଦୁଃଖିତ ହୋଇ ସେ କହିଲେ—

"ଯାହା ମନ୍ଦମତିଙ୍କ ପାଇଁ ଅତ୍ୟନ୍ତ ଦୁସ୍ତ୍ୟଜ୍ୟ ଓ ଶରୀର ଜୀର୍ଣ୍ଣ ହେବାପରେ ବି ଯାହା ଜୀର୍ଣ୍ଣ ହୁଏ ନାହିଁ, ସେହି ଦୁଃଖବହୁଳ ବିଷୟ ତୃଷ୍ଣାକୁ କଲ୍ୟାଣକାମୀ ପୁରୁଷ ଶୀଘ୍ର ତ୍ୟାଗ କରିଦେବା ଉଚିତ ।"

ଏହା ବାସ୍ତବ କଥା ଯେ ଏହି ଶରୀର ଆଶାକୁ ନେଇ ହିଁ ତିଷ୍ଠି ରହିଛି, ଯେ ପର୍ଯ୍ୟନ୍ତ ନିଃଶ୍ୱାସ ପ୍ରଶ୍ୱାସ ଚାଲିଛି, ସେ ପର୍ଯ୍ୟନ୍ତ ଆଶା ରହିଛି । ଆମେ ଯେପରି ଆଶା କରିବା ଆମକୁ ସେପରି ଫଳ ମିଳିବ । ଏ ସଂସାର ଅନିତ୍ୟ, ନାଶବାନ୍, ଓ ଦୁଃଖ ବହୁଳ । ଏଥିରେ ଯଦି ଆଶା ରଖିବା, ତେବେ ଦୁଃଖ ପ୍ରାପ୍ତି ହେବ, ନାଶବାନ୍, ଅନିତ୍ୟ ଓ କ୍ଷଣଭଙ୍ଗୁର ବସ୍ତୁ ମିଳିବ ଓ ଶୁଦ୍ଧ, ସନାତନ, ସୁଖ ସ୍ୱରୂପ ପରମେଶ୍ୱରଙ୍କର ପ୍ରାପ୍ତିର ଆଶା ପୋଷଣ କରିବାଦ୍ୱାରା ତହିଁରୁ ସୁଖ ମିଳିବ ଓ ସନାତନ ଲୋକର ପ୍ରାପ୍ତି ହେବ । ସଂସାରର ଆଶା ଆମକୁ ଦୀନ, ଦୁଃଖୀ କରିଦିଏ । ଯେଉଁଠି ମନ ମଧ୍ୟରେ ଧନର ଆଶା ଉତ୍ପନ୍ନ ହୁଏ, ସେଠାରେ ଆମକୁ ଧନୀ ଲୋକଙ୍କ ଆଗରେ ନତ ହେବାକୁ ପଡ଼େ । ଅବଶ୍ୟ ନିଜର ମର୍ଯ୍ୟାଦା ଦୃଷ୍ଟିରୁ ଆମେ ନତମସ୍ତକ ହୋଇ ନ ଥାଉ, ତଥାପି ମନ ମଧ୍ୟରେ ଆମ ଶିରକୁ ନତ କରିବାକୁ ପଡ଼ିଥାଏ । ଆଶା ହେଉଛି ଏକ ଅତ୍ୟନ୍ତ କ୍ଷୀଣ ଓ ପାତଳା ବସ୍ତୁ । ଯେଉଁଠାରେ ଆଶା ପୂରଣ ହେବାର କିଛିହେଲେ ମାତ୍ର ସମ୍ଭାବନା ନଥାଏ, ସେଠାରେ ମଧ୍ୟ ଆଶାର ଏକ କ୍ଷୀଣ ରେଖା ଦେଖାଯାଇ ଥାଏ । ହାୟ ! ଆଶା ପଛରେ ମନୁଷ୍ୟ କ'ଣ ବା ନ କରିବାକୁ ଚେଷ୍ଟା କରୁଛି ଓ କେତେ କ୍ଲେଶ ବା ସହ୍ୟ ନ କରୁଛି ?

ମହାଭାରତର ଶାନ୍ତି ପର୍ବରେ ଏ ସମ୍ବନ୍ଧରେ ଏକ ଅତି ସୁନ୍ଦର କାହାଣୀ ଅଛି । ସୁମିତ୍ର ନାମରେ ଜଣେ ରାଜା ଥିଲେ । ସେ ଥରେ ଶିକାର କରିବା ପାଇଁ ବନକୁ ଯାଇଥିଲେ । ସେ ଗୋଟିଏ ବଡ଼ ମୃଗ ବା ହରିଣ ପଛରେ ନିଜ ଘୋଡ଼ାକୁ ଦୌଡ଼ାଇ ଅନେକ ବାଟ ଧାଇଁଲେ । ତାଙ୍କର ପୂର୍ଣ୍ଣ ଆଶା ଥିଲା ଯେ, ସେ ସେହି ମୃଗକୁ ନିଶ୍ଚୟ ମାରିବେ । କାରଣ ମୃଗଟି ବାରମ୍ବାର ତାଙ୍କ ସମ୍ମୁଖବର୍ତ୍ତୀ ହେଉଥିଲା ଓ କେବେ କେବେ ଦୃଷ୍ଟିପଥାରୂଢ଼ ହୋଇ ପୁନଶ୍ଚ ଦୃଷ୍ଟିଗୋଚର ହେଉଥିଲା । ଏହି ପ୍ରକାର ରାଜା ଘୋଡ଼ା ଦୌଡ଼ାଇ ଶେଷରେ ଘୋର ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ।

ସେ ତାଙ୍କର ସମସ୍ତ ଶକ୍ତି ମୃଗକୁ ମାରିବାପାଇଁ ଖଟାଇଲେ । ହଠାତ୍ ମୃଗଟି ତାଙ୍କ ସମ୍ମୁଖରେ ଦେଖା ଦେଲା ଓ ସେ ଏକ ତୀକ୍ଷ୍ଣଶର ତା' ଉପରକୁ ଛାଡ଼ିଲେ । କିନ୍ତୁ ଦୁର୍ଭାଗ୍ୟକୁ ରାଜାଙ୍କର ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ଶରଟି ହରିଣ ଉପରେ ନ ବାଜି ଅନ୍ୟତ୍ର ବାଜିଲା । ହରିଣଟି ଘୋର ଅରଣ୍ୟ ମଧ୍ୟକୁ ପଶିଯାଇ ଅଦୃଶ୍ୟ ହୋଇଗଲା । ରାଜାଙ୍କର ସବୁ ଆଶା ପାଣି ଫାଟିଗଲା । ସେ ତାଙ୍କ ସାଥିମାନଙ୍କୁ ଛାଡ଼ି ଧାଇଁ ଧାଇଁ ଥକି ପଡ଼ିଥିଲେ । କ୍ଷୁଧା ଓ ପିପାସାରେ ତାଙ୍କର ଶ୍ରୀମୁଖ ଶୁଖି ଯାଇଥିଲା । ଅକୃତକାର୍ଯ୍ୟ ହୋଇଥିବାରୁ ସେ ନିରାଶ ହୋଇ ପଡ଼ିଥିଲେ । ଏପରି ଅବସ୍ଥାରେ ଜଳ ଆଶାରେ ବିଭିନ୍ନ ସ୍ଥାନ ଅନ୍ୱେଷଣ କରୁ କରୁ ସେ ମୁନିମାନଙ୍କର ଆଶ୍ରମ ନିକଟରେ ପହଞ୍ଚିଲେ ଓ ସେଠାରେ ସେ ମହାମୁନି ଋଷଭଙ୍କୁ ଦର୍ଶନ କଲେ । ଉଭୟ ପକ୍ଷରୁ ସ୍ୱାଗତ ସମ୍ମାନ ସମ୍ବର୍ଦ୍ଧନା ହେବା ପରେ ରାଜା କହିଲେ—"ବ୍ରହ୍ମନ୍ ! ସମୁଦ୍ର ଓ ଆକାଶକୁ ଲୋକମାନେ ବହୁତ ବଡ଼ ବୋଲି କହନ୍ତି । କିନ୍ତୁ ମୋ ବିବେଚନାରେ ଆଶା ଏ ଉଭୟଠାରୁ ବଡ଼ । ଆପଣ କୃପାକରି କହନ୍ତୁ ଯେ, ଅସୀମ ଆଶା ପୋଷଣ କରିଥିବା ପୁରୁଷ ଓ ଅସୀମ ଆକାଶ ମଧ୍ୟରେ ବଡ଼ କିଏ ? ବ୍ରହ୍ମନ୍ ! ଏହି ଆଶା ସମ୍ବନ୍ଧରେ ମୋର ବଡ଼ ସନ୍ଦେହ ଜାତ ହୋଇଛି । ଆପଣ ସର୍ବଜ୍ଞ, ଓ କୃପାଳୁ ଅଟନ୍ତି, ମୋ ପ୍ରଶ୍ନର ଉତ୍ତର ଦେବାରେ ଆପଣଙ୍କ ତପସ୍ୟାରେ ବାଧା ନ ଆଣି ଅବସର ସମୟରେ ମୋର ଏହି ଆଶା ସମ୍ବନ୍ଧୀୟ ପ୍ରଶ୍ନର ଉତ୍ତର ଦେବେ, ଆଶାର କାରଣ ବୁଝାଇ ସେହି ଆଶା ଶକ୍ତିର ପରିଚୟ କରାଇ ଦେବେ । ଏହା ଦ୍ୱାରା ମୋ ମନରୁ ସଂଶୟ ମୋଚନ ହେବ ।"

ଏହା ଶୁଣି ମହାମୁନି ଋଷଭ ହସି ହସି କହିଲେ—"ରାଜନ୍ ! ତୁମର ପ୍ରଶ୍ନ ଅତି ଉତ୍ତମ, ଏ ବିଷୟରେ ମୁଁ ତୁମକୁ ଏକ ପ୍ରତ୍ୟକ୍ଷ ଅତି ସୁନ୍ଦର ଘଟଣା କହୁଅଛି । ଏହି ଘଟଣାକୁ ଶୁଣିଲେ ତୁମେ ତୁମ ପ୍ରଶ୍ନର ଉତ୍ତର ପାଇ ପାରିବ ଓ ତୁମର ସନ୍ଦେହ ଦୂର ହେବ ।"

ରାଜନ୍ ! ମୁଁ ଥରେ ତୀର୍ଥାଟନ କରୁ କରୁ ବଦରୀନାରାୟଣ ଯାଇଥିଲି । ସେଠାରେ ଅଶ୍ୱଶିର ନାମକ ଜଣେ ମହର୍ଷିଙ୍କର ଆଶ୍ରମ ଥିଲା । ତାହା ଲିପାପୋଛା ହୋଇ ଅତ୍ୟନ୍ତ ନିର୍ମଳ ଥିଲା ଓ ଅତି ପବିତ୍ର ଥିଲା । ସେଠାରେ ସ୍ଥାନେ ସ୍ଥାନେ ଦେବତାମାନଙ୍କ ଉଦ୍ଦେଶ୍ୟରେ ବେଦି ନିର୍ମିତ ହୋଇଥିଲା । ଏକ ବଦରୀ ବୃକ୍ଷ ମୂଳରେ ନର-ନାରାୟଣ ମୁନି ମଧ୍ୟ ତପସ୍ୟା କରୁଥିଲେ । ସମ୍ମୁଖରେ ସୁନ୍ଦର ସ୍ୱଚ୍ଛ ସଲିଳ ବିଶିଷ୍ଟ ସରୋବର ଥିଲା । ମୁଁ ସେହି ସରୋବରରେ ସ୍ନାନ କଲି ଓ ନିତ୍ୟକର୍ମ ନ କରି ପ୍ରଥମେ ମହାମୁନି ଅଶ୍ୱଶିରଙ୍କ ନିକଟକୁ ଗଲି । ମୁନି ବିଧି ମୁତାବକ ମୋର ଆତିଥ୍ୟ ସମ୍ପାଦନ କଲେ ଓ ନିକଟରେ ଥିବା ଗୋଟିଏ କୁଟୀରରେ ମୋର

ରହିବାର ସୁବନ୍ଦୋବସ୍ତ କରିଦେଲେ । ହଠାତ୍ ଜଣେ ବିଚିତ୍ର ମୁନିଙ୍କର ଆଗମନ ଦେଖି ମୁଁ ସେହି କୁଟୀରରେ ମୋର ଆସନ ଆଉ ରଖି ନ ଥିଲି । ମୋ ଜୀବନରେ ସେ ପର୍ଯ୍ୟନ୍ତ ମୁଁ ଏପରି ଜଣେ ଲୋକ ଆଗରୁ କେବେହେଲେ ଦେଖି ନ ଥିଲି । ଉଚ୍ଚତାରେ ସେ ସାଧାରଣ ଲୋକଙ୍କ ଅପେକ୍ଷା ଆଠ ଦଶଗୁଣ ଡେଙ୍ଗା ଥିଲେ, କିନ୍ତୁ ଏପରି ପତଳା ଓ ଦୁର୍ବଳ ଥିଲେ ଯେ ତାହାର କୌଣସି ଉପମା ଦିଆଯାଇ ନ ପାରେ । ତାଙ୍କର କୌଣସିଟି ଅଙ୍ଗ କନିଷ୍ଠ ଅଙ୍ଗୁଳିଠାରୁ ମୋଟା ନ ଥିଲା । ତାଙ୍କର ହସ୍ତ ପଦ କୁଶ ପରି ସରୁ ଓ ଲମ୍ବ ଲମ୍ବ ଥିଲା । ଅଙ୍ଗୁଳିଗୁଡ଼ିକ ମଧ୍ୟ ତୃଣ ସଦୃଶ ଅତି ସରୁ ଓ ଲମ୍ବା ଲମ୍ବା ଥିଲା । ତାଙ୍କ ରୂପ ଅନୁରୂପ ତାଙ୍କର ଶିର, ମୁଣ୍ଡ, ଆଖି, କାନ, ଆଦି ଅଚଳ ଥିଲା । ମୁଁ ସେହି ମୁନିଙ୍କୁ ଦେଖି ଉତ୍ଥିତ ହୋଇଗଲି । ଭୟ କାରଣରୁ ମୁଁ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲି ଓ ପାଖକୁ ଧାଇଁ ଯାଇ ତାଙ୍କ ପଦଯୁଗଳର ବନ୍ଦନା କଲି ! ଇତ୍ୟବସରରେ ସେଠାକୁ ଅହୁରି ଅନେକ ମୁନି ଋଷି ଆସିଯାଇଥିଲେ । ପ୍ରତ୍ୟେକ ତାଙ୍କୁ ପ୍ରଣାମ କଲେ । ସମସ୍ତଙ୍କର ସ୍ୱାଗତ ସମ୍ବର୍ଦ୍ଧନା ଗ୍ରହଣ କରି ସେହି ମହାମୁନି ସେଠାରେ ଉପବେଶନ କଲେ । ତାଙ୍କର ନାମଥିଲା 'ମହର୍ଷି ତନୁ' । ତାଙ୍କ ଆଜ୍ଞାରେ ଆମେ ସମସ୍ତେ (ମୁନି ସକଳ) ତାଙ୍କ ଚତୁର୍ଦ୍ଦିଗରେ ବସି ପଡ଼ିଲୁ । ସେ ସବୁ ଅଞ୍ଚଳର ଧର୍ମକଥା କହିବାକୁ ଲାଗିଲେ । ସେହି ସମୟରେ ସେଠାରେ ଜଣେ ରାଜା ଆସି ପହଞ୍ଚିଲେ । ସେ ଅତ୍ୟନ୍ତ ଉଦାସ ଥିଲେ । ତାଙ୍କର ମୁଖ ମଣ୍ଡଳ ଶୁଖି ଯାଇଥାଏ । ଶ୍ରମ କାରଣରୁ ତାଙ୍କର ସମସ୍ତ ଅଙ୍ଗ ଶିଥିଳ ହୋଇ ପଡ଼ିଥାଏ । ସେ ତାଙ୍କର ନାମ ଗୋତ୍ର ପ୍ରକାଶ କରି ମୁନିଗଣଙ୍କୁ ପ୍ରଣାମ କଲେ ଓ ତନୁମୁନିଙ୍କ ଆଜ୍ଞା ପାଇ ସେ ସେଠାରେ ବସିଲେ । ମୁନି ରାଜାଙ୍କର ଯଥୋଚିତ ସ୍ୱାଗତ ସତ୍କାର କରି, ତାଙ୍କ ଦୁଃଖର କାରଣ ପଚାରିଲେ ।

ରାଜା କହିଲେ—"ବ୍ରହ୍ମନ୍ ! ମୋର ନାମ ବୀରଦ୍ୟୁମ୍ନ । ଭୂରିଦ୍ୟୁମ୍ନ ନାମରେ ମୋର ଅତି ସୁଶୀଳ, ଧର୍ମପରାୟଣ ଏକମାତ୍ର ପୁତ୍ର ଥିଲା । ସେ ଏହି ଅରଣ୍ୟରେ କେଉଁଠାରେ ନିଖୋଜ ହୋଇ ଗଲା । ତାକୁ ହରାଇ ମୁଁ ଅତ୍ୟନ୍ତ ଦୁଃଖୀ । ଏ ସଂସାର ମୋତେ ଶୂନ୍ୟ ଶୂନ୍ୟ ପ୍ରତୀତ ହେଉ ଅଛି । ମୁଁ ଏହି ଆଶା ପୋଷଣ କରି ଏହି ବନକୁ ଆସିଛି ଯେ, ମୋର ପୁତ୍ରକୁ ମୁଁ ଏଠାରୁ ପାଇ ପାରିବି । ସଂସାରରେ ଆଶା ହିଁ ଅତି ଦୁର୍ଲଭ ବସ୍ତୁ । ମୁନିବର ! ଆଶାଠାରୁ ବଳି କ'ଣ ଅନ୍ୟ କୌଣସି ଦୁର୍ଲଭ ବସ୍ତୁ ଅଛି ? ଆପଣ ମୋର ପୁତ୍ର ସମ୍ବନ୍ଧରେ ଯଦି କିଛି ଜାଣି ଥାଆନ୍ତି ତେବେ ମୋତେ କହନ୍ତୁ ।"

ଋଷଭ ମୁନି ରାଜା ସୁମିତ୍ରଙ୍କୁ କହିଲେ—"ରାଜନ୍ ! ଯେତେବେଳେ ମହାରାଜ ବୀରଦ୍ୟୁମ୍ନ ମହର୍ଷି ତନୁଙ୍କୁ ଏ କଥା ପଚାରିଲେ ସେତେବେଳେ ମୁନିବର କିଛି ସମୟ ପର୍ଯ୍ୟନ୍ତ ଧ୍ୟାନ କରି ଶେଷକୁ କହିଲେ—"ରାଜନ୍ ! ତୁମ ପୁତ୍ର ଏକ ଋଷିଙ୍କ ଆଶାକୁ ପାଣି ଫଟାଇ ଦେଇଥିଲେ । ଜଣେ ଋଷି ତାଙ୍କୁ ଯଜ୍ଞକର୍ମ ସକାଶେ ଏକ ସୁବର୍ଣ୍ଣ କଳସ

ଓ ବଲ୍‌କଲ ବସ୍ତ୍ର ଯାଚଜ୍ଞା କରିଥିଲେ । ଏ ବସ୍ତ୍ର ଦେବା ତ ଦୂରର କଥା, ବରଂ ସେ ସେହି ଲୋକ ପୂଜିତ ବିପ୍ରର୍ଷିଙ୍କୁ ଅପମାନିତ କଲେ । ଏହି କାରଣରୁ ସେ ବର୍ତ୍ତମାନ ବଡ଼ ସଙ୍କଟମୟ ପରିସ୍ଥିତିରେ ପଡ଼ି ଯାଇଛନ୍ତି । ସମର୍ଥ ଥାଇ ମଧ୍ୟ ଯେଉଁବ୍ୟକ୍ତି କାହାର ଆଶାକୁ ପ୍ରତିହତ କରେ, ତାକୁ ବି ଦିନେ ନା ଦିନେ ନିରାଶ ହେବାକୁ ପଡ଼ିଥାଏ ।"

ଏହା ଶୁଣି ରାଜା ବୀରଦ୍ୟୁମ୍ନ ଅତ୍ୟନ୍ତ ହତାଶ ହୋଇ ପଡ଼ିଲେ । ସେ ସେହିଠାରେ ମୂର୍ଚ୍ଛିତ ହୋଇ ଟଳି ପଡ଼ିଲେ ।

ରାଜା ସୁମିତ୍ର ଋଷଭ ମୁନିଙ୍କୁ ପଚାରିଲେ—"ବ୍ରହ୍ମନ୍ ! ରାଜପୁତ୍ର ତ ଜଣେ ଋଷିଙ୍କୁ ଅପମାନ ଦେଲେ, ତାଙ୍କ ଆଶାକୁ ଭଗ୍ନ କଲେ, କିନ୍ତୁ ରାଜା କି ପାପ କରିଥିଲେ ଯେ ତାଙ୍କୁ ପୁତ୍ର ଶୋକରେ ନିରାଶ ହେବାକୁ ପଡ଼ିଲା ?"

ଏ କଥା ଶୁଣି ଋଷଭ ମୁନି କହିଲେ—"ରାଜନ୍ ! ଏକେ ତ ସେ ଅତ୍ୟନ୍ତ କ୍ଷୀଣ ତନୁ ମହର୍ଷି ଥିଲେ । ସେ ପ୍ରଥମେ ମାନ-ସମ୍ମାନ ଇଚ୍ଛାରେ ରାଜାମାନଙ୍କ ନିକଟକୁ ଯାଉଥିଲେ । ପରିଭ୍ରମଣ କରୁଥିବା ରାଜା ବୀରଦ୍ୟୁମ୍ନଙ୍କ ନିକଟକୁ ସେ ମଧ୍ୟ ଗଲେ । ସେ ତାଙ୍କର ଯଥୋଚିତ ସତ୍କାର କଲେ ନାହିଁ । ଏହାଦ୍ୱାରା ତାଙ୍କ ହୃଦୟରେ ଅତ୍ୟନ୍ତ ଆଘାତ ଲାଗିଲା । ସମସ୍ତ ସମୟରେ ଆଶାଭଗ୍ନ ହୋଇଗଲେ ଆତ୍ମ ସମ୍ମାନ ବଳବତ୍ତ ହୋଇ ଉଠେ ଓ ଆଳସ୍ୟ ପରାୟଣ ଲୋକ ବି ଅତ୍ୟନ୍ତ ଉଦ୍ୟୋଗୀ ହୋଇ ପଡ଼ନ୍ତି । ସେହି ସମୟରେ ଏହି ମହର୍ଷି ପ୍ରତିଜ୍ଞା କଲେ ଯେ ମୁଁ ଆଜିଠାରୁ କୌଣସି ରାଜାଙ୍କଠାରୁ କୌଣସି ବସ୍ତୁ ପ୍ରାପ୍ତିର ଆଶା ରଖିବି ନାହିଁ କିମ୍ବା ସେମାନଙ୍କୁ କୌଣସି ପ୍ରକାର ଯାଚଜ୍ଞା କରିବି ନାହିଁ । ଏହା ସ୍ଥିର କରି ସେ ଘୋର ତପସ୍ୟା କରିବାକୁ ଲାଗିଲେ । ନିଜ ଶରୀରକୁ ଅତ୍ୟନ୍ତ କୃଶ କରିଦେଲେ । ମନୁଷ୍ୟକୁ ସେହି ପର୍ଯ୍ୟନ୍ତ କ୍ଳେଶ ହୋଇଥାଏ, ଯେ ପର୍ଯ୍ୟନ୍ତ ତା' ମନରେ ଆଶା ଥାଏ । ଯେତେବେଳେ ସେ ସମସ୍ତ ଆଶା ପରିତ୍ୟାଗ କରେ ସେତେବେଳେ ସମସ୍ତ କଥା ତାକୁ ସ୍ୱତଃ ପ୍ରାପ୍ତ ହୋଇଥାଏ । ଯଦି କୌଣସି ସମୟରେ ସ୍ୱପ୍ନରେ କୌଣସି ଆଶା ସୃଷ୍ଟି ହୁଏ, ତାହା ମଧ୍ୟ ପୂର୍ଣ୍ଣ ହୋଇଯାଏ । ଯେଉଁ ରାଜାଙ୍କ ନିକଟକୁ ସେ ସମ୍ମାନ ଇଚ୍ଛାରେ ଯାଇଥିଲେ, ସେ କି ରାଜ-ମଦରେ ପରିପୂର୍ଣ୍ଣ ହୋଇ ତାଙ୍କୁ ପ୍ରଥମେ ଯଥୋଚିତ ସମ୍ମାନ କରି ନ ଥିଲେ, ଏବେ ସେହି ରାଜା ଆସି ତାଙ୍କ ଚରଣତଳେ ଲୋଟିବାକୁ ଲାଗିଲେ । ରାଜା ତାଙ୍କୁ ସେହି ମହର୍ଷି ବୋଲି ଚିହ୍ନିପାରି ନ ଥିଲେ । କିନ୍ତୁ ସେ ଧ୍ୟାନ ସ୍ନାନଙ୍କ ପରି ତାଙ୍କ ପାଦତଳେ ଲୋଟି ଅତି ଦୈନ୍ୟ ସ୍ୱରରେ କହିଲେ—"ବ୍ରହ୍ମନ୍ ! ଆପଣ ମୋତେ ଆଜ୍ଞା ଦେଲେ ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି ।"

ମହର୍ଷି ତନୁ କହିଲେ—"ହଁ, ରାଜନ୍ ପଚାରନ୍ତୁ ।"

ରଜା ପଚାରିଲେ—"ବ୍ରହ୍ମନ୍ ! ଆପଣ ମୋତେ କହନ୍ତୁ, ଆଶା କେତେ ଦୁର୍ବଳ ବସ୍ତୁ । ଏହାର କ'ଣ କିଛି ମାପଚୋପ ଅଛି ?"

ରାଜାଙ୍କର ଏହି ପ୍ରଶ୍ନ ଶୁଣି ମହାମୁନି ତନୁ କରି କରି କରି ହସି ଉଠିଲେ । ହସିବା ସମୟରେ ତାଙ୍କ ଶ୍ରେଷ୍ଠ ମୁଖର ଶ୍ରେଷ୍ଠ ଶ୍ରେଷ୍ଠ ଅରୁଆ ଚାଉଳ ସଦୃଶ ଦାନ୍ତ-ଗୁଡ଼ିକ ଝଲସି ଉଠୁଥିଲା । ସେ କହିଲେ—"ଏହି ଆଶାଠାରୁ ବଳି ସଂସାରରେ କ୍ଷୀଣ ଓ ଦୁର୍ବଳ ବସ୍ତୁ ଆଉ କିଛି ନାହିଁ ।"

ରାଜା ପଚାରିଲେ—"ଏହାର କାରଣ କ'ଣ ଭଗବନ୍ ! ଆପଣ ଆଶାକୁ ସବୁଠାରୁ ଦୁର୍ବଳ ଓ ପତଳା ବୋଲି କାହିଁକି କହୁଛନ୍ତି ?"

ମୁନି କହିଲେ—"ରାଜନ୍ ! ପୂର୍ବେ ମୋ ମନରେ ଏକ ସମୟରେ କୌଣସି ଆଶା ଉତ୍ପନ୍ନ ହୋଇଥିଲା ଓ ମୁଁ ସେହି ଆଶା ନେଇ ଅମୁକ ରାଜାଙ୍କ ନିକଟକୁ, ଅମୁକ ଧନବାନଙ୍କ ନିକଟକୁ ଗଲେ ମୋର ଆଶା ପୂର୍ଣ୍ଣ ହେବ ଭାବି, ଖୁବ୍ ବଡ଼ ଆଶା ପୋଷଣ କରି ସେହି ଧନବାନ୍ଙ୍କ ନିକଟକୁ ଓ ରାଜାଙ୍କ ନିକଟକୁ ଅନେକ ଥର ଯାଇଛି । ସେତେବେଳେ ମୋ ମନର ଅବସ୍ଥା କି ପ୍ରକାର ହୋଇଛି, ତାହା ମୋତେ ହିଁ ଜଣା । ଏହି ନିନ୍ଦିତ ଆଶା ଯେଉଁ ବସ୍ତୁର ଚିନ୍ତାକୁ ଆଣି ମନ ସମ୍ମୁଖରେ ପହଞ୍ଚାଏ, ସେହି ବସ୍ତୁ ନେଇ ସେ ଆକାଶ ପାତାଳ ଏକ କରିଦିଏ । ସେହି ଲୋକଙ୍କ ନିକଟକୁ ଗଲେ ଆଶା ପୂର୍ଣ୍ଣ ହେବ କି ନ ହେବ । ପୂର୍ଣ୍ଣ ହୋଇଗଲେ ମୁଁ ଏମା କରିବି, ତେମା କରିବି, ଏପରି ରହିବି, ସେପରି ରହିବି, ଇତ୍ୟାଦି କେତେ ଯେ ସଙ୍କଳ୍ପ ବିକଳ୍ପ ଭାବ ଜାଗ୍ରତ ହୁଏ, ତାହା କହିବା ସମ୍ଭବ ନୁହେଁ । ମନ ମଧ୍ୟରେ କୌଣସି ନା କୌଣସି ଆଶାର ଉଦ୍ରେକ ହେଉ ନା କାହିଁକି, ତାହା ପୂର୍ଣ୍ଣ କରିବା ପାଇଁ ବହୁ ପ୍ରଯତ୍ନ କରିବାକୁ ପଡ଼େ । ଆଶା କେବେହେଲେ ପୂର୍ଣ୍ଣ ହୁଏ ନାହିଁ । ତହିଁରୁ ଶାଖା-ଉପଶାଖା ସର୍ବଦା ବାହାରିବାରେ ଲାଗିଥାଏ । ଯେ ସଂସାରର ଆଶା କରନ୍ତି, ସେ ସଂସାରର ଦାସ ହୋଇ ଯାଆନ୍ତି । ଯେଉଁମାନେ ସମସ୍ତ ଆଶାକୁ ଜଳାଞ୍ଜଳି ଦେଇ ଦିଅନ୍ତି, ସାରା ସଂସାର ତାଙ୍କର ଦାସ ହୋଇଯାଏ । ଏହି ଆଶା ଏତେ କୁଟିଳା ଯେ ଯେଉଁ କ୍ଷେତ୍ରରେ ଏହା ପୂର୍ଣ୍ଣ ହେବାର ଟିକିଏ ହେଲେ ବି ସମ୍ଭାବନା ନ ଥାଏ, ସେଠାରେ ମଧ୍ୟ ସେ ସର୍ବଦା ଲାଗି ରହିଥାଏ ।"

ରାଜା କହିଲେ—"ବ୍ରହ୍ମନ୍ ! ଆପଣ ଆଶାକୁ ଦୁର୍ବଳ ବୋଲି ମଧ୍ୟ କହୁଛନ୍ତି ଓ ତାହାର ଶକ୍ତି ଅତି ପ୍ରବଳ ବୋଲି ମଧ୍ୟ କହୁଛନ୍ତି । ଯଦି ଆପଣ କିଛି ନ ଭାବିବେ, ତେବେ ମୁଁ ଆପଣଙ୍କୁ ଅନ୍ତର ଗୋଟିଏ ପ୍ରଶ୍ନ ପଚାରିବି ।"

ମୁନି କହିଲେ—"ରାଜନ୍ ! ଏଥିରେ ଖରାପ ଭାବିବାର କ'ଣ ଅଛି ? ଆପଣ ଯାହା ପଚାରିବାକୁ ଇଚ୍ଛା କରୁଛନ୍ତି, ତାହା ପଚାରନ୍ତୁ ।"

ରାଜା କହିଲେ—"ବ୍ରହ୍ମନ୍ ! ସଂସାରରେ ମୁଁ ବହୁତ ଭ୍ରମଣ କରିଛି; କିନ୍ତୁ ଆପଣଙ୍କ ପରି କ୍ଷୀଣତନୁ ଓ ଦୁର୍ବଳ ମହାତ୍ମା ମୁଁ କୌଣସିଠାରେ ଦେଖି ନାହିଁ । ଆପଣ କୃପା କରି କହନ୍ତୁ ଯେ ସଂସାରରେ ଆପଣଙ୍କ ପରି ଆଉ କେହି ଦୁର୍ବଳ ଓ କ୍ଷୀଣ ପୁରୁଷ ବା ସ୍ତ୍ରୀ ଅଛନ୍ତି କି ?"

ଏହା ଶୁଣି ମହର୍ଷି ତନୁ ହସି ହସି କହିଲେ—"ହଁ ରାଜନ୍ ! ମୋ'ଠାରୁ ମଧ୍ୟ ଦୁର୍ବଳ ଅନେକ ବସ୍ତୁ ଅଛି ।"

ରାଜା କହିଲେ—"ବ୍ରହ୍ମନ୍ ! ଆପଣଙ୍କ ଶରୀର ଠାରୁ ଦୁର୍ବଳ ଆଉ କେଉଁ କେଉଁ ବସ୍ତୁ ଅଛି ମୋତେ ତାହା କହନ୍ତୁ ।"

ମୁନି କହିଲେ—"ମୁଁ ତାହା କହୁଛି ଶ୍ରବଣ କରନ୍ତୁ ।"

୧—ଜଣେ ଲୋକ ଥରେ ବଡ଼ ଆଶା ନେଇ କୌଣସି ସାମର୍ଥ୍ୟ ବ୍ୟକ୍ତିଙ୍କ ନିକଟକୁ ଯାଇଥିଲା । ଯେଉଁ ବ୍ୟକ୍ତିଙ୍କ ପାଖକୁ ସେ ଯେଉଁ ଆଶା ନେଇ ଯାଇଥିଲା ତାଙ୍କଠାରେ ଆଗନ୍ତୁକଙ୍କ ଇଚ୍ଛା ପୂର୍ଣ୍ଣ କରିବାର ଖୁବ୍ ସାମର୍ଥ୍ୟ ଥିଲା । କିନ୍ତୁ ସେ ଆଗତ ବ୍ୟକ୍ତିଙ୍କ ଆଶା ପୂର୍ଣ୍ଣ କରିବା ତ ଦୂରର କଥା, ତାଙ୍କର ସ୍ୱାଗତ ସତ୍କାର ମଧ୍ୟ କଲେ ନାହିଁ । ସେହି ହତାଶ ବ୍ୟକ୍ତିଙ୍କ ଆଶା ତେବେ କ'ଣ ମୋ ଶରୀରଠାରୁ ଅଧିକ ଦୁର୍ବଳ ନୁହେଁ ?

୨—ଅନ୍ୟ ଜଣେ ଚାହିଁଲେ କୌଣସି ବ୍ୟକ୍ତିର ବହୁତ କିଛି ଉପକାର କରିପାରେ; କିନ୍ତୁ ତାଙ୍କ ଉପକାରକୁ ସେହି ବ୍ୟକ୍ତି ଯଦି ନ ମାନେ ଓ ପ୍ରତ୍ୟୁପକାର ବଦଳରେ ଅପକାର କରେ, ଏ କୃତଘ୍ନ ଯେଉଁ ଆଶା କରୁ ନା କାହିଁକି, ସେହି ଆଶା କ'ଣ ମୋ ଶରୀରଠାରୁ ଅତ୍ୟନ୍ତ ଦୁର୍ବଳ ନୁହେଁ ?

୩—ଯେଉଁ ବ୍ୟକ୍ତି ଅନ୍ୟର ବିନମ୍ର ବଚନ ଶୁଣି ମଧ୍ୟ ତରଳେ ନାହିଁ, ଯେ ଅନ୍ୟ ସହିତ ସର୍ବଦା ନିଷ୍ଠୁର ବ୍ୟବହାର କରୁଥାଏ, ଏପରି କଠିନ ହୃଦୟ ବିଶିଷ୍ଟ ବ୍ୟକ୍ତି ଯେଉଁ ଆଶା ଯେତେବେଳେ ପୋଷଣ କରୁ ନା କାହିଁକି, ସେହିଆଶା କ'ଣ ମୋ ଶରୀରଠାରୁ ଅଧିକ ଦୁର୍ବଳ ନୁହେଁ ?

୪—ଯେଉଁ ଲୋକ ଅନ୍ୟ ଘରେ ଅଗ୍ନି ଲଗାଏ, ଅର୍ଥ ଲୋଭରେ ବା ସମ୍ପତ୍ତି ଲୋଭରେ ଅନ୍ୟକୁ ବିଷ ଖୁଆଏ, ଅସ୍ତ୍ର ଶସ୍ତ୍ର ନେଇ ଅନ୍ୟକୁ ଅନ୍ୟାୟରେ ବଧ କରିବାକୁ ଉଦ୍ୟତ ହୁଏ, ଅନ୍ୟର ଧନକୁ ବଳ ପୂର୍ବକ ନେଇଯାଏ, ଅନ୍ୟର ଜମିକୁ ବଳ ପୂର୍ବକ ଦଖଲ କରେ ଓ ଅନ୍ୟର ସ୍ତ୍ରୀକୁ ବଳପୂର୍ବକ ଅପହରଣ କରେ, ଏପରି ଆତତାୟୀ ପୁରୁଷଙ୍କର ଆଶା ମୋ ଶରୀର ଠାରୁ କ'ଣ ଦୁର୍ବଳ ନୁହେଁ ?

୫—କାହାର ଯଦି ଏକମାତ୍ର ଅତି ଅଲ୍‌ଅଲ ପୁତ୍ରଟି ସାଧୁ ହୋଇଯାଏ, କେଉଁଆଡ଼େ ହଜିଯାଏ, ବିଦେଶ ଚାଲିଯାଏ, ଯୁଦ୍ଧକୁ ଚାଲିଯାଏ କିମ୍ବା ଅନେକ ଦିନ ପର୍ଯ୍ୟନ୍ତ ତାହାର କୌଣସି ଖୋଜ୍‌ଖବର ନ ଥାଏ, ସେହି ପୁତ୍ରର ପୁନଃ ପ୍ରାପ୍ତିର ଯେଉଁ ଆଶା ଯଦି କେହି ରଖିଥାଏ, ତେବେ ସେହି ଆଶା କ'ଣ ମୋ ଶରୀର ଅପେକ୍ଷା ଅଧିକ କ୍ଷୀଣ ନୁହେଁ ?

୬—କୌଣସି ନିର୍ଦ୍ଧନର ଏକ ପୁତ୍ର ଜାତ ହେବାକ୍ଷଣି ସେ ଆଶା କରିବାକୁ ଲାଗିଲା, ମୋ ପୁତ୍ର ଲେଖାପଢ଼ା କରି ଅମୁକ ପରୀକ୍ଷା ଦେଇ ପାଶ୍‌ କରିବ, ପୁନଶ୍ଚ ଅମୁକ ପଦରେ ଅଧିଷ୍ଠିତ ହେବ, ବହୁ ଧନ ଉପାର୍ଜ୍ଜନ କରିବ, ସେଥିରେ ମୁଁ ଘର ତୋଳିବି । ପୁତ୍ର ଜନ୍ମ ହେବାକ୍ଷଣି ଯେଉଁ ପିତା ମାତା ନିଜ ସନ୍ତାନର ଭାବୀ ସୁଖ ଆଶା ପୋଷଣ କରିବାକୁ ଲାଗନ୍ତି, ସେମାନଙ୍କ ଆଶା କ'ଣ ମୋ ଶରୀର ଅପେକ୍ଷା କ୍ଷୀଣ ନୁହେଁ ?

୭—ଯେଉଁ ବ୍ୟକ୍ତି କୌଣସି ବ୍ୟବସାୟ ଆରମ୍ଭ କରିବା କ୍ଷଣି ଏହି ଆଶା ପୋଷଣ କରେ ଯେ, ଏହି ବ୍ୟବସାୟଟି ଯେତେବେଳେ ଆମର ଗୃଲୁ ହେବ ନା, ସେତେବେଳେ ମୁଁ ଲକ୍ଷପତି ବା କୋଟିପତି ହୋଇଯିବି । ତାଙ୍କର ଏହି ଆଶା କ'ଣ ମୋ ଶରୀରଠାରୁ ଅଧିକ କ୍ଷୀଣ ନୁହେଁ ?

୮—କୌଣସି କୁମାରୀ ଯଦି ବିବାହ ପାଇଁ ଉପଯୁକ୍ତ ହୋଇଯାଏ, ତେବେ ତା'ର ପିତା ମାତା ତାହାର ବିବାହ ପାଇଁ ଅତ୍ୟଧିକ ଚିନ୍ତିତ ହୋଇ ପଡ଼ନ୍ତି । ବର୍ଷ ବର୍ଷ ଧରି ସେମାନେ ନିରନ୍ତର ଏଣେ ତେଣେ ଧାଇଁ ପଡ଼ଶ ପଡ଼ୃଶ ସ୍ଥାନରେ ବରପାତ୍ର ଅନ୍ୱେଷଣ କରି ସେମାନଙ୍କ ପିତା ମାତାଙ୍କ ଆଗରେ ପ୍ରସ୍ତାବ ବାଢ଼ି ଶେଷକୁ ନିରାଶ ହୋଇ ଥାଆନ୍ତି । ସେହି କନ୍ୟା ନିକଟରେ ବିବାହ ସମ୍ବନ୍ଧୀୟ ସେହି କଥା ତାହାର ଆଶା ନିକଟରେ ଯେପରି କ୍ଷୀଣ, ମୋର ଶରୀରର କୃଶତା ତା ତୁଳନାରେ ଅତ୍ୟନ୍ତ ତୁଚ୍ଛ । ସେହି ବାଳିକାର ସେ ସମୟର ମନର ଅବସ୍ଥା ସହଜରେ ପ୍ରତ୍ୟେକ ବୁଝି ପାରୁଥିବେ । ସମସ୍ତ ସମୟରେ ସେ ଏହି ଆଶା ପୋଷଣ କରିଥାଏ । ଯେ ସମ୍ଭବତଃ ଏଥର ତା'ର ବିବାହ ପ୍ରସ୍ତାବ ପକ୍‌କା ହୋଇଗଲା । ପରେ ସେ ଶୁଣିପାରେ ଯେ ପ୍ରସ୍ତାବ ଭାଙ୍ଗି ଯାଇ ପୁନଶ୍ଚ ଏକ ନୂତନ ପ୍ରସ୍ତାବ ପଡ଼ିଛି । ଏହା ଶୁଣିବା ମାତ୍ରେ ତା ମନରେ ନୂତନ ଆଶାର ସଞ୍ଚାର ହୁଏ । ପୁନଶ୍ଚ ସେ ଆଶା ମଧ୍ୟ ନିରାଶାରେ ପରିଣତ ହୁଏ । ଏହି ଅନୁଭୂତ କେବଳ ସେହି ବିବାହ ଯୋଗ୍ୟା କନ୍ୟାର ହୋଇଥାଏ, ତାହାର ନୈରାଶ୍ୟଭାବ ଓ ମନର ଅବସ୍ଥା ତା' ବ୍ୟତୀତ ଅନ୍ୟ କେହି ଅନୁମାନ କରି ପାରନ୍ତି ନାହିଁ ।

ଏହି ଆଠଟି ବସ୍ତୁ ମୋ ଶରୀରଠାରୁ ମଧ୍ୟ କୃଶ । ତୁମକୁ ଆଉ ଅଧିକ ମୁଁ କ'ଣ ଅବା କହିବି ?

ଏହା ଶୁଣି ରାଜା ମୁନିଙ୍କ ପାଦତଳେ ପଡ଼ିଗଲେ ଓ କହିଲେ—"ବ୍ରାହ୍ମଣ ! ଆପଣଙ୍କ କଥା ସର୍ବଥା ଯୁକ୍ତିଯୁକ୍ତ । ମୁଁ ନିଜର ପୁତ୍ର ଆଶାରେ ଏ ବନ ମଧ୍ୟରେ ଭ୍ରମଣ କରୁଛି । ଆପଣ ସର୍ବଜ୍ଞ, ମୋର ଏହି ଆଶା ଆପଣ ପୂର୍ଣ୍ଣ କରନ୍ତୁ, ମୋ ପୁତ୍ରକୁ ମୋ ସହିତ ଭେଟ କରାଇ ଦିଅନ୍ତୁ ।"

ତନୁ ମହର୍ଷି ଏ କଥା ଶୁଣି ପୁନର୍ବାର ହସି ହସି କହିଲେ—"ରାଜନ୍ ! ତୁମେ ମଧ୍ୟ ସେହି ପୁତ୍ର ଆଶା ନେଇ ଏପରି ସନ୍ତରଣ କରୁଛ । ତେବେ ଠିକ୍ ଅଛି, ମୁଁ ଏବେ ତୁମ ଆଶା ନିଶ୍ଚୟ ପୂର୍ଣ୍ଣ କରିବି ।" ଏହା କହି ମୁନି ନିଜର ଯୋଗ ବଳରେ ରାଜାଙ୍କର ହଜି ଯାଇଥିବା ପୁତ୍ରକୁ ଡାକିଲେ । ପୁତ୍ର ସଙ୍ଗେ ସଙ୍ଗେ ଉପସ୍ଥିତ ହେବାରୁ ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ । ଏବେ ମୁନି ମାୟାରେ ସୃଷ୍ଟି ହୋଇଥିବା ନିଜର ସେହି ଦୁର୍ବଳ ଜୀର୍ଣ୍ଣଶୀର୍ଣ୍ଣ ଶରୀରକୁ ତ୍ୟାଗ କରି ତାଙ୍କର ବାସ୍ତବ ରୂପ ରାଜାଙ୍କୁ ଦର୍ଶନ କରାଇ କହିଲେ—"ରାଜନ୍ ! ମୁଁ ହେଉଛି ସେହି ମୁନି, ଯାହାଙ୍କର ସାମର୍ଥ୍ୟ ଥାଇ ମଧ୍ୟ ସେ ଆପଙ୍କର ସତ୍କାର କରିପାରି ନ ଥିଲେ । ମୁଁ ଦିନେ ନିରାଶ ହୋଇଥିଲି ଓ ସେହି ଦିନଠାରୁ ସବୁ ଆଶା ତ୍ୟାଗ କରି ତପସ୍ୟା କରିବାପାଇଁ ମନ ବଳାଇ ଥିଲି । ମନୁଷ୍ୟ ଯେ ପର୍ଯ୍ୟନ୍ତ ସମସ୍ତ ଆଶା ପରିତ୍ୟାଗ ନ କରିଥାଏ, ସେ ପର୍ଯ୍ୟନ୍ତ ସେ ଦୁଃଖ କରୁଥାଏ । ତେଣୁ ବୁଦ୍ଧିମାନ୍ ବ୍ୟକ୍ତି କେବେହେଲେ କାହାରି ଠାରୁ କିଛି ଆଶା କରିବା ଉଚିତ୍ତ ନୁହେଁ । କିନ୍ତୁ ଆଶା ନ ଥିଲେ କେହି ରହି ପାରନ୍ତି ନାହିଁ । ଆଶା ବଳବତ୍ତର ହେଲେ ବ୍ୟକ୍ତି ଦୁଃଖ ଭୋଗ କରେ । ଏତିକି କହି ମହର୍ଷି ତନୁ ସମ୍ମୁଖରେ ଥିବା ବନ ମଧ୍ୟକୁ ତପସ୍ୟା କରିବାକୁ ଚାଲିଗଲେ । ରାଜା ବୀରଦ୍ୟୁମ୍ନ ମଧ୍ୟ ନିଜର ପୁତ୍ର ଭୂରିଦ୍ୟୁମ୍ନକୁ ସଙ୍ଗରେ ନେଇ ନିଜ ଘରକୁ ଗଲେ । ମହର୍ଷି ଋଷଭ ରାଜା ସୁମିତ୍ରଙ୍କୁ କହିଲେ—"ହେ ରାଜନ୍ ! ହରିଣଟି ଆପଣଙ୍କ ଅଧିକାର ନ ହେବା ଯୋଗୁଁ କାହିଁକି ଏତେ ଦୁଃଖ କରୁଛନ୍ତି ? ଏବେ ସେହି କ୍ଷୁଦ୍ର ଆଶା ତ୍ୟାଗ କରି ସୁଖୀ ହୁଅନ୍ତୁ ।"

ଏହି କଥାରୁ ଏତିକି ସାରାଂଶ ମିଳିଲା ଯେ, ମନୁଷ୍ୟ ନିଜର ଅଳୀକ ଆଶା ପୋଷଣ କାରଣରୁ ହିଁ ଦୁଃଖ ଭୋଗ କରେ । ସମସ୍ତ ଆଶାକୁ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ଅର୍ପଣ କରିବା ହିଁ ସୁଖ ଲାଭର ଏକମାତ୍ର ଉପାୟ । ମନୁଷ୍ୟ ମନରେ ଅସଂଖ୍ୟ ଆଶାର ଭାବ ଉଦୟ ହୋଇ ଥାଏ, ସେ ସମସ୍ତ ଆଶାକୁ ଯଦି ଈଶ୍ୱର ପ୍ରାପ୍ତି କାର୍ଯ୍ୟରେ ଲଗାଇ ଦିଆଯାଏ, ତେବେ ଏ ଭବସାଗରକୁ ସେ ଭେଳାରେ ପାର ହୋଇଯାଏ । ବରଂ ଆକାଶରୁ ବର୍ଷୁଥିବା ଜଳବିନ୍ଦୁର ସଂଖ୍ୟା କରାଯାଇ ପାରେ, ପୃଥିବୀରେ ଥିବା ଧୂଳିକଣା ଗଣନା କରିବା ସମ୍ଭବ ହୋଇପାରେ; କିନ୍ତୁ ଏହି ଆଶାଗୁଡ଼ିକର ସଂଖ୍ୟା କରିବା ସମ୍ଭବ ନୁହେଁ । ମନରେ ଯେଉଁ ଆଶା ଉତ୍ପନ୍ନ ହୁଏ, ତାହାର ଚିତ୍ର ସମ୍ମୁଖରେ ଆସି ଉଭା ହୁଏ । ଏହି ସମସ୍ତ ଆଶାର ଆକର୍ଷଣରେ ହିଁ ଆମେ ଏଣେତେଣେ ବିବ୍ରତ

ହୋଇ ଧାଇଁ ଥାଉ । ମୋର ଆଶା ଥିଲା, ଛଅବର୍ଷରେ ଅଷ୍ଟାଦଶ ପୁରାଣର କଥା ସମ୍ପୂର୍ଣ୍ଣ କରିବି ଓ 'ଭାଗବତୀ କଥା'କୁ ୧୦୮ ଖଣ୍ଡରେ ରଚନା କରିବି; କିନ୍ତୁ ଏହି ପାଞ୍ଚ ବର୍ଷରେ ଅଧା ପୁରାଣର କଥା ରଚନା କରିବା ସମ୍ଭବ ହେଲା ନାହିଁ କି ଅଧାରୁ ଅଧିକ ସଂଖ୍ୟକ ଭାଗବତୀ କଥା ରଚନା ହୋଇ ପାରିଲା ନାହିଁ । ତଥାପି ଏ ସମ୍ବନ୍ଧରେ ଆଶାର ବି ଅନ୍ତ ନାହିଁ । ଗୋଟିକ ପରେ ଆଉ ଗୋଟିଏ ଏହିପରି ଭାବରେ କ୍ରମାନୁସାରେ ଆଶାର ତନ୍ତୁ ବନ୍ଧା ହୋଇ ଚାଲିଛି । ଏହି ସମସ୍ତ ଆଶାର ପର୍ଯ୍ୟବସାନ କେବେ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ସମର୍ପଣ ହେବ, ତାହା ତାଙ୍କୁ ହିଁ ଜଣା । ପ୍ରେମୀ ପାଠକ ଓ ପାଠିକାଗଣଙ୍କୁ ମୋର ଯୋଡ଼ ହସ୍ତରେ ଏହି ପ୍ରାର୍ଥନା ଯେ, ଏବେ ମୋର ସମସ୍ତ ଆଶା ସେହି ଚଞ୍ଚଳ ଶିରୋମଣି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଯୁଗଳଚରଣାରବିନ୍ଦରେ ହିଁ କେନ୍ଦ୍ରିତ ହୋଇଯାଉ ।

## ଛପ୍ପୟ

ହୋବେ ଆଶା ଅସନ ବେଗ ଛାଁଡ଼ିକେ କୋ ଖାଉଁ ।
ଜଲ କୀ ଆଶା ହୋହି କୃଷ୍ଣ ଚରଣାମୃତ ପାଉଁ ॥
ଚନ୍ଦନ, ମାଲ, ଗନ୍ଧ, ବସନ କୀ ଉପଜୈ ଆଶା ।
ପ୍ରଭୁ ପ୍ରସାଦ କର ଲେହୁଁ ଜଗତ ତେଂ ହୋହୁଁ ନିରାଶା ॥
ଆଶା ସବ ମିଟି ଜାହିଁ ପର, ସବ ଆଶା ତୁମମହିଁ ଲଗେଂ ।
ଦମ୍ଭ, କପଟ, ଛଲ, ଲୋଭ, ଭ୍ରମ ତୁମରୀ ଆଶା ତେଂ ଭଗେଂ ।

ସଂକୀର୍ତ୍ତନ ଭବନ
ପ୍ରତିଷ୍ଠାନପୁର, (ପ୍ରୟାଗ)
ଜ୍ୟେଷ୍ଠ କୃଷ୍ଣ ୯ । ୨୦୦୭ବି०

ତୁମର ଦର୍ଶନ ଆଶାରେ
ଆଶାନ୍ୱିତ
ପ୍ରଭୁଦତ୍ତ



# ଅନୁବଂଶୀୟ ମହାରାଜ ଉଶୀନର

ଅନୋଃ ସଭାନରଶ୍ଚକ୍ଷୁଃ ପରେକ୍ଷଶ୍ଚ ତ୍ରୟଃ ସୁତାଃ ।
ସଭାନରାତ୍ କାଲନରଃ ସୃଞ୍ଜୟସ୍ତତ୍ସୁତସ୍ତତଃ ॥
ଜନ୍ମେଜୟସ୍ତସ୍ୟ ପୁତ୍ରୋ ମହାଶାଲୋ ମହାମନାଃ ।
ଉଶୀନରସ୍ତିତିକ୍ଷୁଶ୍ଚ ମହାମନସ ଆତ୍ମଜୌ । *

(ଶ୍ରୀ ଭା ୯ ସ୍କ ୨୩ ଅ ୧-୨ ଶ୍ଳୋ)

## ଛପ୍ପୟ

ନୃପ ଯଯାତି କେ ଭୟେ ପୁତ୍ର ଶ୍ରେଷ୍ଠ ଜୋ ନରପତି, ।
ତିନ 'ଅନୁ' କୋ ଅବ ବଂଶ ସୁନହୁ ଜୋ ହୈ ପାବନ ଅତି ॥
ଭୟେ ସଭନର, ଚକ୍ଷୁ ପରେକ୍ଷହୁ ଅନୁସୁତ ଗନକୟ ।
ପୁତ୍ର ସଭନର ଭୟେ କାଲନର ତିନକେ ସୃଞ୍ଜୟ ।
ଜନ୍ମେଜୟ ସୃଞ୍ଜୟ ତନୟ, ମହାଶୀଲ ତିନ ପୁତ୍ରବର, ॥
ମହାମନା ତିନକେ ତନୟ, ତିନତେଂ ନୃପବର ଉଶୀନର ।

ମନୁଷ୍ୟ ଶରୀରରେ ସଦ୍‌ଗୁଣର ନିବାସ ଓ ଦୁର୍ଗୁଣର ମଧ୍ୟ । ଯେ ନିଜ ସଦ୍‌ଗୁଣର ବିକାଶ କରେ, ସେ ସଦ୍‌ଗୁଣକୁ ପରାକାଷ୍ଠାରେ ପହଞ୍ଚାଇ ପ୍ରଭୁଙ୍କୁ ପ୍ରାପ୍ତ

---

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ମହାରାଜା ଯଯାତିଙ୍କର 'ଅନୁ' ନାମକ ପୁତ୍ରଙ୍କର ସଭାନର, ଚକ୍ଷୁ ଓ ପରେକ୍ଷ ଏହି ତିନି ପୁତ୍ର ଥିଲେ । ସଭାନରଙ୍କ ପୁତ୍ରଙ୍କର ନାମ କାଲନର, ତାଙ୍କ ପୁତ୍ର ସୃଞ୍ଜୟ, ସୃଞ୍ଜୟଙ୍କ ପୁତ୍ରଙ୍କ ନାମ ଜନ୍ମେଜୟ ଓ ଜନ୍ମେଜୟଙ୍କ ପୁତ୍ରଙ୍କ ନାମ ମହାଶୀଲ ଥିଲା । ମହାଶୀଲଙ୍କ ପୁତ୍ର ହେଉଛନ୍ତି ମହାମନା । ଏହି ମହାମନାଙ୍କର ଦୁଇ ପୁତ୍ର ଥିଲେ । ସେ ଦୁହିଙ୍କର ନାମ ଉଶୀନର ଓ ତିତିକ୍ଷୁ ।

କୁଏ । ଯେ ଦୁର୍ଗୁଣର ବିକାଶ କରେ, ସେ ପରାକାଷ୍ଠାରେ ପଦାର୍ପଣ କରିଥିବା ଦୁର୍ଗୁଣ ଦ୍ୱାରା ଭକ୍ତଙ୍କୁ ମଧ୍ୟ ପ୍ରଭାବିତ କରାଇ ଥାଏ । ଯେ ମଧ୍ୟ ସ୍ଥଳରେ ଦୋଦୁଲ୍ୟମାନ ରହେ, ସେ କ୍ଲେଶ ଭୋଗ କରେ । ମନରେ ଦୁର୍ଗୁଣ ଭରିରଖି ସେ ଉପରକୁ ସଦ୍‌ଗୁଣୀର ଆଚରଣ ଦେଖାଏ । ମନରେ ସଂଗ୍ରହର ବାସନା ଥାଇ ଯେ ବାହାରକୁ ତ୍ୟାଗୀ ବୋଲି ପରିଚୟ ଦିଏ, ସେ ସ୍ୱାର୍ଥୀ । ତାକୁ ପରମାର୍ଥୀ ବୋଲି କୁହାଯାଇ ନ ପାରେ । ଯାହାର ଯେଉଁଥିରେ ନିଷ୍ଠା ଥାଉନା କାହିଁକି, ସେହି ନିଷ୍ଠାକୁ ପରାକାଷ୍ଠା କରି ତାହାରି ଉପରେ ସର୍ବସ୍ୱ ଉତ୍ସର୍ଗ କରିଦେଲେ ଭଗବାନ୍ ତାହା ସମ୍ମୁଖରେ ଆସି ଆବିର୍ଭୂତ ହୁଅନ୍ତି । ଭଗବାନଙ୍କ ପାଇଁ କୌଣସିଟି ସତ୍ ନୁହେଁ ବା କୌଣସିଟି ଅସତ୍ ନୁହେଁ । ସେ ତ ଆନନ୍ଦ ତଥା ସୁଖ ସ୍ୱରୂପ ଅଟନ୍ତି । ତାଙ୍କ ପାଇଁ ସମସ୍ତ କିଛି ଭଲ ମନ୍ଦର କଳ୍ପନା ତ କେବଳ ଜୀବ ହିଁ କରିଥାଏ । ଜୀବ ଯଦି ନିଜ ନିଷ୍ଠାରେ ଅଟଳ ରହେ, ତେବେ ଭଗବାନ୍ ତଦ୍ୱାରା ପ୍ରକଟ ହୁଅନ୍ତି ।

ସୂତ କହିଲେ—"ହେ ମୁନିଗଣ ! ବର୍ତ୍ତମାନ ମୁଁ ଶର୍ମିଷ୍ଠାଙ୍କ ଦ୍ୱିତୀୟ ପୁତ୍ର ଯଯାତି ନନ୍ଦନ ଅନୁଙ୍କ ବଂଶ ସମ୍ବନ୍ଧରେ କହୁଅଛି । ନିୟମାନୁସାରେ ତ ପ୍ରଥମେ ମହାରାଜ ଯଦୁବଂଶ ବର୍ଣ୍ଣନା କରି ପରେ ତାଙ୍କର ସାନଭାଇମାନଙ୍କର ବଂଶ ବର୍ଣ୍ଣନା କରିବା ଉଚିତ; କିନ୍ତୁ ପିତାଙ୍କ ଶାପରେ ବଡ଼ଭାଇଙ୍କୁ ଷଡ଼ଯନ୍ତ୍ରପଣରୁ ଚ୍ୟୁତ କରାଯାଇଥିଲା । ଏହି ବଡ଼ ଭାଇଙ୍କୁ ମଣ୍ଡଳୀକ ବୋଲି ସ୍ୱୀକାର କରାଯାଇ ସମ୍ରାଟ୍ ପୁରୁଙ୍କୁ ହିଁ ରାଜସିଂହାସନରେ ଅଭିଷିକ୍ତ କରାଯାଇଥିଲା । ଏଣୁ ସେ ସମ୍ବନ୍ଧରେ ମୁଁ ପର୍ଯ୍ୟାୟକ୍ରମେ ଆଗପଛ କରି ବର୍ଣ୍ଣନା କରୁଅଛି । କାରଣ ଯଦୁକୁଳ ବର୍ଣ୍ଣନ ସମ୍ପୂର୍ଣ୍ଣ କରିବା ପାଇଁ ହିଁ ଏ ଗ୍ରନ୍ଥକାରଙ୍କ ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ହେବ । ଯଦୁକୁଳ ବର୍ଣ୍ଣନ ହେଉଛି ମୁଖ୍ୟ । ଏ ସମସ୍ତ ଅଙ୍ଗୀ ବା ଗୌଣ । ଦେବଯାନୀଙ୍କ ଦ୍ୱିତୀୟ ପୁତ୍ର 'ଅନୁ'ଙ୍କର ସଭାନର, ଚକ୍ଷୁ ଓ ପରୋକ୍ଷ ଏହି ତିନିପୁତ୍ର ଥିଲେ । ଏମାନଙ୍କ ମଧ୍ୟରୁ ସଭାନରଙ୍କର ପୁତ୍ର ଥିଲେ କାଳନର । କାଳନରଙ୍କ ପୁତ୍ର ଥିଲେ ପରମଧର୍ମାତ୍ମା ସୃଞ୍ଜୟ । ସେତେବେଳେ ସୃଞ୍ଜୟ ନାମରେ ଅନ୍ୟ ଅନେକ ରାଜା ମଧ୍ୟ ଥିଲେ । କିନ୍ତୁ ଏହି ସୃଞ୍ଜୟଙ୍କ ପୁତ୍ର ନାମ ଥିଲା ଜନ୍ମେଜୟ । ଜନ୍ମେଜୟଙ୍କର ପୁତ୍ର ମହାଶୀଳ, ମହାଶୀଳଙ୍କର ମହାମନା ଓ ଏହି ପରମ ଭାଗ୍ୟବାନ୍ ମହାରାଜ ମହାମନାଙ୍କର ପୁତ୍ର ଥିଲେ ବିଶ୍ୱବିଖ୍ୟାତ ଉଶୀନର । ମହାରାଜ ଉଶୀନରଙ୍କର କୀର୍ତ୍ତି ବିଶ୍ୱରେ ଏପର୍ଯ୍ୟନ୍ତ ବ୍ୟାପ୍ତ । ତାଙ୍କର ଗୋଟିଏ ସବୁଠାରୁ କଠିନ ବ୍ରତ ଥିଲା ଶରଣାଗତଙ୍କୁ ରକ୍ଷା କରିବା । ଏ ସମ୍ବନ୍ଧରେ ଗୋଟିଏ ଅତି ସୁନ୍ଦର ଇତିହାସ ଅଛି । ଏଥିରୁ ତାଙ୍କର ଶରଣାଗତବତ୍ସଳତାର ପ୍ରମାଣ ମିଳେ । ନିଜ ନିଷ୍ଠାରେ ଦୃଢ଼ ରହିବା ପାଇଁ ସେ ରାଜ୍ୟ, ଧନ, ସ୍ତ୍ରୀ, ପୁତ୍ର ତଥା ଶରୀରକୁ ମଧ୍ୟ ତୁଚ୍ଛ ଜ୍ଞାନ କରୁଥିଲେ ।

  

ଦିନେ ମହାରାଜ ଉଶୀନର ଯଜ୍ଞ ମଣ୍ଡପରେ ବସି ଯଜ୍ଞୀୟ କାର୍ଯ୍ୟ କରୁଥିଲେ । ସେ ଯଜ୍ଞଦୀକ୍ଷା ମଧ୍ୟ ନେଇ ସାରିଥିଲେ । ଏଥିରେ ସେ ନିୟମ ରଖିଥିଲେ ଯେ, ଯଜ୍ଞ-ସ୍ଥଳକୁ ଯେ କେହି ଆସନ୍ତୁ ନା କାହିଁକି ତାଙ୍କୁ ଯଥେଷ୍ଟ ଭୋଜନ ଦିଆଯିବ । ସେ ଯେ କୌଣସି ବସ୍ତୁ ଚାହିଁବେ ତାଙ୍କୁ ତାହା ଦିଆଯିବ । ସେଠାକୁ ସର୍ବଦା ସମସ୍ତେ ଆସନ୍ତୁ, ଭୋଜନ କରନ୍ତୁ, ମଲାଇ ଖାଆନ୍ତୁ, ଲଡ଼ୁ ଖାଆନ୍ତୁ କ୍ଷୀର ପାନ କରନ୍ତୁ, ରାବେଡ଼ି ଖାଆନ୍ତୁ, ଇଚ୍ଛାନୁସାରେ ପଦାର୍ଥ ନିଅନ୍ତୁ । ଏହି ଧ୍ୱନି ସେ ସମସ୍ତଙ୍କୁ ଶୁଣାଉଥିଲେ । ଯଜ୍ଞସ୍ଥଳକୁ ଯେତେ ଅଧିକ ଯାଚକ ଆସୁଥିଲେ, ଯେତେ ଅଧିକ ଅତିଥି ଆସି ପ୍ରସାଦ ସେବନ କରୁଥିଲେ, ରାଜା ସେତେ ଅଧିକ ଆନନ୍ଦିତ ହେଉଥିଲେ ।

ଆଉ ଦିନେ ରାଜା ନିଜର ସଭାସଦ୍‌ମାନଙ୍କ ସହିତ ଯଜ୍ଞ ମଣ୍ଡପ ସମ୍ମୁଖରେ ଏକ ଚଉତରା ଉପରେ ବସି ଧର୍ମଚର୍ଚ୍ଚା କରୁଥିବା ସମୟରେ ଗୋଟିଏ କପୋତ ଆକାଶ ମାର୍ଗରୁ ବେଗରେ ଉଡ଼ି ଆସି ରାଜାଙ୍କ କୋଳରେ ବସିପଡ଼ିଲା । ଏହା ଦେଖି ସମସ୍ତେ ବିସ୍ମିତ ହୋଇଗଲେ । କପୋତଟି ଅତ୍ୟନ୍ତ ଭୟଭୀତ ଥିଲା । ସେ ଉଡ଼ି ଉଡ଼ି ଥକି ପଡ଼ିଥିଲା ଓ ଭୟରେ ରାଜାଙ୍କ କୋଳରେ ଥରୁଥିଲା । ରାଜାଙ୍କ ମନରେ କପୋତଟି ପ୍ରତି ଦୟା ଜାତ ହେଲା । ସେ ତା' ଉପରେ ହାତ ବୁଲାଇ ତାକୁ ଆଉଁସିବାକୁ ଲାଗିଲେ ଓ ତାକୁ ସ୍ନେହରେ ସାନ୍ତ୍ୱନା ଦେବାକୁ ଲାଗିଲେ ।

ଠିକ୍ ସେତିକିବେଳେ ତୀକ୍ଷ୍ଣ ଥଣ୍ଟ ଓ ଆରକ୍ତ ଚକ୍ଷୁ ବିଶିଷ୍ଟ ଏକ ଛଞ୍ଚାଣ ଆକାଶ ମାର୍ଗରୁ ଉଡ଼ିଆସି ରାଜାଙ୍କ ସମ୍ମୁଖରେ ନିର୍ଭୟ ହୋଇ ବସି ପଡ଼ିଲା ଓ ମନୁଷ୍ୟ ପରି କହିବାକୁ ଲାଗିଲା—"ରାଜନ୍ ! ଏହା ମୋର ଆହାର । ଏହାକୁ ଆପଣ କାହିଁକି ଲୁଚାଇ ରଖିଛନ୍ତି ? ଏହାକୁ ମୋତେ ଦେଇଦିଅନ୍ତୁ ।" ରାଜା ଓ ସମସ୍ତ ସଭାସଦ୍ ଏକ ପକ୍ଷୀ ମୁଖରୁ ମାନବୀୟ ବାଣୀ ଶ୍ରବଣ କରି ଅତ୍ୟନ୍ତ ବିସ୍ମୟ ହେଲେ । ରାଜା ତା' ଆଡ଼କୁ ଚାହିଁ କହିଲେ—"ପକ୍ଷୀରାଜ ! ତୁମେ ଏପରି ଅନ୍ୟାୟ କାର୍ଯ୍ୟ କାହିଁକି କରୁଅଛ ? ଶରଣାଗତଙ୍କୁ ରକ୍ଷା କରିବା ତ ମୋର ପରମ ଧର୍ମ । ଅଭୟ ଇଚ୍ଛାରେ ମୋର ଶରଣ ପଶିଥିବା ଏହି ପକ୍ଷୀକୁ ତୁମେ କାହିଁକି ମୋତେ ମାଗୁଅଛ ? ତୁମେ କ'ଣ ଚାହିଁ ମୁଁ ଶରଣାଗତଙ୍କୁ ତ୍ୟାଗ କରି ମହାପାପରେ ଭାଗୀ ହେବି ?"

ଛଞ୍ଚାଣଟି କହିଲା—"ରାଜନ୍ ! ମୁଁ ଅନ୍ୟାୟ କରୁଛି ନା ଆପଣ ? ଆପଣ ମୋର ଆହାରକୁ ଛଡ଼ାଇ ରଖିଛନ୍ତି । ଅନ୍ୟର ବୃତ୍ତିକୁ ତା' ହାତରୁ ବିଚ୍ଛେଦ କରାଇବା ତ ସବୁଠାରୁ ବଡ଼ ପାପ ଅଟେ ।"

ରାଜା କହିଲେ—"ଆରେ ଭାଇ ! କୌଣସି ଜୀବର ପ୍ରାଣନାଶ କରିବା କ'ଣ କେବେ ଧର୍ମ ହୋଇପାରେ ? ଅନ୍ୟକୁ ମାରି ଖାଇବା ତ ଅତି ଗୁରୁତର ଦୋଷ ।"

ଛଗ୍ଗାଣ କହିଲା—"ମହାରାଜ ! ମୋତେ କାହିଁକି ଆପଣ ଏ ଦୋଷରେ ଦୋଷୀ କରୁଅଛନ୍ତି ? ବ୍ରହ୍ମାଙ୍କୁ ଏ ଦୋଷରେ ଦୋଷୀ କରନ୍ତୁ । ସେ ମୋତେ ଶିକାରୀ ପକ୍ଷୀ ରୂପେ କାହିଁକି ସୃଷ୍ଟି କରି ଏ ବୃତ୍ତି ଦେଇଛନ୍ତି ? ଜଳଚର ଜୀବ ତ ପୁଣି ଜଳରେ ଥିବା ଅନ୍ୟ ଜୀବକୁ ଖାଇ ବଞ୍ଚିରହନ୍ତି । ବଡ଼ ମାଛମାନେ ଶ୍ରେଷ୍ଠ ଶ୍ରେଷ୍ଠ ମାଛଙ୍କୁ ତ ମାରି ଖାଇ ଯାଉଛନ୍ତି । ଯଦି କାହାରିକୁ ନ ମାରିବା ବ୍ରହ୍ମାଙ୍କର ଉଦ୍ଦେଶ୍ୟ ହୋଇ ଥାଆନ୍ତା, ତାହାହେଲେ ମାଙ୍କଡ଼ସା (ବୁଢ଼ିଆଣି) ପେଟରେ ଜାଲ ବୁଣିବାର ସୂତା କାହିଁକି ସୃଷ୍ଟି କରି ଥାଆନ୍ତେ ? ମାଙ୍କଡ଼ସା ଜାଲ ତିଆରି କରି ତହିଁରେ ଜୀବ ଶିକାର କରେ ଓ ବନସାରା ଜୀବ ମାରି ଖାଏ । ଜାଲରେ ଲୁଚି ରହି ସେ ଶ୍ରେଷ୍ଠ ଶ୍ରେଷ୍ଠ ଜୀବଙ୍କୁ ଆହାର କରି ବଞ୍ଚେ । ବିରାଡ଼ି ମୂଷାମାନଙ୍କୁ ଧରି ଖାଇଯାଏ । ସିଂହ ବନ ମଧ୍ୟରେ ରହି ମଧ୍ୟ ଘାସ ନ ଚରି ଜୀବମାନଙ୍କୁ ହିଁ ମାରିକରି ଖାଏ । ମନୁଷ୍ୟ, ଯେ କି ନିଜକୁ ସବୁଠାରୁ ବଡ଼ ବୁଦ୍ଧିମାନ୍ ବୋଲି କହେ, ସେ କେତେ ଯେ ମାଛ ଧରି ନ ଖାଏ ? କେତେ ଛେଳିଙ୍କୁ ଉଦରସ୍ଥ ନ କରେ ? ଆପଣ ନିଜେ ଏ ଯଜ୍ଞରେ କେତେ ପଶୁଙ୍କୁ ବଳି ନ ଦେଉଛନ୍ତି ?"

ରାଜା କହିଲେ—"ଭାଇ ! ପଶୁମାନଙ୍କ କଥା ଭିନ୍ନ, ମୁଁ ତ ମନୁଷ୍ୟ । ଯଦି ମୁଁ କୌଣସି ଜୀବକୁ ବଞ୍ଚାଇ ନ ପାରିବି, ତେବେ ମୋର ମାରିବାର ତ ଅଧିକାର ନାହିଁ । ଶରଣାଗତକୁ ରକ୍ଷା କରିବା ହେଉଛି ମୋର ଧର୍ମ । ତୁମେ ମୋ କାର୍ଯ୍ୟରେ ମୋତେ ସାହାଯ୍ୟ କରିବା ଉଚିତ ।"

ଛଗ୍ଗାଣ କହିଲା—"ରାଜନ୍ ! ଧର୍ମ ସେତିକିବେଳେ ଦିଶିଯାଏ, ଯେତେବେଳେ ପେଟଭରି ଖାଇଥାଏ । କ୍ଷୁଧା ହେଉଥିବା ସମୟରେ ଭଜନ କରିଯାଏ ନାହିଁ । ପୁନଶ୍ଚ ଆପଣ କ'ଣ ହିଂସା କରୁ ନାହାନ୍ତି ? ଆପଣ ଯେଉଁ ଫଳ ଖାଉଛନ୍ତି, ତହିଁରେ କ'ଣ ଜୀବ ନାହିଁ ? ଫଳ ଶିବ ବଢ଼େ, ତାକୁ ମଧ୍ୟ କଷ୍ଟ ହେଉଥିବ । ଆପଣ ଯେଉଁ ଶାକ୍ ସବଜି ଖାଉଛନ୍ତି, ସେଥିରେ କ'ଣ ଜୀବ ନାହିଁ ? ଆପଣ ଯେଉଁ ଖାଦ୍ୟ-ଶସ୍ୟ ଖାଉଛନ୍ତି, ତାହା କ'ଣ ନିର୍ଜୀବ ? ସେ ଗୁଡ଼ିକରେ ଯଦି ଜୀବନ ନ ଥାନ୍ତା, ତେବେ ସେଥିରୁ ଅଙ୍କୁର ଉତ୍ପନ୍ନ ହୁଅନ୍ତା କିପରି ? ଆମେ ତ ଗୋଟିଏ ଦୁଇଟି ଜୀବକୁ ମାରିଥାଉଁ; କିନ୍ତୁ ଆପଣ ତ ଅସଂଖ୍ୟ ଜୀବଙ୍କୁ ହତ୍ୟା କରୁଛନ୍ତି ।"

ରାଜା କହିଲେ—"ଭାଇ ! ଏହା ତ ବାସ୍ତବ କଥା; କିନ୍ତୁ ଅନ୍ନ ଭୋଜନ ନ କଲେ କିପରି ଚଳିବ ?"

ଛଗ୍ଗାଣ ସଙ୍ଗେ ସଙ୍ଗେ କହିଲା—"ଠିକ୍ କଥା କହିଲେ ମହାରାଜ ! ଏବେ ମୋ ସମ୍ବନ୍ଧରେ ଚିନ୍ତା କରନ୍ତୁ । ଏହାକୁ ଯଦି ମୁଁ ନ ଖାଏଁ, ତେବେ କିପରି ଶରୀର

ଧାରଣ କରିବ ? ଗୋରୁ ଯଦି ଘାସ ଉପରେ ଦୟା କରନ୍ତି, ତେବେ କେତେଦିନ ବଞ୍ଚି ପାରିବେ ? ତେଣୁ ହେ ମହାରାଜ ! ଆପଣ ଏ ପ୍ରକାର ମାୟା ମମତା ତ୍ୟାଗ କରନ୍ତୁ । ମୋ ପରି ଜଣେ କ୍ଷୁଧାର୍ତ୍ତିକୁ ମୋର ଆହାର ଦେଇ ପରମ ପୁଣ୍ୟର ଅଧିକାରୀ ହୁଅନ୍ତୁ । ମୋ ଆହାରକୁ ନେଇ ପାପଭାଗୀ ନ ହୁଅନ୍ତୁ । ଦେଖନ୍ତୁ ଏହାକୁ ମାରି ମୁଁ ଏକା ଖାଇବି ନାହିଁ, ନିଜର ଛୁଆଙ୍କୁ ବି ଖାଇବାକୁ ଦେବି । ମହାରାଜ ! ଧର୍ମର ଗତି ଅତ୍ୟନ୍ତ ସୂକ୍ଷ୍ମ । ଯେଉଁ କର୍ମାନୁଷ୍ଠାନ ଦ୍ୱାରା ଅନ୍ୟର ଧର୍ମାନୁଷ୍ଠାନରେ ବାଧାବିଘ୍ନ ସୃଷ୍ଟି କରାଯାଏ, ତାହା ଧର୍ମ ନୁହେଁ, କୁଧର୍ମ । ଅବିରୁଦ୍ଧ ଧର୍ମ ହିଁ ଯଥାର୍ଥ ଧର୍ମ ।

ରାଜା କହିଲେ—"ଯେଉଁଠାରେ ଦୁଇଟି ଧର୍ମ ମଧ୍ୟରେ ପରସ୍ପର ବିରୋଧ ହୁଏ, ସେଠାରେ କ'ଣ କରାଯିବା ଉଚିତ୍ ?"

ଛଞ୍ଚାଣ କହିଲା—"ମହାରାଜ ! ସେଠାରେ ବଳାବଳ ଦେଖାଯିବା ଉଚିତ୍ । ଯାହା ପାଳନ କରିବା ଦ୍ୱାରା ଅଧିକ ବାଧା ଉପୁଜେ, ଅଧିକ ଲୋକଙ୍କର ଅକଲ୍ୟାଣ ହୁଏ, ଏପରି କ୍ଷେତ୍ରରେ ତାହା ତ୍ୟାଗ କରି, ଯଦ୍ୱାରା ନ୍ୟୂନତମ ବାଧା ବା ଆଘାତ ପ୍ରାପ୍ତିର ସମ୍ଭାବନା ଥାଏ, ତାହା ଆଚରଣ କରିବା ଉଚିତ୍ । ଏହି ପକ୍ଷୀଟିକୁ ଛାଡ଼ିଦେବା ଦ୍ୱାରା କେବଳ ଆପଣଙ୍କ ମନରେ କଷ୍ଟ ହେବ; କିନ୍ତୁ ମୋର ସମସ୍ତ ପରିବାରଙ୍କର ତ ଏହାକୁ ନ ଛାଡ଼ିବା ଦ୍ୱାରା ପ୍ରାଣ ଚାଲିଯିବ । ତେଣୁ ଆପଣ ଏହି ପକ୍ଷୀଟିକୁ ମୋତେ ଦେଇଦେବା ଉଚିତ୍ ।

ରାଜା କହିଲେ—"ଅଚ୍ଛା, ଗୋଟିଏ କାମ କର । ତୁମର ତ ଏ କପୋତ-ଠାରେ କୌଣସି ଦ୍ୱେଷ ନାହିଁ । ତୁମର ତ ଆହାର କେବଳ ଆବଶ୍ୟକ ? ଏବେ ଏପରି କାର୍ଯ୍ୟ କରିବା ଉଚିତ୍ ଯେ, ଶରଣାଗତଙ୍କୁ ରକ୍ଷା କରିବାର ମୋର ଯେଉଁ ବ୍ରତ ତାହା ଖଣ୍ଡିତ ଯେପରି ନ ହେବ ଓ ତୁମକୁ ଆହାର ବି ମିଳିଯିବ । ଏଥିପାଇଁ ମୁଁ ଏହି ଉପାୟ ଚିନ୍ତା କରୁଛି ଯେ, ଅନ୍ୟ ଯେଉଁ ପକ୍ଷୀର ଯେତେ ମାଂସ ଆବଶ୍ୟକ ତାହା ତୁମେ ମୋତେ କୁହ, ମୁଁ ସେତେ ମାଂସ ମଗାଇ ଦେବି । ତୁମେ ତ ହେଉଛ ଛଞ୍ଚାଣ ପକ୍ଷୀ, ମୋର ଏଠାରେ ବହୁତ ମୃତ ଜନ୍ତୁ ଅଛନ୍ତି । ତୁମେ ଯେତେ ଚାହିଁ ମୁଁ ସେତେ ମାଂସ ତୁମକୁ ଦେଇପାରେ । କିନ୍ତୁ ମୋର ବ୍ରତ ଖଣ୍ଡିତ ହେବାକୁ ଦିଅ ନାହିଁ ।"

ଛଞ୍ଚାଣ କହିଲା—"ମହାରାଜ ! ମୁଁ ମୃତ ଜୀବର ମାଂସ ଖାଏ ନାହିଁ ।"

ରାଜା କହିଲେ—"ଆଚ୍ଛା ତୁମକୁ ଜୀବନ୍ତଙ୍କର ମାଂସ ଦେବି ।"

ଛଞ୍ଚାଣ କହିଲା—"ଏଥିରୁ କି ଲାଭ ପାଇବେ ? ଗୋଟିଏ ଜୀବପାଇଁ ଆପଣ ଅନ୍ୟ ଜୀବପ୍ରତି ହିଂସା ଆଚରଣ କରିବେ, ଏହା କେଉଁ ପ୍ରକାର ଦୟା ?"

ରାଜା କହିଲେ—"ଭାଇ ! ମୋତେ ତ ଶରଣାଗତଙ୍କୁ ରକ୍ଷା କରିବାକୁ ପଡ଼ିବ । ଏହି କପୋତଟି ମୋ କୋଲରେ ବସି ଭୟରେ ଥରହର ହୋଇ କମ୍ପୁଅଛି ଓ ବାରମ୍ବାର ମୋ ମୁହଁକୁ ସନ୍ତ୍ରସ୍ତ ନୟନରେ ଚାହିଁ ଏହି ଭାବ ବ୍ୟକ୍ତ କରୁଛି ଯେ—"ହେ ରାଜନ୍ ! ମୋତେ ରକ୍ଷା କର ।" ଏଥିପାଇଁ ମୁଁ ଏ କପୋତକୁ ଯେ କୌଣସି ପ୍ରକାରରେ ରକ୍ଷା କରିବି । ଏହା ବଦଳରେ ତୁମେ ମୋତେ ଯାହା ମାଗିବ, ମୁଁ ତାହା ତୁମକୁ ଦେବି ।"

ଛଞ୍ଚାଣ କହିଲା—"ତେବେ ଠିକ୍ ଅଛି ମହାରାଜ ! ଆପଣଙ୍କର ଯଦି ଏ କପୋତ ପ୍ରତି ଏତେ ସ୍ନେହ, ଆପଣ କୌଣସି ପ୍ରକାର ଏହାକୁ ଦେବାକୁ ଅନିଚ୍ଛୁକ, ତେବେ ଗୋଟିଏ କାମ କରନ୍ତୁ, ଏହି କପୋତ ଓଜନର ମାଂସ ନିଜ ଶରୀରରୁ ନିଜେ କାଟି ମୋତେ ପ୍ରଦାନ କରନ୍ତୁ । ତାହା ଖାଇ ମୁଁ ପ୍ରସନ୍ନ ହେବି ।"

ରାଜା ଏ କଥା ଶୁଣି ଅତ୍ୟନ୍ତ ପ୍ରସନ୍ନତା ପ୍ରକାଶ କରି ଅତି ଉଲ୍ଲାସରେ କହିଲେ—"ପକ୍ଷୀରାଜ ! ତୁମେ ମୋ ଉପରେ ଅତ୍ୟନ୍ତ କୃପା କରିଅଛ । ମୁଁ ଏଥିପାଇଁ ଏହାକୁ ମୋର ପରମ ସୌଭାଗ୍ୟ ବୋଲି ମନେ କରୁଛି । କାରଣ ମୋର ଶରୀରକୁ ମୁଁ ଆଜି ଏପରି ସୁନ୍ଦର କାର୍ଯ୍ୟରେ ବିନିଯୋଗ କରିବାକୁ ଯାଉଛି ।" ଏହା କହି ମହାରାଜ ଏକ ବଡ଼ ତରାଜୁ ମଗାଇଲେ । ତରାଜୁର ଗୋଟିଏ ପାଖରେ କପୋତକୁ ରଖି ଅନ୍ୟ ପାଖରେ ନିଜ ଶରୀରରୁ ମାଂସ କାଟି ରଖିଲେ । କିନ୍ତୁ ଲୋକମାନେ ଦେଖିଲେ, ମାଂସର ଓଜନ କମ ଓ କପୋତର ଓଜନ ବେଶୀ । ଏହା ଦେଖି ରାଜା ପୁନଶ୍ଚ ନିଜର ଶରୀରରୁ ମାଂସ କାଟି ତରାଜୁର ପଲ୍ଲାରେ ରଖିଲେ । ଏଥର ବି ସମାନ ଓଜନ ହେଲା ନାହିଁ । ରାଜା ଅତ୍ୟନ୍ତ ଉତ୍ସାହର ସହିତ ବାରମ୍ବାର ନିଜ ଶରୀରରୁ ମାଂସ କାଟି ପଲ୍ଲାରେ ରଖିବାକୁ ଲାଗିଲେ; କିନ୍ତୁ କପୋତର ପଲ୍ଲା ଭୂମି ଉପରୁ ଟିକିଏ ବି ଉଠିଲା ନାହିଁ । ରାଜା ଯେତେବେଳେ ଦେଖିଲେ ତାଙ୍କ ଶରୀରରୁ ମାଂସ ଶେଷ ହୋଇ ଆସିଲାଣି, ସେତେବେଳେ ସେ ନିଜେ ସେହି ପଲ୍ଲା ଉପରେ ଯାଇ ବସି ପଡ଼ିଲେ ।

ଏହା ଦେଖି ଛଞ୍ଚାଣ ହସିବାକୁ ଲାଗିଲା । ଦେଖୁ ଦେଖୁ ସେ ସେଠାରୁ ସଙ୍ଗେ ସଙ୍ଗେ ଅଦୃଶ୍ୟ ହୋଇଗଲା ଓ ଦେଖାଗଲା ତା' ସ୍ଥାନରେ ବଜ୍ରଧାରୀ ଇନ୍ଦ୍ର ଠିଆ ହୋଇଛନ୍ତି । ସେ ମେଘ ଗମ୍ଭୀର ବାଣୀରେ କହୁଛନ୍ତି—"ରାଜନ୍ ! ଆପଣଙ୍କର ମଙ୍ଗଳ ହେଉ । ମୁଁ ପ୍ରକୃତରେ ଛଞ୍ଚାଣ ନୁହେଁ, ଦେବରାଜ ଇନ୍ଦ୍ର । ଏ କପୋତଟି ମଧ୍ୟ ପ୍ରକୃତ କପୋତ ନୁହେଁ, ସେ ହେଉଛନ୍ତି ହବ୍ୟବାହନ ସାକ୍ଷାତ୍ ଅଗ୍ନିଦେବ । ଆମେ ଦୁହେଁ ଆପଣଙ୍କର ଧର୍ମନିଷ୍ଠାର ପରୀକ୍ଷା ନେବା ପାଇଁ ଛଦ୍ମ ବେଶରେ ଆପଣଙ୍କର ଯଜ୍ଞ ମଣ୍ଡପକୁ

ଆସିଥିଲୁ । ସ୍ୱର୍ଗରେ ଆପଣଙ୍କର ପ୍ରଶଂସା ଆମେ ଯେପରି ଶୁଣିଥିଲୁ ଦେଖିଲୁ, ଆପଣ ତା'ଠାରୁ ଅଧିକ ଶ୍ରେଷ୍ଠ ଓ ସିଦ୍ଧ ପୁରୁଷ ଅଟନ୍ତି । ଏହି ଶରଣାଗତବତ୍ସଳତା ରୂପକ ପରମ ଧର୍ମ ଯୋଗୁଁ ଆପଣଙ୍କର ଯଶ ପତାକା ପ୍ରଳୟକାଳ ପର୍ଯ୍ୟନ୍ତ ତିନି ଲୋକରେ ଫର୍ ଫର୍ ହୋଇ ଉଡ଼ିବ ଓ ଭୂ-ମଣ୍ଡଳରେ ସୂର୍ଯ୍ୟ, ଚନ୍ଦ୍ରଙ୍କ ସମ ଆପଣଙ୍କର ଯଶ ଅଚଳ ରହିବ ।"

ଏତିକି କହି ଅଗ୍ନି ଓ ଇନ୍ଦ୍ର ସଙ୍ଗେ ସଙ୍ଗେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ମଧ୍ୟ ନିଜର ଯଜ୍ଞ ଉଦ୍‌ଯାପନ କରି ଧର୍ମାନୁଷ୍ଠାନରେ ଲାଗି ପଡ଼ିଲେ ଓ ଧର୍ମରେ ପ୍ରଜାପାଳନ କରିବାରେ ଲାଗିଲେ । ଏହି ଧର୍ମାତ୍ମା-ରାଜାଙ୍କର ପୁତ୍ର ହେଉଛନ୍ତି ତ୍ରୈଲୋକ୍ୟ ବନ୍ଦିତ ପ୍ରାତଃ ସ୍ମରଣୀୟ ମହାରାଜ ଶିବି । ତାଙ୍କର ଅମଳ-ବିମଳ-ଧବଳ କୀର୍ତ୍ତି ଆଜି ପର୍ଯ୍ୟନ୍ତ ତିନି ଲୋକରେ ବ୍ୟାପି ରହିଛି । ମହାଭାରତ ଆଦି ଗ୍ରନ୍ଥରେ ଏହି ଛଞ୍ଚାଣ ଓ କପୋତଙ୍କ କଥାରେ ଏହାଙ୍କ ସମ୍ବନ୍ଧରେ ମଧ୍ୟ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଛି ।"

ଶୌନକ ଏହାଶୁଣି ପଚାରିଲେ—"ହେ ସୂତ ! ମହାରାଜ ଶିବିଙ୍କଠାରେ ଏପରି କି ଗୁଣ ଥିଲା ଯେ, ଯେଉଁ କାରଣରୁ ସେ ଆଜି ମଧ୍ୟ ଅଜର ଅମର ହୋଇ ରହିଛନ୍ତି ? ମହାଭାରତ ଆଦି ଗ୍ରନ୍ଥରେ ବାରମ୍ବାର ଏହାଙ୍କର ଯଶଗାନ କାହିଁକି କରାଯାଇଛି ଓ ସ୍ଥାନେ ସ୍ଥାନେ ଏହାଙ୍କ ଉପାଖ୍ୟାନକୁ କାହିଁକି ଏତେ ଗୌରବାନ୍ୱିତ କରାଯାଇଛି ?"

ସୂତ ଏହାର ଉତ୍ତର ଦେବାକୁ ଯାଇ କହିଲେ—"ମହାରାଜ ! ରାଜର୍ଷି ଶିବିଙ୍କ-ଠାରେ ସମସ୍ତ ପ୍ରକାର ଅଲୌକିକ ଗୁଣ ଥିଲା । ସେ ଥିଲେ ସମସ୍ତ ସଦ୍‌ଗୁଣର ଭଣ୍ଡାର । କିନ୍ତୁ ତାଙ୍କପରି ଧୈର୍ଯ୍ୟବାନ୍ ସଂସାରରେ କୌଣସିଠାରେ ଅନ୍ୟ କେହି ଥିବାର ଦେଖାଯାଏ ନାହିଁ । ତାଙ୍କର ଧୈର୍ଯ୍ୟ ଅଲୌକିକ ଥିଲା । ସେଥିପାଇଁ ତାଙ୍କୁ ପ୍ରଶଂସା କରିବାକୁ ପଡ଼ି ନ ଥିଲା । ତାଙ୍କର ଏ ପ୍ରକାର ସରଳ ସ୍ୱଭାବ ହୋଇ ଯାଇଥିଲା ଯେ, ଅତି ବଡ଼ ବଡ଼ ଦୁର୍ଘଟଣା ଘଟୁଥିବା ସତ୍ତ୍ୱେ ବି ସେ କେବେହେଲେ ବିଚଳିତ ହେଉ ନ ଥିଲେ । କୌଣସି ପ୍ରକାର ଅନୁକୂଳ ବା ପ୍ରତିକୂଳ ଘଟଣାରେ ତାଙ୍କର ଧୈର୍ଯ୍ୟବାନ୍ଧ ଭାଙ୍ଗି ଯାଉ ନଥିଲା । ମହାରାଜ ! ସାଧାରଣତଃ ସ୍ତ୍ରୀ ପୁତ୍ରଙ୍କଠାରେ, ଧନ ସମ୍ପତ୍ତି, ଭୂମି ତଥା ଭବନ ଆଦିରେ ମନୁଷ୍ୟର ଏପରି ଆସକ୍ତି ହୋଇଯାଏ ଯେ, ଏହି ଆସକ୍ତିର ନାଶକୁ ନିଜର ନାଶ ବୋଲି ମନେକରେ । ଭଗବାନଙ୍କର ଏହି ଗୁଣମୟୀ ଦୈବୀ ମାୟାକୁ ସେ ଅତିକ୍ରମ କରି ଯାଇଥିଲେ, ତାଙ୍କର ସତ୍ୟରେ ନିଷ୍ଠାଥିଲା । ସେ ସତ୍ୟ ପାଇଁ ସବୁକିଛି ପରିତ୍ୟାଗ କରିବାକୁ ତତ୍ପର ଥିଲେ ।"

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଉଶୀନରନନ୍ଦନ ରାଜର୍ଷି ଶିବିଙ୍କ ଧୈର୍ଯ୍ୟ ସମ୍ବନ୍ଧରେ ଆପଣ ଆମ୍ଭମାନଙ୍କୁ ଶୁଣାନ୍ତୁ । ଏହିପରି କଥା ଶ୍ରବଣରେ ଅନ୍ତଃକରଣ ଶୁଦ୍ଧ ହୁଏ ଓ ଧର୍ମରେ ପ୍ରବୃତ୍ତି ବଢ଼େ ।"

ସୂତ କହିଲେ—"ତେବେ ଠିକ୍ ଅଛି, ମହାରାଜ ! ବର୍ତ୍ତମାନ ମୁଁ ମହାରାଜ ଶିବିଙ୍କ ଚରିତ ଶୁଣାଉଛି । କିନ୍ତୁ ମୁଁ ଏହା ସଂକ୍ଷେପରେ ଆପଣମାନଙ୍କୁ କହିବି । ଆପଣମାନେ ତ ବିଦ୍ୱାନ୍, ତେଣୁ ତାହା ଶୁଣି ଆପଣମାନେ ତାକୁ ବିସ୍ତାର କରି ନେବେ ।"

## ଛପ୍‌ପୟ

ବନ କେ ଅଗ୍ନି କପୋତ ଉଶୀନର ନୃପ-ଢିଙ୍ଗ ଆୟେ ।
ଶକ୍ର ଶ୍ୟେନ ଧରି ରୂପ ଭୂପ କୂ ବଚନ ସୁନାୟେ ।।
ଯହ କପୋତ ଆହାର ହମାରୀ ଯ୍ୟା କୂଁ ତ୍ୟାଗୋ ।
ନୃପତି କହେଁ—ତଜି ଯହି ଔର କଛୁ ହୋ ମାଁଗୋ ।।
ମାଁଗ୍ୟୋ ନୃପ-ତନ ମାଂସ ଜବ, ହରଷି କର୍‌ୟୋ ତନ ସମରପନ ।
କୃଷ୍ଣ ଧୈର୍ଯ୍ୟ ତେଁ କରେ ବଶ, ଲହ୍ୟୋ ଅନ୍ତମହଁ ଭକ୍ତିଧନ ।।



# ଉଶୀନର-ନନ୍ଦନ
# ମହାରାଜ ଶିବଙ୍କ କଥା

ଶିବର୍ବନଃ ଶର୍ମିର୍ଦକ୍ଷଶ୍ଚତ୍ୱାରୋଶୀନରାତ୍ମଜାଃ ।
ବୃଷାଦର୍ଭଃ ସୁବୀରଶ୍ଚ ମଦ୍ରଃ କାକେୟ ଆତ୍ମଜଃ ॥ *

(ଶ୍ରୀ ଭା ୯ ସ୍କ, ୨୩ ଅ, ୩ ଶ୍ଳୋକ)

## ଛପ୍‌ପୟ

ତନ କେ ସୁତ ଶିବ ଭୟେ କ୍ରୋଧଜିତ ଧୈର୍ଯ୍ୟବାନ ଅତ ।
ମାଁଗେଯା ଦ୍ୱିଜ ସୁତ ମାଂସ ଦୟୋ ହର୍ଷିତ ହ୍ୱୈ ଭୂପତ ॥
ଲେନ ପରୀକ୍ଷା ମହଲ ମାହୁଁ ଦ୍ୱିଜ ଆଗ ଲଗାଇ ।
ତନକ ନ ବଦଲତ ଭୟେ ବାତ ଦ୍ୱିଜ ଶୀଶ ଚଢ଼ାଇ ॥
ଆୟେ ଅଜ ଦ୍ୱିଜ ବେଶ ଧରି, ଲଇ ପରୀକ୍ଷା କଠିନ ଅତ ।
ମୃତକ ପୁତ୍ର ଜୀବିତ ଭୟୋ, ଶିବ ନରପତ କୀ ବିମଲ ମତ ॥

ସ୍ୱଳ୍ପ ବସ୍ତୁର ତ୍ୟାଗ ବିନା ମହାନ୍ ବସ୍ତୁର ପ୍ରାପ୍ତି ହୋଇପାରେ ନାହିଁ । ତ୍ୟାଗ ଦ୍ୱାରା ହିଁ ବସ୍ତୁର ବୃଦ୍ଧି ଘଟିଥାଏ । କୃଷକ ପ୍ରଥମ ଅନ୍ନକୁ ମାଟିରେ ମିଶାଇ ଦିଏ । ତାହା ସେ ତ୍ୟାଗ କରେ । ତେବେ ଯାଇ ସେ ଗୋଟିଏ ଅନ୍ନ ଦାନା ସ୍ଥାନରେ ବହୁତ ଅନ୍ନ ପାଏ । ବ୍ୟବସାୟୀ ବିଦେଶରେ ବେପାର କରି ନିଜ ପାଖରେ ଥିବା ଦ୍ରବ୍ୟ ପ୍ରଥମେ ଅଳ୍ପ ଲାଭରେ ଛାଡ଼ିଦିଏ, ତଦ୍ୱାରା ପରେ ସେ ବହୁତ ଲାଭ ଉଠାଏ । ବିଦେଶୀ

* ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ମହାରାଜ ଉଶୀନରଙ୍କର ଶିବ, ବନ, ଶର୍ମି ଓ ଦକ୍ଷ ଏହି ଚାରି ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ଶିବ ହେଉଛନ୍ତି ଜ୍ୟେଷ୍ଠ । ଏହି ଶିବଙ୍କର ମଧ୍ୟ ଚାରିପୁତ୍ର ଥିଲେ । ସେମାନଙ୍କର ନାମ ଯଥାକ୍ରମେ ବୃଷାଦର୍ଭ, ସୁବୀର, ମଦ୍ର ଓ କୈକେୟ ।"

ବଣିକମାନେ ସମୁଦ୍ରର ଅତଳ ଜଳ ବକ୍ଷ ଭେଦ କରି ଅନ୍ୟ ଦେଶକୁ ବାଣିଜ୍ୟ କରିବା ପାଇଁ ଯାଆନ୍ତି, ଏଥିପାଇଁ ସେମାନେ ନିଜର ଜୀବନକୁ ଝାଳରେ ପକାଇ ଦିଅନ୍ତି, ତେବେ ଯାଇଁ ସେମାନେ କିଛି ପାଇ ଥାଆନ୍ତି । କାମୀ ପୁରୁଷ କାମିନୀ ନିମନ୍ତେ ନିଜର ପ୍ରିୟରୁ ପ୍ରିୟତର ବସ୍ତୁ ତ୍ୟାଗ କରିଥାଏ । ସେହିପରି ଧର୍ମନିଷ୍ଠ ପୁରୁଷ ଧର୍ମନିମନ୍ତେ ନିଜର ସମସ୍ତ କିଛି ତ୍ୟାଗ କରିଥାଏ । ସେ ଯେଉଁ ପ୍ରତିଜ୍ଞା କରିଥାଏ, ପ୍ରାଣପଣେ ତାହା ପୂରଣ କରିବାକୁ ପ୍ରଯତ୍ନ କରିଥାଏ । ଯାହାଙ୍କର ଏହି ନଶ୍ୱର ଶରୀରରେ, କ୍ଷଣଭଙ୍ଗୁର ସାଂସାରିକ ବିଷୟ ଭୋଗରେ, ନାଶବାନ୍ ଇଟା, ପଥର ଘର ଆଦିରେ ମୋହ ରହିଛି, ସେମାନେ ସଂସାରର ଊର୍ଦ୍ଧ୍ୱରେ ଥିବା ବସ୍ତୁକୁ କିପରି ଅବା ଲାଭ କରିବାକୁ ସକ୍ଷମ ହୋଇ ପାରିବେ ? ଯଦି ସ୍ୱର୍ଗାଦି ଲୋକ ପ୍ରାପ୍ତି ପାଇଁ ଇହଲୋକର ସମସ୍ତ ସୁଖ ତ୍ୟାଗ କରିବାକୁ ହିଁ ପଡ଼ିଥାଏ, ତେବେ ଭଗବାନ୍ ଯେ ସ୍ୱର୍ଗର ବହୁ ଊର୍ଦ୍ଧ୍ୱରେ । ତାଙ୍କୁ ଲାଭ କରିବା ପାଇଁ ତ ଇହଲୋକ, ସ୍ୱର୍ଗଲୋକ, ଇଷ୍ଟ ଓ ଶ୍ରୁତ ସମସ୍ତ ସୁଖ ତ୍ୟାଗ କରିବାକୁ ପଡ଼ିବ । ରାଜପଦ, ରାଜକୋଷ, କଳା, ସ୍ତ୍ରୀ, ପୁତ୍ର ତଥା ସମସ୍ତ ବିଷୟ ଭୋଗକୁ ତ୍ୟାଗ କଲେ ବାସ୍ତବିକ ଧର୍ମପ୍ରାପ୍ତି ହୋଇପାରେ । ତାହାହେଲେ କେଉଁ ବୁଦ୍ଧିମାନ୍ ବ୍ୟକ୍ତି ଏହି ନାଶବାନ୍ ନଗଣ୍ୟ ଭୋଗକୁ ତ୍ୟାଗ ନ କରିବାକୁ ଚାହାନ୍ତି ? କିନ୍ତୁ ମୂର୍ଖଲୋକ, ନାରକୀୟ ପୁରୁଷ ପଇସା ପଇସା ହୋଇ ଅସତ୍ୟର ଆଶ୍ରୟ ନେବାକୁ ପଶ୍ଚାତ୍ପଦ ହେଉ ନାହାନ୍ତି । ସେମାନେ ଚିନ୍ତା କରୁଛନ୍ତି—"ଜୀବନ ପଛେ ଯାଉ—ପଇସା ରହୁ ।" ସେମାନେ ଏହି ପ୍ରକାରର ଦୁଃଖ-ସୁଖ ପରିଧି ମଧ୍ୟରେ ଚୌରାଶି ଲକ୍ଷ ଯୋନି ପରିକ୍ରମା କରୁଛନ୍ତି । ଯେଉଁମାନେ ଧର୍ମ ମାର୍ଗରେ ସର୍ବସ୍ୱ ତ୍ୟାଗ କରି ଦେଉଛନ୍ତି, ସେମାନେ ନିଜର ଅମଳ-ଧବଳ କୀର୍ତ୍ତିକୁ ଚିରଦିନ ପାଇଁ ଭୂ-ମଣ୍ଡଳରେ ରଖିଦେଇ ଦିବ୍ୟଲୋକରେ ଆନନ୍ଦରେ ବିଚରଣ କରି ଶେଷରେ ପରମ ପଦର ଅଧିକାରୀ ହୋଇ ପାରୁଛନ୍ତି ।

ସୂତ କହିଲେ—"ହେ ମୁନିଗଣ ! ଏବେ ମୁଁ ଉଶୀନର ନନ୍ଦନ ମହାରାଜ ଶିବିଙ୍କର ପାବନ ଚରିତ୍ର ବର୍ଣ୍ଣନା କରିବି । ଏ ମଧ୍ୟରେ ଅନେକ ଯୁଗ ବିତି ଗଲାଣି, ତଥାପି ତାଙ୍କର କୀର୍ତ୍ତି ସଂସାରରେ ସେହିପରି ଉଜ୍ଜ୍ୱଳ ରହିଛି ଓ ସେ ପର୍ଯ୍ୟନ୍ତ ବିରାଜିତ ରହିବ, ଯେ ପର୍ଯ୍ୟନ୍ତ ଗଙ୍ଗା, ଯମୁନା, ହିମାଳୟ, ଚନ୍ଦ୍ର, ସୂର୍ଯ୍ୟ ତଥା ଏହି ଦୃଶ୍ୟମାନ ଜଗତ ବିରାଜମାନ କରୁଥିବେ । ମହାରାଜ ଶିବି ନିଜର ପୁଣ୍ୟକର୍ମ ବଳରେ ସମସ୍ତ ଦିବ୍ୟଲୋକକୁ ଜୟ କରିଥିଲେ । ଧରା ବକ୍ଷରେ ନିଜ ସମକକ୍ଷ ସମସ୍ତ ରାଜାଙ୍କୁ ବାହୁ-ବଳରେ ଜୟ କରି ସେ ସମ୍ରାଟଜିତ୍ ଉପାଧିରେ ଭୂଷିତ ହୋଇଥିଲେ, ରାଜା ଏତେ ଯଜ୍ଞ, ପୁଣ୍ୟ କର୍ମ କରିଥିଲେ ଓ ଦାନ ଦେଇଥିଲେ ଯେ, ତାହା କଳନା କରିବା ସମ୍ଭବ ନୁହେଁ । ପୃଥିବୀର ଧୂଳିକଣା, ମେଘ-ଝୋପା, ଆକାଶର ତାରକା, ନକ୍ଷତ୍ର,

ସମସ୍ତ ଜୀବଙ୍କର ଲୋମ ଓ ସପ୍ତ ସମୁଦ୍ରର ଜଳବିନ୍ଦୁକୁ ଗଣନା କରିବା ସମ୍ଭବ ହୋଇପାରେ, କିନ୍ତୁ ମହାରାଜ ଶିବି ବ୍ରାହ୍ମଣମାନଙ୍କୁ କେତେ ଗୋଦାନ କରିଥିଲେ, କେତେ ସୁବର୍ଣ୍ଣ ମୁଦ୍ରା ବିତରଣ କରିଥିଲେ ତାହା ଗଣନା କରିବା କଦାପି ସମ୍ଭବ ନୁହେଁ । ସେ ଯେତେ ଯଜ୍ଞ କରିଥିଲେ, କେବଳ ପ୍ରଜାପତିଙ୍କୁ ଛାଡ଼ିଦେଲେ ଅନ୍ୟ କେହି ହେଲେ ଏତେ ଯଜ୍ଞ କରି ନାହାନ୍ତି । ସମୁଦ୍ରରେ ଯେତେ ଜଳଜୀବ ବାସ କରନ୍ତି, ସେ ସେତେ ଗୋଦାନ କରିଥିଲେ । ତାଙ୍କ ଯଜ୍ଞକୁ ସମସ୍ତେ ଆସନ୍ତି, ଯେ ଯେତେ ମିଷ୍ଟାନ୍ନ ଆଦି ଭୋଜନ କରନ୍ତି ଓ ଯେ ଯେତେ ଯାହା ନିଅନ୍ତି, ଏହା ଥିଲା ତାଙ୍କର ପ୍ରଚାର । ମହାରାଜାଙ୍କର ଉଦାରତାରେ ପ୍ରସନ୍ନ ହୋଇ ସଦାଶିବ ଭୋଳାନାଥ ଶଙ୍କର ତାଙ୍କୁ ଆଶୀର୍ବାଦ ଦେଇଥିଲେ ଯେ—"ତୁମର ଭଣ୍ଡାର କେବେହେଲେ ଖାଲି ନ ହେଉ ।" ଏହି ବର ପାଇ ରାଜା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସେ ଦୁଇ ହସ୍ତରେ ଧନ ସମର୍ପିତ କରୁଥିଲେ ଓ ଘୋଷଣା କରିଥିଲେ ଯେ, ଯାହାର ଯେଉଁ ବସ୍ତୁ ଆବଶ୍ୟକ ସେ ତାହା ନିଃସଙ୍କୋଚରେ ଆସି ମୋ'ଠାରୁ ନେଇ ଯାଆନ୍ତୁ । ରାଜା ଥିଲେ କଳ୍ପବୃକ୍ଷ ଭଳି ପ୍ରତ୍ୟେକଙ୍କର ଇଚ୍ଛା ପୂର୍ଣ୍ଣକାରୀ । ତାଙ୍କ ଦ୍ୱାରଦେଶରୁ କୌଣସି ଅତିଥି ନିରାଶ ହୋଇ ଫେରୁ ନ ଥିଲେ ।

ଦିନେ ମହାରାଜଙ୍କ ନିକଟକୁ ଜଣେ ତେଜସ୍ୱୀ ବ୍ରାହ୍ମଣ ଆସିଲେ । ସେ ରାଜ ସଭାକୁ ଆସିଥିବାର ଦେଖି ରାଜା ଶ୍ରଦ୍ଧା ଓ ଭକ୍ତି ସହକାରେ ତାଙ୍କୁ ଅଭିନନ୍ଦନ କଲେ । ତାଙ୍କୁ କୁଶଳ ପଚାରି, ଯଥୋଚିତ ପୂଜାର୍ଚ୍ଚନା କଲେ ଓ ହାତ ଯୋଡ଼ି ନମ୍ରଭାବ ସହିତ ତାଙ୍କୁ ପଚାରିଲେ—"ବ୍ରହ୍ମନ୍ ! ଏ ଦୀନ ପ୍ରତି ଆପଣ କୃପା କରି ଏ ଦୀନର ଯୋଗ୍ୟ ସେବା ପାଇଁ ନିଃସଙ୍କୋଚରେ ଆଜ୍ଞା ପ୍ରଦାନ କରନ୍ତୁ ।"

ବ୍ରାହ୍ମଣ କହିଲେ—"ହଁ ରାଜନ୍ ! ମୁଁ ଆପଣଙ୍କ ନିକଟକୁ ଏକ କାର୍ଯ୍ୟରେ ଆସି ଅଛି ।"

ରାଜା କହିଲେ—"ତେବେ ଆଜ୍ଞା ହେଉ ଭଗବନ୍ ! ମୋର ଧନ, ପ୍ରାଣ ସବୁ କିଛି ବ୍ରାହ୍ମଣ ଓ ଅତିଥିଙ୍କ ସେବା ପାଇଁ ଉତ୍ସର୍ଗୀକୃତ ।"

ବ୍ରାହ୍ମଣ କହିଲେ—"ରାଜନ୍ ! ମୁଁ ଅତ୍ୟନ୍ତ କ୍ଷୁଧାତୁର, ଆହାର ଆଶାରେ ଆପଣଙ୍କ ନିକଟକୁ ଆସି ଅଛି ।"

ରାଜା ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ପ୍ରଭୋ ! ମୋର ଏଠାରେ ଷଟ୍‌ରସଯୁକ୍ତ ୫୬ ପ୍ରକାର ବ୍ୟଞ୍ଜନ ପ୍ରସ୍ତୁତ ହୋଇଛି, ଆଦେଶ କରନ୍ତୁ, ଆପଣଙ୍କର କି ପ୍ରକାର ଭୋଜନ ଆବଶ୍ୟକ ?"

ବ୍ରାହ୍ମଣ କହିଲେ—"ମୁଁ ଏ ପ୍ରକାର ଭୋଜନ ଚାହେଁ ନାହିଁ । ମୁଁ ହେଉଛି ଅଘୋର ସମ୍ପ୍ରଦାୟର ଲୋକ । ଭୋଜନ ପାଇଁ ମୋର ମାଂସ ଆବଶ୍ୟକ ।"

ରାଜା ଧୈର୍ଯ୍ୟର ସହିତ କହିଲେ—"ମାଂସ ମଧ୍ୟ ରନ୍ଧା ହୋଇଛି । କହନ୍ତୁ ତେବେ ମୃଗ, ଶୂକର, ଶଶା, ଛାଗ ଆଦି ମଧ୍ୟରୁ କେଉଁ ମେଧ ପଶୁର ମାଂସ ଆପଣ ଭୋଜନ କରିବେ ?"

ବ୍ରାହ୍ମଣ କହିଲେ—"ରାଜନ୍ ! ଏମାନଙ୍କ ମଧ୍ୟରୁ କାହାର ମାଂସରେ ମୋର ରୁଚି ନାହିଁ, ମୁଁ ନରମାଂସ ଭକ୍ଷଣ କରିବି ।"

ରାଜା କହିଲେ—"ବଧ ଶାଳାରେ ନରମାଂସ ମଧ୍ୟ ମିଳି ପାରିବ ।"

ବ୍ରାହ୍ମଣ କହିଲେ—"ଏପରି ନରମାଂସ ମୁଁ ଖାଇବାକୁ ଚାହେଁ ନାହିଁ । ମୁଁ ଚାହେଁ ରାଜପୁତ୍ରର ମାଂସ । ଯଦି ତୁମେ ନିଜର ଏକଇରବଳା କୁମାର ମାଂସକୁ ନିଜେ ରାନ୍ଧି ଆଣିବ, ତେବେ ତାହା ଖାଇ ମୁଁ ତୃପ୍ତ ହେବି ।" ରାଜା ଅତ୍ୟନ୍ତ ପ୍ରସନ୍ନତା ପ୍ରକାଶ କରି କହିଲେ—"ବ୍ରହ୍ମନ୍ ! ମୋର ତଥା ମୋ ପୁତ୍ରର ଅହୋଭାଗ୍ୟ ! ଆଜି ତାହାର ରାଜକୁଳରେ ଜନ୍ମ ନେବା ସାର୍ଥକ ହୋଇଯିବ । କାରଣ ଅତିଥି ସେବାରେ ତାହାର ଶରୀର ବିନିଯୋଗ ହେବ । ବ୍ରହ୍ମନ୍ ! ଏହି ହାଡ଼ ମାଂସରେ ଗଢ଼ା ଶରୀରର ଏହା ହିଁ ଏକମାତ୍ର ଉପଯୋଗ ଯେ ଏହାଦ୍ୱାରା ଧର୍ମୋପାର୍ଜନ କରାଯାଇଥାଏ । ଯଦି ମାନବ ଶରୀର ଦ୍ୱାରା କୈତବ ରହିତ ଧର୍ମ (ଛଳ କପଟ ରହିତ ଧର୍ମ) ଉପାର୍ଜ୍ଜନ କରାଯାଇ ପାରେ, ତେବେ ଏହାଦ୍ୱାରା ଶରୀରର ଗୋଟିଏ ଦିନର ଜୀବନ ମଧ୍ୟ ଧନ୍ୟ । ଏହା ବିପରୀତରେ ଯେଉଁ ସୁନ୍ଦର ସ୍ୱାଦିଷ୍ଟ ପଦାର୍ଥ ଖିଆଯାଇ ଦେହର ମାଂସ ବୃଦ୍ଧି କରାଯାଏ, ଦେହରେ ମଳ ପ୍ରସ୍ତୁତ କରାଯାଏ, ପବିତ୍ର ଭୂମିକୁ ଅପବିତ୍ର କରାଯାଏ, ଏ ପ୍ରକାର ଶିଶ୍ନୋଦର ପରାୟଣ ପୁରୁଷ (ଉପସ୍ଥ-ଉଦର ପରାୟଣକାମୀ ପୁରୁଷ) ଯଦି ଏକକଳ୍ପ ପର୍ଯ୍ୟନ୍ତ ଜୀବିତ ରହେ, ତେବେ ସେ ଜୀବିତ ରହି ଲାଭ କ'ଣ ? ବ୍ରହ୍ମନ୍ ! ଆପଣ ଆସନ୍ତୁ, ମୁଁ ସଙ୍ଗେ ସଙ୍ଗେ ମୋ ପୁତ୍ରର ମାଂସ ରାନ୍ଧିଆଣି ଦେଉଛି ।" ଏହା କହି ରାଜା ବ୍ରାହ୍ମଣଙ୍କୁ ଏକ ଆସନରେ ବସାଇ ଅନ୍ତଃପୁରକୁ ଗଲେ । ସେଠାରେ ସେ ନିଜର ପୁତ୍ର ରାଜକୁମାର ବୃଷାଦର୍ଭିକୁ ନିଜ ହାତରେ କାଟି ନିଜେ ତାହାର ମାଂସକୁ ରାନ୍ଧିଲେ ।

ସୂତ କହିଲେ—"ଭଗବାନ୍ ! ଆପଣ ଏଥିରେ ଆଶ୍ଚର୍ଯ୍ୟ ହୁଅନ୍ତୁ ନାହିଁ । ଯେ ସତ୍ୟବ୍ରତ ନେଇଛନ୍ତି, ତାଙ୍କ ନିକଟରେ ସ୍ତ୍ରୀ, ପୁତ୍ର, ଧନ ଆଦି ଅତ୍ୟନ୍ତ ତୁଚ୍ଛ ପଦାର୍ଥ । ତାଙ୍କ ପାଇଁ ନିଜ ପୁତ୍ର ଓ ଗୋଟିଏ ଛାଗଳ ଆଦିକ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଆମ୍ଭେମାନେ ତ ମାୟାର ଚକ୍ରରେ ପଡ଼ି ମୋହ ବଶ ହୋଇ ଅଜ୍ଞାନରେ ଜଣଙ୍କୁ ନିଜର

ବୋଲି ମନେ କରୁଥାଉଁ ତ ଅନ୍ୟ ଜଣକୁ ପର ବୋଲି ଭାବୁଥାଉଁ । କିନ୍ତୁ ଯେ ସତ୍ତ୍ୱନିଷ୍ଠାବାନ୍, ସେ ପ୍ରତ୍ୟେକଙ୍କୁ ପ୍ରଭୁଙ୍କ ସେବାର ଉପକରଣ ବୋଲି ମନେ କରନ୍ତି । ଭଗବାନ ଯାହା କିଛି ଦେଇଛନ୍ତି, ତାହା ଭଗବତ୍ ଓ ଭାଗବତଙ୍କ (ଭକ୍ତଙ୍କ) ସେବା ପାଇଁ ଦେଇଛନ୍ତି । ମହାରାଜ ! ଜଣେ ଆଚାର୍ଯ୍ୟ ଥିଲେ । ତାଙ୍କର ଏକ ନିଷ୍ଠାବାନ୍ ଶୂଦ୍ର ଶିଷ୍ୟ ଥିଲା । ଆଚାର୍ଯ୍ୟ ତାକୁ ବହୁତ ସ୍ନେହ କରୁଥିଲେ । ଆଚାର୍ଯ୍ୟ ବୃଦ୍ଧାବସ୍ଥାରେ ପଦାର୍ପଣ କରିଥିଲେ । ତେଣୁ ସେ ତା କାନ୍ଧ ଉପରେ ହାତ ରଖି ବୁଲୁଥିଲେ । ଏହାଦ୍ୱାରା ଆଚାର୍ଯ୍ୟଙ୍କର ଉଚ୍ଚଜାତିର ଶିଷ୍ୟମାନେ ମନେ ମନେ ଈର୍ଷାନ୍ୱିତ ହେଉଥିଲେ । ସର୍ବଜ୍ଞ ଆଚାର୍ଯ୍ୟ ସେମାନଙ୍କର ମନର ଭାବ ଜାଣି ପାରିଲେ । ଯେଉଁ ଶୂଦ୍ର ଭକ୍ତ ଉପରେ ମହାତ୍ମାଙ୍କର ଅନୁରାଗ ଥିଲା, ସେ କୌଣସି ଏକ ଉପପତ୍ନୀ ରଖିଥିଲା । ସେ ତାକୁ ବହୁତ ସ୍ନେହ କରୁଥିଲା । ଦିନେ ଆଚାର୍ଯ୍ୟ ଅନ୍ୟ ଜଣେ ଭକ୍ତକୁ କହିଲେ—"ରାତିରେ ଯେତେବେଳେ ଏହି ଶୂଦ୍ର ଭକ୍ତର ଉପପତ୍ନୀ ଶୋଇ ପଡ଼ିଥିବ, ସେତେବେଳେ ତୁମେ ସବୁ ଯାଇ ତା' ଅଙ୍ଗର ସମସ୍ତ ଆଭୂଷଣ କାଢ଼ି ନେଇଆସ ।"

ଆଚାର୍ଯ୍ୟଙ୍କର ଏ ପ୍ରକାର ଆଜ୍ଞା ପାଇ ଅନ୍ୟ ଶିଷ୍ୟମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଶୂଦ୍ର ଭକ୍ତ ସେତେବେଳେ ଘରେ ନ ଥିଲା । ତାହାର ପତ୍ନୀ ଶୋଇ ରହିଥିଲା । ସେ ନିଦରେ ଶୋଇ ନ ଥିଲା, କେବଳ ଆଖିବୁଜି ଏକ କଡ଼ମାଡ଼ି ଗଡ଼ି ପଡ଼ିଥିଲା । ଆଚାର୍ଯ୍ୟଙ୍କ ଆଜ୍ଞାରେ ସେହି ଭକ୍ତମାନେ ତା' ଘରକୁ ଗଲେ । ଧୀରେ ଧୀରେ ତା' ଅଙ୍ଗର ସମସ୍ତ ବହୁମୂଲ୍ୟ ଆଭୂଷଣ କାଢ଼ିବାକୁ ଲାଗିଲେ । ଯେତେବେଳେ ଗୋଟିଏ ଅଙ୍ଗରୁ ସେମାନେ ସମସ୍ତ ଆଭୂଷଣ କାଢ଼ି ସାରିଲେ, ସେତେବେଳେ ସେ ଅନ୍ୟ କଡ଼ ମାଡ଼ି ଶୋଇଲା । ଶିଷ୍ୟମାନେ ବୁଝି ପାରିଲେ ଯେ ଏ ଶୋଇ ନାହିଁ, ଜାଗ୍ରତ ଅଛି । ସେମାନେ ସଙ୍ଗେ ସଙ୍ଗେ ସେଠାରୁ ଦୌଡ଼ି ପଳାଇଲେ । ଭକ୍ତଟି ଘରକୁ ଆସି ସ୍ତ୍ରୀକୁ ପଚାରିଲା—"ତୋ'ର ଗୋଟିଏ ଅଙ୍ଗର ଆଭୂଷଣ କୁଆଡ଼େ ଗଲା ?"

ସେ କହିଲା—"କେତେକ ବୈଷ୍ଣବ ଆସିଥିଲେ । ସେମାନେ ମୋ ଶରୀରର ଆଭୂଷଣକୁ କାଢ଼ି ନେଇଗଲେ ।"

ଅତ୍ୟନ୍ତ ପ୍ରସନ୍ନତା ପ୍ରକାଶ କରି ଭକ୍ତଟି କହିଲା—"ତେବେ ସେମାନେ ଅନ୍ୟ ପଟର ଆଭୂଷଣ କାହିଁକି ଛାଡ଼ିଗଲେ ?"

ସ୍ତ୍ରୀ କହିଲା—"ମୁଁ କଡ଼ ଲେଉଟାଇବାରୁ ସେମାନେ ସଙ୍ଗେ ସଙ୍ଗେ ଦୌଡ଼ି ପଳାଇଗଲେ ।"

ଭକ୍ତଟି କଡ଼ା ସ୍ୱରରେ ପଚାରିଲା—"ତୁ କାହିଁକି ତେବେ କଡ଼ ଲେଉଟାଇଥିଲୁ ?"

ସ୍ତ୍ରୀ କହିଲା—"ପ୍ରାଣନାଥ ! ବୈଷ୍ଣବଗଣ ସୁବିଧାରେ 'ଅନ୍ୟ ଅଙ୍ଗର ଆଭୂଷଣ ନେଇ ପାରିବେ ବୋଲି ମୁଁ କଡ଼ ଲେଉଟାଇଲି ।"

ଭକ୍ତଟି ଗର୍ଜି ଉଠି କହିଲା—"ତୋ'ର କଡ଼ ଲେଉଟାଇବାରେ କି ଆବଶ୍ୟକତା ଥିଲା ? ଆମର ଏହି ଶରୀର, ଧନ, ଆଭୂଷଣ, ତଥା ଆମର ସର୍ବସ୍ୱ ହେଉଛି ବୈଷ୍ଣବଙ୍କର । ସେମାନେ ଯେପରି ଚାହୁଁଥିଲେ, ସେପରି ଓଲଟ ପାଲଟ କରି ଆପେ ଆପେ ନେଇ ଥାଆନ୍ତେ । ଜଣାପଡୁଛି ତୋ'ର ବୈଷ୍ଣବଙ୍କଠାରେ ନିଷ୍ଠା ନାହିଁ ।" ଏହା କହି ସେ ତାକୁ ସେହି ସମୟରେ ପରିତ୍ୟାଗ କରିଦେଲା । ଆଚାର୍ଯ୍ୟ ଯେତେବେଳେ ଏ କଥା ଶୁଣିଲେ, ସେତେବେଳେ ନିଜର ଉଚ୍ଚବର୍ଣ୍ଣାଭିମାନୀ ଭକ୍ତମାନଙ୍କୁ କହିଲେ—"ଏବେ ତୁମ୍ଭେମାନେ କୁହ ତ, ତୁମ୍ଭମାନଙ୍କ ମଧ୍ୟରୁ କାହାର୍ ଭଗବଦ୍ଭକ୍ତଙ୍କ ପ୍ରତି ଏ ପ୍ରକାର ନିଷ୍ଠା ଅଛି ?" ଏହା ଶୁଣି ସେମାନେ ସମସ୍ତେ ଲଜ୍ଜିତ ହେଲେ ଓ ସେହି ଦିନଠାରୁ ସେମାନେ ସେହି ଶୂଦ୍ର ଭକ୍ତଟିକୁ ଅତ୍ୟଧିକ ଆଦର କରିବାକୁ ଲାଗିଲେ ।

ସୂତ କହୁଛନ୍ତି—"ତେଣୁ ହେ ମୁନିଗଣ ! ଆପଣମାନେ ଏହା ଚିନ୍ତା କରନ୍ତୁ ନାହିଁ ଯେ ମହାରାଜ ଶିବି ନିଜ ହାତରେ ନିଜର ଅତି ସ୍ନେହର ପୁତ୍ରର ଶିର କାଟି ତାହାର ମାଂସକୁ କିପରି ରାନ୍ଧି ପାରିଲେ ? ସାଧୁମାନଙ୍କ ପାଇଁ ଏପରି କୌଣସି କାମ ନାହିଁ, ଯାହା କି ଦୁଃସାଧ୍ୟ । ନିଜର ନିଷ୍ଠା ପାଇଁ ସାଧୁ ପୁରୁଷ ସବୁ କିଛି କରି ପାରନ୍ତି ।"

ଶୌନକ ପଚାରିଲେ—"ହଁ, ତା'ପରେ ପୁଣି କ'ଣ ହେଲା ସୂତଜୀ ? ତେବେ ବ୍ରାହ୍ମଣ କ'ଣ ସେହି ବାଳକର ମାଂସ ଖାଇଲେ ? ସେ ବ୍ରାହ୍ମଣ କ'ଣ ଏକ ରାକ୍ଷସ ଥିଲେ ? ଏପରି ରାକ୍ଷସଙ୍କ ପ୍ରତି ଶ୍ରଦ୍ଧା ରଖିବା ମଧ୍ୟ ବାସ୍ତବରେ ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ ।"

ସୂତ କହିଲେ—"ହଁ ମହାରାଜ ! ଏପରି ହେବା ଅତ୍ୟନ୍ତ କଠିନ କଥା । ଇତିହାସରେ ହରିଶ୍ଚନ୍ଦ୍ର, ଦଧୀଚି, ମହାରାଜ ଶିବି ଆଦିଙ୍କ ଭଳି କ୍ୱଚିତ୍ ଦୃଷ୍ଟାନ୍ତ ମିଳେ । ହଁ ତାହାପରେ ରାଜା ନିଜ ପୁତ୍ରର ମାଂସ ରାନ୍ଧି ନେଇ ଆସିଲେ । କିନ୍ତୁ ସେ ବ୍ରାହ୍ମଣଙ୍କୁ ଯେଉଁଠାରେ ବସିବା ପାଇଁ ଆସନ ଦିଆ ଯାଇଥିଲା, ସେଠାରେ ଆଉ ତାଙ୍କୁ ଦେଖିବାକୁ ମିଳିଲା ନାହିଁ । ଅତ୍ୟନ୍ତ ଶଙ୍କାକୁଳ ଚିତ୍ତରେ ପୁତ୍ରର ରନ୍ଧା ମାଂସକୁ ଶିରରେ ବହନ କରି ରାଜା ସେହି ଅତିଥି ବ୍ରାହ୍ମଣଙ୍କୁ ଏଣେତେଣେ ଖୋଜିବାକୁ ଲାଗିଲେ । କିନ୍ତୁ କେଉଁଠାରେ ହେଲେ ତାଙ୍କୁ ଖୋଜି ପାଇଲେ ନାହିଁ । ଠିକ୍ ଏତିକି ବେଳେ ଜଣେ ରାଜ-କର୍ମଚାରୀ ଆସି କହିଲେ—"ପ୍ରଭୋ ! ଯେଉଁ ବ୍ରାହ୍ମଣ ରାଜକୁମାରଙ୍କ ମାଂସ ମାଗିଥିଲେ, ସେ ଆପଣଙ୍କ ଆସିବାର ଡେରି ହେବାରୁ ରାଜମହଲର ଭଣ୍ଡାର ଘର ତଥା ଅନ୍ୟ ସ୍ଥାନରେ କ୍ରୋଧରେ ଅଗ୍ନି ଲଗାଉ ଅଛନ୍ତି । ସମସ୍ତ ବହୁମୂଲ୍ୟ

ସାମଗ୍ରୀ ଭସ୍ମୀଭୂତ ହେବାରେ ଲାଗିଛି ।" ଏହାଶୁଣି ମଧ୍ୟ ମହାରାଜ ବିଚଳିତ ହୋଇ ନ ଥିଲେ । ଧୈର୍ଯ୍ୟର ସହିତ ତାହା ଶୁଣି ସେ ଅତିଥି ବ୍ରାହ୍ମଣଙ୍କ ନିକଟକୁ ଗଲେ ଓ ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ଭଗବାନ ! ମୋ ଅପରାଧ କ୍ଷମା କରନ୍ତୁ । ମୋର ଆସିବାରେ ବିଳମ୍ବ ହୋଇଗଲା । ଆପଣଙ୍କ ଆଜ୍ଞାନୁସାରେ ମୁଁ ନିଜ ପୁତ୍ରର ମାଂସ ରାନ୍ଧି ଆଣିଅଛି । ଆପଣ ତାହା ଆନନ୍ଦରେ ଭୋଜନ କରନ୍ତୁ ।"

ବ୍ରାହ୍ମଣ ମାଂସ ପାତ୍ର ଉପରୁ ଘୋଡ଼ା ହୋଇଥିବା ଚାଙ୍କୁଣୀ କାଢ଼ି ତହିଁରେ ଥିବା ମାଂସକୁ ଦେଖିଲେ ଓ କୁପିତ ହୋଇ କହିଲେ—"ମୁଁ ଅଜ୍ଞା ଦେଉଛି, ତୁ ନିଜେ ଏ ମାଂସକୁ ଖାଇଦେ ।"

ବ୍ରାହ୍ମଣଙ୍କ ମୁଖରୁ ଏ କଥା ଶୁଣି ରାଜା କୌଣସି ପ୍ରତିବାଦ ନ କରି ତାଙ୍କର ଆଜ୍ଞା ଅନୁସାରେ ପୁତ୍ରର ମାଂସକୁ ଖାଇବାପାଇଁ ଉଦ୍ୟତ ହେଲେ । ସେ ଯେତେବେଳେ ପୁତ୍ରର ଖପୁରିକୁ ଆଡ଼େଇ ମାଂସ ଖାଇବାକୁ ଯାଆନ୍ତି, ଠିକ୍ ସେହି ସମୟରେ ବ୍ରାହ୍ମଣ ହସି ହସି ତାଙ୍କ ହାତକୁ ଧରି ପକାଇ କହିଲେ—"ରାଜନ୍ ! ଯଥାର୍ଥରେ ଆପଣ କ୍ରୋଧଜୟୀ । ଆପଣଙ୍କର ନିଷ୍ଠା ବାସ୍ତବରେ ଦୃଢ଼ । ଆପଣ ଭଗବାନଙ୍କର ମାୟାକୁ ଅତିକ୍ରମ କରି ପାରିଛନ୍ତି । ମୁଁ ସ୍ୱୟଂ ଚତୁର୍ମୁଖ ବ୍ରହ୍ମା । ଆପଣଙ୍କ ଧୈର୍ଯ୍ୟର ପରୀକ୍ଷା ନେବାପାଇଁ ହିଁ ମୁଁ ଛଦ୍ମ ବେଶରେ ଆପଣଙ୍କ ନିକଟକୁ ଆସିଥିଲି । ଏବେ ମୁଁ ଜାଣିଲି, ଆପଣ ଅତିଥିମାନଙ୍କର ସେବା ପାଇଁ ସବୁକିଛି କରି ପାରନ୍ତି । ବ୍ରାହ୍ମଣଙ୍କ ପାଇଁ ସମ୍ଭବ ଅସମ୍ଭବ ସମସ୍ତ ପ୍ରକାରର ବସ୍ତୁ ଦେଇ ପାରନ୍ତି ।" ଏହା କହି ବ୍ରହ୍ମା ନିଜର ଯଥାର୍ଥ ରୂପରେ ଆବିର୍ଭୂତ ହୋଇ ସେଠାରୁ ଅନ୍ତର୍ହିତ ହୋଇଗଲେ । ରାଜା ଦେଖିଲେ, ତାଙ୍କର ପୁତ୍ର ବସ୍ତ୍ର ଆଭୂଷଣରେ ଅଲଙ୍କୃତ ହୋଇ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇଛି । ଯେଉଁ ପୁତ୍ରକୁ ସେ ମାରିଥିଲେ, ତାହାର ପୁନର୍ାଗମନ ଦେଖି ରାଜା ଏହାକୁ ଭଗବାନଙ୍କର କୃପା ବୋଲି ମନେକଲେ ।

ବ୍ରାହ୍ମଣ ଅନ୍ତର୍ହିତ ହୋଇଯିବା ପରେ ସଭାରେ ବିରାଜମାନ କରିଥିବା ରାଜାଙ୍କୁ ସଭାସଦ୍‌ମାନେ ପଚାରିଲେ—"ପ୍ରଭୋ ! ଆମ୍ଭେମାନେ ଆପଣଙ୍କଠାରୁ ଏହା ଜାଣିବାକୁ ଚାହୁଁ ଯେ, ଆପଣ ଏ ପ୍ରକାର କଠିନ କାର୍ଯ୍ୟ କେଉଁ କାମନା ନେଇ କଲେ ? ଆପଣ କ'ଣ ଯଶ ପ୍ରତିଷ୍ଠାର ଅଭିଳାଷ ରଖି ଏ ପ୍ରକାର ଦୁଃସାହସିକ କାର୍ଯ୍ୟ କଲେ ?"

ଏହା ଶ୍ରବଣ କରି ଶିବି ନମ୍ର ଓ ସରଳତାର ସହିତ କହିଲେ—"ବନ୍ଧୁଗଣ ! ମୁଁ ଯାହା କିଛି ଦାନ ଦେଉଛି, ଯେଉଁକିଛି ଶୁଭକାର୍ଯ୍ୟ କରୁଛି ତାହାସବୁ ଯଶ, କୀର୍ତ୍ତି, ଐଶ୍ୱର୍ଯ୍ୟ କିମ୍ବା ପ୍ରତିଷ୍ଠା ପାଇଁ ନୁହେଁ । ଏଥିପାଇଁ ମୋତେ କୌଣସି ଉତ୍ତମବସ୍ତୁ ପ୍ରାପ୍ତ ହେଉ, ଏପରି କାମନା ମଧ୍ୟ ମୁଁ କରୁନାହିଁ । ଦାନ ଦେବା ସନାତନ ଧର୍ମ ଅନ୍ତର୍ଗତ ।

ପୁଣ୍ୟାତ୍ମାମାନେ ଦାନ ଦେଇ ଆସିଛନ୍ତି, ଏହା ଜାଣି ନିଷ୍କାମ ଭାବରେ ମୁଁ ଏହି ଆଚରଣ କରୁଅଛୁ । ଚୋରର ଯେପରି ସ୍ୱଭାବତଃ ଚୋରି କରିବାର ପ୍ରବୃତ୍ତି, ମଦ୍ୟପ ଯେପରି ମଦ୍ୟପାନ ନ କରି ରହିପାରେ ନାହିଁ, ସେହିପରି ଦାନ ଦେବା ମୋର ସ୍ୱଭାବ ହୋଇ ଯାଇଛି । ଏଥିପାଇଁ ମୋତେ କୌଣସି ଚେଷ୍ଟା କରିବାକୁ ପଡ଼ୁନାହିଁ କିମ୍ବା ଏହା ବଦଳରେ କିଛି ପାଇବା ପାଇଁ ମୁଁ ଚାହୁଁ ନାହିଁ ।"

ସୂତ କହିଲେ—"ମୁନିଗଣ ! ରାଜାଙ୍କର ଏ ପ୍ରକାର ନିଷ୍କପଟ ସରଳ କଥା ଶୁଣି ସମସ୍ତ ସଭାସଦ୍ ପରମ ସନ୍ତୁଷ୍ଟ ହେଲେ । ମହାରାଜଙ୍କର ଏହି ନିଷ୍କାମ ବୃତ୍ତିକୁ ଦେଖି ସୁରପୁର ପୂଜିତ ଦେବର୍ଷି ନାରଦ ମଧ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି ଓ ସେ ରାଜା ଶିବିଙ୍କ ନିକଟରେ ନିଜକୁ ଅତି ତୁଚ୍ଛଜ୍ଞାନ ମନେ କରୁଛନ୍ତି ।"

ଏହାଶୁଣି ଶୌନକ ପଚାରିଲେ—ହେ ସୂତ ! ନାରଦ ତ ସ୍ୱୟଂ ଭଗବାନଙ୍କ ଅବତାର । ସେ ନିଜକୁ ମହାରାଜ ଶିବିଙ୍କଠାରୁ ଶ୍ରେଷ୍ଠ ବୋଲି କାହିଁକି ମନେ କରୁଛନ୍ତି ଓ ଏପରି କାହିଁକି କହୁଛନ୍ତି ? କୃପାକରି ଏହି କଥା ଆମ୍ଭମାନଙ୍କୁ କହନ୍ତୁ ।"

ଏ କଥାର ଉତ୍ତର ଦେବାକୁ ଯାଇ ସୂତ କହିଲେ—"ରାଜନ୍ ! ଥରେ ବିଶ୍ୱାମିତ୍ରଙ୍କ ପୁତ୍ର ଅଷ୍ଟକ ଯଜ୍ଞ କରିସାରି ବିମାନ ଆରୋହଣ କରି ସ୍ୱର୍ଗଯାତ୍ରା କରୁଥିଲେ । ତାଙ୍କ ସହିତ ତାଙ୍କ ଭାଇ ପ୍ରତର୍ଦ୍ଦନ, ବସୁମନା ଓ ଉଶୀନର ସୁତ ମହାରାଜ ଶିବି ମଧ୍ୟ ଥିଲେ । ପଥ ମଧ୍ୟରେ ନାରଦଙ୍କ ସହିତ ଏମାନଙ୍କର ସାକ୍ଷାତ ହେଲା । ସେମାନେ ନାରଦଙ୍କର ଆଦର ସତ୍କାର କରି ତାଙ୍କୁ କହିଲେ—"ଭଗବନ୍ ! ଆପଣ ମଧ୍ୟ ଆମ୍ଭମାନଙ୍କ ସହିତ ସ୍ୱର୍ଗ ଯାତ୍ରା କରନ୍ତୁ । କଥାବାର୍ତ୍ତା ହୋଇ ଆନନ୍ଦରେ ଆମେ ପଥ ଅତିକ୍ରମ କରିବା ।"

ନାରଦ ଏଥିରେ କୌଣସି ଆପତ୍ତି ନ କରି ସେମାନଙ୍କ ସଙ୍ଗରେ ସ୍ୱର୍ଗଯାତ୍ରା କଲେ । ପଥ ମଧ୍ୟରେ କଥା ପ୍ରସଙ୍ଗରେ ଜଣେ ପଚାରିଲେ—"ମହାରାଜ ! ଆମ ଚାରି ଜଣଙ୍କ ମଧ୍ୟରୁ କିଏ ସର୍ବ ପ୍ରଥମେ ସ୍ୱର୍ଗଚ୍ୟୁତ ହେବ ?"

ନାରଦ କହିଲେ—"ଭାଇ ଅଷ୍ଟକ ହିଁ ସର୍ବପ୍ରଥମେ ସ୍ୱର୍ଗଚ୍ୟୁତ ହୋଇ ମର୍ତ୍ତ୍ୟପୁରକୁ ଆସିବେ ।"

ସେ ପଚାରିଲେ—"କାହିଁକି ଏପରି ହେବ ? ମହାରାଜ !"

ନାରଦ କହିଲେ—"ଥରେ ମୁଁ ଅଷ୍ଟକଙ୍କର ରାଜଧାନୀକୁ ଯାଇଥିଲି । ଯିବା ପରଦିନ ସେ ମୋତେ ସୁନ୍ଦର ସୁବର୍ଣ୍ଣମଣ୍ଡିତ ରଥରେ ବସାଇ ମୁକ୍ତ ପ୍ରାନ୍ତରରେ

ବୁଲିବା ପାଇଁ ସଙ୍ଗରେ ନେଇ ଯାଇଥିଲେ । ସେଠାରେ ମୁଁ ଲକ୍ଷାଧିକ ସଂଖ୍ୟାରେ ବଡ଼ ବଡ଼ ଗାଈ ଚରୁଥିବାର ଦେଖି ତାଙ୍କୁ ପଚାରିଲି—ଏ ଗାଈ ସବୁ କାହାର ?"

ଅଷ୍ଟକ ମୋତେ ଦମ୍ଭ ଓ ଅଭିମାନରେ କହିଲେ—"ବ୍ରହ୍ମନ୍ ! ଏ ଗାଈ-ମାନଙ୍କୁ ମୁଁ ନିଜେ ବ୍ରାହ୍ମଣମାନଙ୍କୁ ଦାନ କରିଅଛି । ଏହା ଦାନ ଦ୍ୱାରା ମୁଁ ପୁଣ୍ୟଲୋକକୁ ଯିବି ।" ରାଜା ନିଜ ମୁଖରେ ନିଜ ଦାନର ପ୍ରଶଂସା କରିଥିବାରୁ ତାଙ୍କୁ ସର୍ବପ୍ରଥମେ ସ୍ୱର୍ଗଚ୍ୟୁତ ହୋଇ ମର୍ତ୍ତ୍ୟଲୋକକୁ ଆସିବାକୁ ପଡ଼ିବ ।"

ଏ କଥା ଶୁଣି ଅନ୍ୟ ତିନିଜଣଙ୍କ ମଧ୍ୟରୁ ଜଣେ ପଚାରିଲେ—"ଆଚ୍ଛା, ଆମ ତିନି ଜଣଙ୍କ ମଧ୍ୟରୁ କିଏ ପ୍ରଥମେ ମର୍ତ୍ତ୍ୟ ଲୋକକୁ ଫେରିବ ?"

ନାରଦ କହିଲେ—"ଆପଣ ତିନିଜଣଙ୍କ ମଧ୍ୟରୁ ପ୍ରତର୍ଦ୍ଦନ ପ୍ରଥମେ ସ୍ୱର୍ଗଚ୍ୟୁତ ହେବେ । ତାଙ୍କ ବିଷୟରେ ମୁଁ ଯାହା କହୁଛି ଶୁଣ । ମୋର ତ କାର୍ଯ୍ୟ ହେଲା ସର୍ବତ୍ର ଘୂରି ବୁଲିବା । ଏପରି କୌଣସି ରାଜା ନାହାନ୍ତି, ଯାହାଙ୍କ ପାଖକୁ କି ମୁଁ ନ ଯାଇଛି । ଥରେ ମୁଁ ପ୍ରତର୍ଦ୍ଦନଙ୍କ ନିକଟକୁ ଯାଇଥିଲି । ମୁଁ ତ କୌଣସି ଏକ ସ୍ଥାନରେ ସ୍ଥିର ହୋଇ ରହିପାରେ ନାହିଁ । ସେ ମଧ୍ୟ ମୋତେ ରଥରେ ବସାଇ ବୁଲାଇବାକୁ ନେଇଥିଲେ । ରଥରେ ଚାରିଟି ଅଶ୍ୱ ଯୋଚା ହୋଇଥିଲେ । ଚାରିଜଣ ବ୍ରାହ୍ମଣ ଜଣ ଜଣ ହୋଇ ଆସି ରାଜାଙ୍କୁ ଗୋଟିଏ ଗୋଟିଏ ଘୋଡ଼ା ମାଗିଲେ । ରାଜା ସମସ୍ତଙ୍କୁ କହିଥିଲେ—"ଉଆସକୁ ଫେରିଲେ ମୁଁ ସେଠାରେ ଘୋଡ଼ା ଦେବି । କିନ୍ତୁ ବ୍ରାହ୍ମଣମାନେ ସେହିଠାରେ ହିଁ ଘୋଡ଼ା ନେବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ତେଣୁ ରାଜା ଗୋଟିକ ପରେ ଗୋଟିଏ ଘୋଡ଼ା ଜଣ ଜଣଙ୍କୁ ଦାନ କରିଥିଲେ । ସେ ଦାନ ଦେଇଥିଲେ ସତ; କିନ୍ତୁ ବ୍ରାହ୍ମଣମାନେ ବହୁତ ଆଗ୍ରହ ପ୍ରକାଶ କରିବାରୁ କୁଣ୍ଠିତ ମନରେ ସେଠାରେ ତାଙ୍କୁ ଦାନ କରିଥିଲେ । ତେଣୁ ଆପଣ ତିନି ଜଣଙ୍କ ମଧ୍ୟରୁ ପ୍ରତର୍ଦ୍ଦନ ପ୍ରଥମେ ମର୍ତ୍ତ୍ୟଲୋକକୁ ଫେରିବେ ।"

ଏହା ପରେ ଅନ୍ୟ ଦୁଇଜଣ ପଚାରିଲେ—"ଆମ ଦୁଇଜଣଙ୍କ ମଧ୍ୟରୁ ପ୍ରଥମେ କିଏ ସ୍ୱର୍ଗଚ୍ୟୁତ ହେବ ?"

ନାରଦ କହିଲେ—"ବସୁମନା ହିଁ ପ୍ରଥମେ ମର୍ତ୍ତ୍ୟଲୋକକୁ ଫେରିବେ । କାରଣ ତାଙ୍କ ନିକଟରେ ପୁଷ୍ପରଥ ନାମକ ଏପରି ଏକ ରଥ ଥିଲା, ଯେଉଁଥିରେ କି ସେ ଯେତେବେଳେ ଯେଉଁଠାକୁ ଯିବାକୁ ଇଚ୍ଛା କରୁଥିଲେ ସେଠାକୁ ଯାଇ ପାରୁଥିଲେ । ମୋର ଇଚ୍ଛା ହେଲା ଯେ, ମୁଁ ସେହି ରଥଟିକୁ ରାଜାଙ୍କଠାରୁ ନେବି ଓ ସେଥିରେ ବସି ଚାରିଆଡ଼େ ଭ୍ରମଣ କରିବି । ମୁଁ ରାଜାଙ୍କୁ ରଥଟିକୁ ମାଗିବାରୁ ସେ ମୋତେ କହିଲେ— "ମହାରାଜ ! ଆପଣଙ୍କର ତ ରଥ ଅଛି, ଯେତେବେଳେ ଚାହିଁବେ ଏ ରଥକୁ ଆପଣ

ନେଇ ପାରବେ !" ମୁଁ ସେଥର ରଥଟି ନ ନେଇ ଫେର ଆସିଲି ଓ ପୁନଶ୍ଚ ଅଭୟରେ ତାଙ୍କ ନିକଟକୁ ରଥ ଆଣିବାକୁ ଗଲି । ଏଥର ତାଙ୍କୁ ରଥ ମାଗିବାରୁ ସେ ମୋତେ ସେହିପରି ମନରେ କପଟ ରଖି ଗୋଲମାଳିଆ କରି କହିଲେ—

"ହାଥ ପାଁବ କୋ ବଗୃନା
ମୁଁ ଖା କୋ ଝରକାନା'
କୋଠୀ କୁଠିଲି ସେ ହାଥ ନ ଲଗାନା
ସବ୍ ତୁହ୍ମାରି ଯୋ ମାଲ ଖଜାନା ।"

ସେ ମୋତେ ମନା ତ କରି ପାରଲେ ନାହିଁ; କିନ୍ତୁ ଉପରୋକ୍ତ ପ୍ରକାର କହି ରଥ ବି ଦେଲେ ନାହିଁ । ଏଣୁ ଆପଣ ଉଭୟଙ୍କ ମଧ୍ୟରୁ ବସୁମନା ହିଁ ପ୍ରଥମେ ମର୍ତ୍ତ୍ୟ ଲୋକକୁ ଫେରିବେ ।"

ଏହା ଶୁଣି ଅନ୍ୟ ଜଣକ କହିଲେ—"ଆଚ୍ଛା ମନେ କରନ୍ତୁ ଶିବ ଓ ଆପଣ ଏହି ଦୁଇଜଣ ସ୍ୱର୍ଗ ଯାତ୍ରା କରୁଛନ୍ତି, ତେବେ ଦୁହିଁଙ୍କ ମଧ୍ୟରୁ କାହାର ସର୍ବପ୍ରଥମେ ସ୍ୱର୍ଗରୁ ପତନ ଘଟିବ ?"

ନାରଦ କହିଲେ—"ଭାଇ ! ଶିବଙ୍କ ପୂର୍ବରୁ ମୋର ହିଁ ପତନ ଘଟିବ । କାରଣ ଶିବଙ୍କ ଭଳି ଧୈର୍ଯ୍ୟ, ସାହସ ଓ ସତ୍ୟବଳ ମୋଠାରେ ନାହିଁ । ଶିବଙ୍କ ଭଳି ନିଷ୍ଠା ମୋର କିପରି ଅବା ହୋଇ ପାରିବ ? ସେ ଯେଉଁ କର୍ମ କରନ୍ତି, ନିଷ୍କାମ ଭାବରେ କର୍ତ୍ତବ୍ୟ ମନେ କରି କରିଥାନ୍ତି । ସେ ଫଳ ଆଶା ରଖି କର୍ମ କରନ୍ତି ନାହିଁ । ଉଦାରତା, ସଦ୍‌ଗୁଣ, ତ୍ୟାଗ ଓ ତିତିକ୍ଷା ଗୁଣରେ ସେ ସମସ୍ତ ନରପତିଙ୍କଠାରୁ ଶ୍ରେଷ୍ଠ ଅଟନ୍ତି । ଏହି କଥା ମୁଁ ବାରମ୍ବାର କହି ଆସିଛି । ଥରେ ମୁଁ ଦେଖିଲି, କୁରୁବଂଶୀ ମହାରାଜ ସୁହୋତ୍ର ଓ ଶିବ ଦୁହେଁ ଏକ ରାସ୍ତାରେ ଜଣେ ଅନ୍ୟ ଜଣକୁ ଅଟକାଇ ଠିଆ ହୋଇଛନ୍ତି । ଦୈବଯୋଗକୁ ମୁଁ ଭ୍ରମଣ କରୁ କରୁ ସେଠାରେ ଯାଇ ସେତିକି ବେଳେ ପହଞ୍ଚିଗଲି । ମୁଁ ପଚାରିଲି--"ତୁମେ ଦୁହେଁ ଜଣେ ଜଣକୁ ଅଟକାଇ କାହିଁକି ପଥରୋଧ କରୁଛ ?"

ସୁହୋତ୍ର ମୋତେ କହିଲେ—"ଆମେ ଦୁହେଁ ସମାନ ନରପତି । ଯେ ଛୋଟ ନରପତି ହୋଇଥାନ୍ତି ସେ ବଡ଼ ନରପତିଙ୍କୁ ଆଗ ବାଟ ଛାଡ଼ି ଦିଅନ୍ତି । ତେଣୁ ସେ ମୋତେ ଦେଖି ବାଟ ଛାଡ଼ୁ ନାହାନ୍ତି, କିମ୍ବା ମୁଁ ମଧ୍ୟ ତାଙ୍କୁ ବାଟ ଛାଡ଼ୁ ନାହିଁ ।"

ଏହାଶୁଣି ମୁଁ ସୁହୋତ୍ରଙ୍କୁ କହିଲି—"ରାଜନ୍ ମହାରାଜ ଶିବଙ୍କ ଚରିତ୍ର ଆପଣଙ୍କ ଚରିତ୍ରଠାରୁ ଉଜ୍ଜ୍ୱଳ ।" ଏ କଥା ଶୁଣି ମହାରାଜ ସୁହୋତ୍ର ତାଙ୍କୁ ପରିକ୍ରମା

କଲେ ଓ ଅତ୍ୟନ୍ତ ଆଦର ସତ୍କାର କରି ପଥ ଛାଡ଼ିଦେଲେ । ଏଥିପାଇଁ ମୁଁ ତାଙ୍କ ସହିତ ସମାନ ହୋଇ ନ ପାରେ । ପୁତ୍ରକୁ ମାରି ନିଜେ ପାକ କରିବା, ଅତିଥି ସତ୍କାର କରିବା ଓ ରାଜଭଣ୍ଡାରରେ ଅଗ୍ନି ଲାଗିଯାଇଥିଲେ ମଧ୍ୟ ସେଥିରେ ଟିକିଏ ହେଲେ ବିଚଳିତ ନ ହେବା, ଏ ପ୍ରକାର ଧୈର୍ଯ୍ୟ ଧାରଣ କରିବା ଅତି କଷ୍ଟକର କଥା ।”

ସୂତ କହିଲେ—“ମୁନିଗଣ ! ଦେବର୍ଷି ନାରଦ ଏହିପରି ଭାବରେ ଶିବଙ୍କର ଚରିତ୍ର ଓ ଧୈର୍ଯ୍ୟର ପ୍ରଶଂସା କରି ଅଛନ୍ତି । ଏବେ ଆପଣମାନେ ମହାରାଜ ଶିବଙ୍କର ବଂଶାନୁଚରିତ ଶ୍ରବଣ କରନ୍ତୁ ।”

### ଛପ୍‌ପୟ

ଭଏଁ ଚାରି ଶିବି ତନୟ ପିତା କେ ସମ ତେଜସ୍ୱୀ ।
ବୃଷାଦର୍ଭ କୈକେୟ ସୁବୀରହୁ ଭଦ୍ର ଯଶସ୍ୱୀ ।
ନୃପତି ତିତକ୍ଷ ସୁଶୀଲ ଉଶୀନର ନୃପ ଲଘୁ ଭ୍ରାତା ।
ପୁତ୍ର ଉଶଦ୍‌ରଥ ଭଏଁ ହେମ ସୁତ ଜନ ସୁଖ-ଦାତା ॥
ହେମ ପୁତ୍ର ସୁତପା ଭଏଁ, ସୁତପା ସୁତ ବଲି ଜଗବନ୍ଦିତ ।
ରାଜ, ପାଟ, ଧନ, ଧାନ୍ୟ, ପଶୁ, ସୁଖ ସବ, କିନ୍ତୁ ନ ଏକ ସୁତ ॥



## ଅନୁବଂଶୀୟ ବଳିଙ୍କ ସନ୍ତତି

ଶିବେଶ୍ଚତ୍ୱାର ଏବାସଂସ୍ତିତକ୍ଷୋଶ୍ଚ ରୁଶଦ୍ରଥଃ ।
ତତୋ ହେମୋଽଥ ସୁତପା ବଳିଃ ସୁତପସୋଽଭବତ୍ ।
ଅଙ୍ଗବଙ୍ଗ କଳିଙ୍ଗାଦ୍ୟାଃ ସୁହ୍ମପୁଣ୍ଡ୍ରାନ୍ଧ୍ରସଂଜ୍ଞିତାଃ ।
ଜଜ୍ଞିରେ ଦୀର୍ଘତମସୋ ବଳେଃ କ୍ଷେତ୍ରେ ମହୀକ୍ଷିତଃ ॥ *

(ଶ୍ରୀ ଭା ୯ ସ୍କ ୨୩ ଅ ୪-୫ ଶ୍ଳୋ)

### ଛପ୍‌ପୟ

ଭୂପତି ବଳି ସୁତ ବିନା ରହେ ମନମହିଁ ଅତି ଚିନ୍ତିତ ।
ସୁତେ ନହିଁ ଉପାୟ ନୃପତି କହୁଁ ସୁତହିତ ସମୁଚିତ ॥
ଗଙ୍ଗା ତଟ ପେ ବୈଠି ବାତ ନୃପ ମନମହିଁ ଆଇ ।
ଦ୍ୱିଜ ତେଂ ସୁତ କରବାହୁଁ, ନାବ ଇକ ଦଇ ଦିଖାଇ ।
ଦୀର୍ଘତମା ତାମେ ବଂଧେ, ବଡ଼େ ତପସ୍ୱୀ ଅନ୍ଧ ମୁନି ।
ନାବ ପଙ୍କର ତଟ ପେ ଲଗୀ, ଉଦ୍ୟେ ମୁଦିତ ମୁନି ନାମ ସୁନି ।

ଯଦି ବଂଶ ଉଚ୍ଛେଦ ହୁଏ, ତେବେ କାମଭାବରୁ ରହିତ ହୋଇ ଧର୍ମପୂର୍ବକ ଦ୍ୱିଜଦ୍ୱାରା ବଂଶ ପରଂପରାକୁ ବଜାୟ ରଖିବାର ପ୍ରାଚୀନ ପ୍ରଥା ଥିଲା । ଦୋଷ ଭାବ ଯୋଗୁଁ ହୁଏ । ଯେ କୌଣସି କାର୍ଯ୍ୟ ଶୁଦ୍ଧ ଭାବନା ନେଇ କରାଗଲେ ତାହା ବାହାରକୁ ଅନୁଚିତ କାର୍ଯ୍ୟ ଭଳି ଦେଖାଯାଏ; କିନ୍ତୁ ତାହା ବାସ୍ତବରେ ଉଚିତ କାର୍ଯ୍ୟ । ଯଦି ଅଶୁଦ୍ଧ ମନୋଭାବ ନେଇ କୌଣସି କାର୍ଯ୍ୟ କରାଯାଏ, ତେବେ ଉଚିତ୍ ତା ଉତ୍ତମ କାର୍ଯ୍ୟ ମଧ୍ୟ ହେୟ ହୋଇଥାଏ । ତପ ହେଉଛି ଶ୍ରେଷ୍ଠ କାର୍ଯ୍ୟ । କିନ୍ତୁ ଦାମ୍ଭିକତା ସହକାରେ, ଦ୍ୱେଷରେ ଓ ପ୍ରାଣୀମାନଙ୍କୁ କଷ୍ଟ ଦେଇ ଯଦି ତା କରାଯାଏ, ତେବେ ତାହା ଉତ୍ତମ କାର୍ଯ୍ୟ ହୋଇଥିଲେ ମଧ୍ୟ ଅଧମ । ବଳପୂର୍ବକ ଅନ୍ୟର ଧନ

ଅପହରଣ କରିବା ନିନ୍ଦନୀୟ କାର୍ଯ୍ୟ । କିନ୍ତୁ ଦିଗ୍‌ବିଜୟରେ ଯଜ୍ଞପାଇଁ ଅନ୍ୟ ରାଜାଙ୍କ ଉପରେ ଆକ୍ରମଣ କରି ତାଙ୍କ ଧନକୁ ବଳପୂର୍ବକ ଛଡ଼ାଇ ନେବାକୁ ନିନ୍ଦନୀୟ କାର୍ଯ୍ୟ ବୋଲି କୁହାଯାଏ ନାହିଁ । ଏଣୁ ସୁଖ-ଦୁଃଖରେ ଭାବ ହିଁ ପ୍ରଧାନ କାରଣ ।

ସୂତ କହିଲେ—"ମୁନିଗଣ ! ମୁଁ ଉଶୀନର ସୁତ ମହାରାଜ ଶିବିଙ୍କ ଚରିତ ଆପଣମାନଙ୍କ ଆଗରେ କହିଲି । ମୁଁ ପୂର୍ବରୁ କହିଛି ଯେ ମହାରାଜ ଉଶୀନରଙ୍କର ଗୋଟିଏ ସାନଭାଇ ଥିଲା, ତାଙ୍କର ନାମ ଥିଲା ତିତକ୍ଷୁ । ଏବେ ତାଙ୍କର ବଂଶାନୁଚରିତ ବର୍ଣ୍ଣନା କରୁଛି, ତାହା ଶୁଣନ୍ତୁ । ମହାରାଜ ତିତକ୍ଷୁଙ୍କର ରୁଶଦ୍‌ରଥ ନାମକ ପୁତ୍ରଟିଏ ହୋଇଥିଲା । ରୁଶଦ୍‌ରଥଙ୍କର ପୁତ୍ରର ନାମ ଥିଲା ହେମ ଓ ହେମଙ୍କର ପୁତ୍ରର ନାମ ଥିଲା ସୁତପା । ଏହି ସୁତପାଙ୍କଠାରୁ ସମସ୍ତ ଧର୍ମଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହାରାଜ ବଳି ଜନ୍ମଲାଭ କରିଥିଲେ । ତାଙ୍କର ପତ୍ନୀଙ୍କ ନାମ ଥିଲା ସୁଦେଷ୍ଣା । ସୁଦେଷ୍ଣା ଥିଲେ ପରମ ରୂପବତୀ, ସୁକୁମାରୀ, ପତିପରାୟଣା, ସତୀ ଓ ସାଧ୍ୱୀ । ତାଙ୍କ ପ୍ରତି ରାଜାଙ୍କର ଅତ୍ୟନ୍ତ ଅନୁରାଗ ଥିଲା । ଯଦିଓ ମହାରାଜଙ୍କର କୌଣସି ସନ୍ତାନ ନ ଥିଲେ; ତଥାପି ସେ ଆଉ ବିବାହ କରି ନ ଥିଲେ । ଯେତେବେଳେ ମହାରାଜଙ୍କର ସନ୍ତାନ କାମନା ହେଲା, ସେତେବେଳେ ସେ ମହାମୁନି ଦୀର୍ଘତମାଙ୍କ ଦ୍ୱାରା ନିଜ କ୍ଷେତ୍ରରେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର, ସୁହ୍ମ ଓ ଆନ୍ଧ୍ର ଏହି ଛଅ ପୁତ୍ରଙ୍କୁ ଉତ୍ପନ୍ନ କରାଇଥିଲେ । ତାଙ୍କ କ୍ଷେତ୍ରରେ ଆହୁରି ଅନେକ ପୁତ୍ର ହୋଇଥିଲେ, ଯେଉଁମାନେ କି ବ୍ରାହ୍ମଣ ହୋଇଥିଲେ ।"

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଏହି ମହାମୁନି ଦୀର୍ଘତମା କିଏ ? ମହାରାଜ ବଳିଙ୍କ ସହିତ ତାଙ୍କର କେଉଁଠାରେ ସାକ୍ଷାତ ହୋଇଥିଲା ? ସେ କିପରି ବଳିଙ୍କ କ୍ଷେତ୍ରରେ କ୍ଷତ୍ରିୟ ଓ ବ୍ରାହ୍ମଣ ଉତ୍ପନ୍ନ କଲେ ? କୃପାକରି ତାହା ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ମହାରାଜ ! ଏପ୍ରକାର ପ୍ରଶ୍ନ ଆପଣ ମୋତେ ନ ପଚାରିଲେ ଭଲ ହୁଅନ୍ତା । ଏହି ଋଷି ସିଦ୍ଧ ସାଧକ ଥିଲେ । ଯେତେବେଳେ ତାଙ୍କର ଯାହା ମନ ହେଉଥିଲା ତାହା ହିଁ ସେ କରୁଥିଲେ । ସେ ଯାହା କହୁଥିଲେ ତାହା ଧର୍ମ ହୋଇ ଯାଉଥିଲା । ମହାରାଜ ! ସେ ନିଜର ତପ ପ୍ରଭାବରେ ସବୁକିଛି କରି ପାରୁଥିଲେ । ତପସ୍ୟାର ଖୁବ୍ ସାମର୍ଥ୍ୟ । ଏହା ମୁଁ ପ୍ରଥମରୁ ଦୁଷ୍ମନ୍ତ ସୁତ ଭରତଙ୍କ ପ୍ରସଙ୍ଗରେ କହିଅଛି । ଭଗବାନ୍ ଅଙ୍ଗିରାଙ୍କର ଉତଥ୍ୟ, ବୃହସ୍ପତି ଓ ସମ୍ବର୍ତ୍ତକ ଏହି ତିନି ପୁତ୍ର ଥିଲେ । ମହର୍ଷି ଉତଥ୍ୟଙ୍କର ପତ୍ନୀଙ୍କ ନାମ ଥିଲା ମମତା ଓ ବୃହସ୍ପତିଙ୍କର ପତ୍ନୀଙ୍କ ନାମ ଥିଲା ତାରା । ସମ୍ବର୍ତ୍ତକ ତ ବୃହସ୍ପତିଙ୍କ ଯୋଗୁଁ ଘର ଛାଡ଼ି ଅବଧୂତ ହୋଇ ଯାଇଥିଲେ । ଏହି ସମ୍ବର୍ତ୍ତକ ମହାରାଜ ମରୁତ୍ତଙ୍କର ଯଜ୍ଞ କରାଇଥିଲେ । ହିଁ, ତେବେ

ମହାତ୍ମା ଦୀର୍ଘତମା ଥିଲେ ଉତଥ୍ୟ ଋଷିଙ୍କର ପୁତ୍ର । ବୃହସ୍ପତିଙ୍କ ଶାପରୁ ସେ ମାତୃଗର୍ଭରୁ ଅନ୍ଧ ହୋଇ ଜନ୍ମଗ୍ରହଣ କରିଥିଲେ । ଜନ୍ମ ହେବା ସଙ୍ଗେ ସଙ୍ଗେ ସେ ସ୍ୱାଭାବିକଭାବେ ବେଦ ବେଦାଙ୍ଗ ସବୁ କିଛି ପଢ଼ିଗଲେ । ଯେତେବେଳେ ତାଙ୍କର ବିବାହ ବୟସ ହେଲା, ସେତେବେଳେ ଉତଥ୍ୟ ମୁନିଙ୍କୁ ତାଙ୍କ ବିବାହ ସମ୍ବନ୍ଧରେ ଚିନ୍ତା କରିବାକୁ ପଡ଼ିଲା । କିନ୍ତୁ ଜନ୍ମାନ୍ଧ ଯୁବକକୁ କିଏ ଅବା ନିଜ କନ୍ୟା ଦାନ କରିବ ? ଏହା ଥିଲା ଏକ କଠିନ ସମସ୍ୟା । ସେହି ସମୟରେ ଜଣେ ବ୍ରାହ୍ମଣଙ୍କର ପ୍ରଦ୍ୱେଷୀ ନାମିକା ଏକ ଯୁବତୀ କନ୍ୟା ଥିଲା । ସେ ଅତ୍ୟନ୍ତ ରୂପବତୀ ଥିଲା; କିନ୍ତୁ ଅତ୍ୟନ୍ତ ଚଡ଼ଚଡ଼ା ସ୍ୱଭାବର ଥିଲା । କୌଣସି ବ୍ରାହ୍ମଣ କୁମାର ତା ସ୍ୱଭାବ ଜାଣି ତାକୁ ବିବାହ କରିବାକୁ ଇଚ୍ଛା କରୁ ନ ଥିଲେ । ସେ ଦୀର୍ଘତମାଙ୍କୁ ନିଜର ପତିରୂପେ ବରଣ କରିବାକୁ ଇଚ୍ଛା କରିଥିଲେ । ସେ ତ ବିଦ୍ୱାନ୍, ଯଦି କୌଣସି ନେତ୍ରଥିବା ବ୍ୟକ୍ତି ସେ ହୋଇ ଥାଆନ୍ତେ, ତେବେ କଥା କଥାକେ ଦୋଷତ୍ରୁଟି ବାହାର କରନ୍ତେ । ଅନ୍ଧକୁ ଯେଉଁଠାରେ ବସାଅ, ସେ ସେଠାରେ ବସିବ । ଯେଉଁଠାରେ ଶୁଆଇବ ସେଠାରେ ସେ ଶୋଇବ । ଏହି କଥା ଚିନ୍ତାକରି ପ୍ରଦ୍ୱେଷୀ ଦୀର୍ଘତମାଙ୍କୁ ନିଜର ପତିରୂପେ ବରଣ କଲେ ।

ଦୀର୍ଘତମା ଅନ୍ଧ ହୋଇଥିଲେ ମଧ୍ୟ ଅତ୍ୟନ୍ତ ରତିପ୍ରିୟ ଥିଲେ । ସୁରଭିଙ୍କର ପୁତ୍ର ବୃଷଭଙ୍କଠାରୁ ସେ ଗୋ-ଧର୍ମ ମଧ୍ୟ ଶିକ୍ଷା କରି ନେଇଥିଲେ । ନେତ୍ର ଦ୍ୱାରା ହିଁ ଶୀଳ ସଙ୍କୋଚ ଜାତ ହୋଇଥାଏ । ଯାହାର ନେତ୍ର ନାହିଁ ସେ ଶୀଳ ସଙ୍କୋଚ କରେ ନାହିଁ । ତେଣୁ ସେ ଆଶ୍ରମରେ ସମସ୍ତଙ୍କ ଆଗରେ ଗୋ-ଧର୍ମ ଆଚରଣ କରିବାକୁ ଲାଗିଲେ । ଆଶ୍ରମର ଆଖପାଖରେ ରହିଥିବା ମୁନିଗଣ କହିଲେ, ଏ ଦୀର୍ଘତମା ଲୋକ ମର୍ଯ୍ୟାଦା ରକ୍ଷା କରୁ ନାହାନ୍ତି । ତେଣୁ ତାଙ୍କୁ ସମାଜରୁ ବହିଷ୍କାର କରିଦେବା ଉଚିତ ।" ଏହା ଭାବି ମୁନିଗଣ ତାଙ୍କୁ ତଡ଼ିଦେଲେ ।

ତାଙ୍କ ପତ୍ନୀ ଅତ୍ୟନ୍ତ କର୍କଶ ସ୍ୱଭାବବିଶିଷ୍ଟା ଥିଲେ । ଯେ ପର୍ଯ୍ୟନ୍ତ ତାଙ୍କର ପୁତ୍ର ହୋଇ ନଥିଲା ସେ ପର୍ଯ୍ୟନ୍ତ ସେ ତାଙ୍କ ସହିତ ରହିଥିଲେ, ପରେ କହିଲେ— "ଦେଖ ପ୍ରଜ୍ଞାଚକ୍ଷୁ ମହାରାଜ ! ମୋର ଏହି ଦୁଇଟି କଥା ଆଗ ଶୁଣ, ଏହା ମୋର ତୁମକୁ ଶେଷ କଥା ଯେ, ମୁଁ ଆଉ ତୁମ ପାଖରେ ଚଳି ପାରିବି ନାହିଁ ।"

ଦୀର୍ଘତମା ମୁନି ପଚାରିଲେ—"କାହିଁକି ଚଳି ପାରିବ ନାହିଁ ? ମୋର କ'ଣ ଦୋଷତ୍ରୁଟି ରହିଲା ?"

ପ୍ରଦ୍ୱେଷୀ ଗର୍ଜିକରି କହିଲେ—"ତୁମର ସମସ୍ତ ଦୋଷ, ସବୁ ପ୍ରକାର ତ୍ରୁଟି ତୁମଠାରେ ପରିପୂର୍ଣ୍ଣ । ପୁରୁଷଙ୍କୁ ସ୍ତ୍ରୀଙ୍କର ଭର୍ତ୍ତା ବୋଲି କୁହାଯାଏ, କାରଣ ସେ ସ୍ତ୍ରୀର

ତଥା ତାଙ୍କ ଔରସ ଜାତ ପିଲାମାନଙ୍କର ଭରଣ ପୋଷଣକାରୀ । ମୋର ଭରଣ ପୋଷଣ କରିବା ତୁମର କର୍ତ୍ତବ୍ୟ; କିନ୍ତୁ ତାହା ପରିବର୍ତ୍ତେ ମୋତେ ହିଁ ତୁମର ଓ ତୁମର ଏତେଗୁଡ଼ିଏ ପିଲାଙ୍କର ଭରଣପୋଷଣ କରିବାକୁ ପଡ଼ୁଛି । ପୁରୁଷ ପ୍ରତିପାଳନ କରନ୍ତି ବୋଲି ତାଙ୍କୁ ପତି କୁହାଯାଏ । ତୁମେ ମୋତେ ପାଳନ କରୁନାହିଁ କିମ୍ବା ମୋର ଭରଣପୋଷଣ କରୁନାହିଁ । ତେଣୁ ତୁମର ଯେଉଁଠାକୁ ଇଚ୍ଛା ସେଠାକୁ ଚାଲିଯାଅ । ମୋର ଯେଉଁଆଡ଼େ ଇଚ୍ଛା ମୁଁ ସେଠାକୁ ଚାଲିଯିବି ।"

ଦୀର୍ଘତମା କହିଲେ—"ଆଜି ତୁମେ ଗୋଟିଏ କାମ କର, ମୋତେ ନେଇ କୌଣସି ଧନୀ କ୍ଷତ୍ରିୟଙ୍କ ନିକଟକୁ ଚାଲ । ତାଙ୍କଠାରୁ ମୁଁ ବହୁତ ଧନ ଆଣି ତୁମକୁ ଦେବି ।"

ବ୍ୟଙ୍ଗ ସ୍ୱରରେ ତାଚ୍ଛଲ୍ୟ କରି ହାତ ହଲାଇ, ଅଣ୍ଟାର ପଣତକାନି ଭିଡ଼ି ପ୍ରଦ୍ୱେଷୀ କହିଲେ—"ମୋର ଧନଫନ ଦରକାର ନାହିଁ, ନର୍ତ୍ତକୀଙ୍କ ବେଢ଼ିଣୀ ଭଳି ମୁଁ ତୁମର ବାଡ଼ି ଧରି ଧରି କୌଣସି ରାଜାଙ୍କ ସଭାକୁ ଭିକ ମାଗିବାକୁ ଯିବାର ଚାହେଁ ନାହିଁ । ତୁମ ସହିତ ମୋର ଆଉ ପଡ଼ିବ ନାହିଁ । ତୁମେ ଯେଉଁଆଡ଼େ ଯିବାକୁ ଚାହୁଁଛ ସେଆଡ଼େ ଚାଲିଯାଅ, ମୋର ଯେଉଁଠାକୁ ଇଚ୍ଛା ମୁଁ ସେଠାକୁ ଚାଲିଯିବି ।"

ଦୀର୍ଘତମା ତ ସାମାନ୍ୟ ଲୋକ ନୁହନ୍ତି, ସେ ଥିଲେ ଜଣେ ତପସ୍ୱୀ ମୁନି । ତାଙ୍କର ମଧ୍ୟ ଏ କଥା ଶୁଣି କ୍ରୋଧ ଜାତ ହେଲା । ସେ କହିଲେ—"ତୁମେ ମୋତେ ଛାଡ଼ି କପରି ଯାଇ ପାରିବ ?"

ପ୍ରଦ୍ୱେଷୀ କହିଲେ—"କାହିଁକି, ତୁମେ କ'ଣ ମୋତେ କିଣି ଆଣିଛ କି ? ମୋର ଯେଉଁଆଡ଼େ ଇଚ୍ଛା ମୁଁ ସେଆଡ଼େ ଯିବି ।"

ଦୀର୍ଘତମା ମୁନି କହିଲେ—"ନିଜର ରୂପ ପାଇଁ ତୁମର ବଡ଼ ଅଭିମାନ । ତୁମେ ଚିନ୍ତା କରୁଛ, ଯେ ଅନ୍ୟ କାହା ସହିତ ରହିଯିବି । ଦେଖ, ମୁଁ ଆଜିଠାରୁ ଏହି ପ୍ରକାର କଠୋର ନିୟମ ପ୍ରଣୟନ କରୁଅଛି ଯେ ଦ୍ୱିଜପତ୍ନୀଗଣ କୌଣସି ପରିସ୍ଥିତିରେ ଅନ୍ୟପତି ବରଣ କରିପାରିବେ ନାହିଁ । ସେମାନଙ୍କ ପତି ଜୀବିତ ଥାଆନ୍ତୁ ବା ମୃତ୍ୟୁ ବରଣ କରି ଥାଆନ୍ତୁ, ତାଙ୍କର ପତ୍ନୀ ରୂପେ ହିଁ ସେମାନଙ୍କୁ ରହିବାକୁ ପଡ଼ିବ । ଯେଉଁମାନେ ଏହା ପାଳନ ନ କରି ଅନ୍ୟଥା ଆଚରଣ କରିବେ, ସଂସାରରେ ସେମାନେ ନିନ୍ଦିତା ହେବେ ।"

ପ୍ରଦ୍ୱେଷୀଙ୍କର କ୍ରୋଧ ଏଥିରେ ସୀମା ଲଙ୍ଘନ କରିଗଲା । ସେ ନିଜର ଯୁବକ ପୁତ୍ରମାନଙ୍କୁ କହିଲେ—"ପିଲାମାନେ ! ଏହି ନିର୍ଲଜ ଅନ୍ଧ ପିତାଙ୍କୁ ତୁମ୍ଭେମାନେ ନେଇ ଗଙ୍ଗାରେ ପକାଇ ଦେଇ ଆସ ।"

ମୁନି ପୁତ୍ରମାନେ ମଧ୍ୟ ଅନ୍ଧର ଚଡ଼ଚଡ଼ା ସ୍ୱଭାବରେ କ୍ଷୁବ୍ଧ ରହୁଥିଲେ । ତେଣୁ ମାତାଙ୍କ ଆଦେଶରେ ସେମାନେ ତାଙ୍କୁ ଧରନେଇଗଲେ । ଯେତେହେଲେ ତ ସେ ପିତା । ତେଣୁ ସେମାନେ ତାଙ୍କୁ ଗଙ୍ଗାରେ ନ ବୁଡ଼ାଇ ଗୋଟିଏ ଭେଳା ନୌକାରେ ବାନ୍ଧି ଶ୍ରାବଣ-ଭାଦ୍ରବ ମାସର ଜଳପୂର୍ଣ୍ଣ ଗଙ୍ଗା ନଦୀରେ ତାଙ୍କୁ ନିରାଶ୍ରୟ ଭାବରେ ଛାଡ଼ିଦେଲେ ଓ କହିଦେଲେ—"ପିତା ! ଏବେ ତୁମର ଭାଗ୍ୟ ଯେଉଁଆଡ଼େ ବାଟ କଢ଼ାଉଛି, ସେ ଆଡ଼େ ଚାଲିଯାଅ ।"

ମୁନି ଅନ୍ଧ ଥିଲେ, ଜ୍ଞାନୀ ମଧ୍ୟ ଥିଲେ । ସେ କିଛି ନ କହି ଚୁପ୍‌ଚାପ ହୋଇ ନୌକାରେ ପଡ଼ି ରହିଲେ । ସେ ନୌକାରେ ଭାସି ଭାସି ଯାଇ କାଶୀଠାରୁ ଅନେକ ଦୂରରେ ଥିବା 'ବଳୀୟା' ନାମକ ସ୍ଥାନରେ ପହଞ୍ଚିଲେ । ସକାଳ ହେଲା, ମୁନି କିଛି ନ କହି ସେହିପରି ଚୁପ୍‌ଚାପ ହୋଇ ରହି ଥାଆନ୍ତି । ଏହି ସମୟରେ ମହାରାଜ ସୁତପାଙ୍କ ପୁତ୍ର ବଳି ସେଠାକୁ ଗଙ୍ଗାସ୍ନାନ କରିବା ପାଇଁ ଯାଇଥିଲେ । ମୁନିଙ୍କର ନୌକା ତାଙ୍କ ନିକଟରେ ଆସି ପହଞ୍ଚିଲା । ରାଜା ଦେଖିଲେ, ନୌକାରେ ନାବିକ ନାହିଁ । କେହି ଜଣେ ସେଥିରେ ବନ୍ଧା ହୋଇ ପଡ଼ିଛି । ସେ ସଙ୍ଗେ ସଙ୍ଗେ ନୌକାକୁ ଧରନେଇ ବନ୍ଧା ହୋଇଥିବା ମୁନିଙ୍କୁ ଖୋଲିଦେଲେ ଓ ତାଙ୍କୁ ପଚାରିଲେ—"ବ୍ରହ୍ମନ୍ ! ଆପଣ କିଏ ? ଏହି ନୌକାରେ ଆପଣଙ୍କୁ କିଏ ଏପରି ବାନ୍ଧିଛି ?"

ମୁନି କହିଲେ—"ରାଜନ ! ମୁଁ ମହର୍ଷି ଅଙ୍ଗିରାଙ୍କ ପୌତ୍ର ଓ ମହାମୁନି ଉତଥ୍ୟଙ୍କ ପୁତ୍ର ଦୀର୍ଘତମା । ମୋର ଅଜ୍ଞାନୀ ପୁତ୍ରମାନେ ନିଜ ମାତାଙ୍କ ଆଦେଶରେ ମୋତେ ଅନ୍ଧ ବୋଲି ତିରସ୍କାର କରି ଏହି ନୌକାରେ ବାନ୍ଧି ଭସାଇ ଦେଲେ ।"

ମହାମୁନି ଦୀର୍ଘତମାଙ୍କର ପରିଚୟ ପାଇ ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ ଓ ସେ ବିନୀତ ଭାବରେ କହିଲେ—"ବ୍ରହ୍ମନ୍ ! ଆପଣ ପଛକଥା ସବୁ ଭୁଲି ଯାଆନ୍ତୁ । ମୁଁ ଆପଣଙ୍କର ସେବକ, ଆପଣ ଏହି ରାଜ୍ୟକୁ ନିଜର ବୋଲି ଭାବି ଏଠାରେ ସୁଖରେ ଅବସ୍ଥାନ କରନ୍ତୁ ।"

ମୁନି ତ ତାହା ହିଁ ଚାହୁଁଥିଲେ । ସେ ରାଜାଙ୍କର ପ୍ରାର୍ଥନାରେ ସମ୍ମତି ପ୍ରଦାନ କଲେ ଓ ସୁଖରେ ମହାରାଜ ବଳିଙ୍କ ନିକଟରେ ରହିଲେ । ରାଜା ଯେତେବେଳେ ଜାଣିଲେ ଯେ ମୁନି ରତି କର୍ମରେ ଖୁବ୍ ଦକ୍ଷ, ସେତେବେଳେ ସେ ପ୍ରାର୍ଥନା କଲେ—"ମୁନିବର ! ମୋ ନିମନ୍ତେ ଆପଣ ସନ୍ତାନ ଉତ୍ପନ୍ନ କରନ୍ତୁ ।"

ମୁନିଙ୍କର ଏଥିରେ କୌଣସି ଆପତ୍ତି କରିବାର ନ ଥିଲା । ସେ କହିଲେ—"ଅଚ୍ଛା ହେଉ, ମୁଁ ତ ଏହି ବିଦ୍ୟାରେ ଦକ୍ଷ । ସୁରଭି ପୁତ୍ରଙ୍କଠାରୁ ମୁଁ ମଧ୍ୟ ଗୋ-ଧର୍ମ ଶିକ୍ଷାଲାଭ କରିଛି ।"

ରାଜା କହିଲେ—"ମହାରାଜ ! କୃପାକରି ଆପଣ ଏ କ୍ଷେତ୍ରରେ ଗୋ-ଧର୍ମ ଆଚରଣ ନ କରି ମାନବ ଧର୍ମ ହିଁ ଆଚରଣ କରନ୍ତୁ । ମୋ ରାଣୀଙ୍କ ଗର୍ଭରେ ଆପଣ ସନ୍ତାନ ଉତ୍ପନ୍ନ କରାନ୍ତୁ ।" ମୁନି ଏଥିରେ ସ୍ୱୀକୃତି ପ୍ରଦାନ କରିବାରୁ ରାଜା ନିଜର ପତିବ୍ରତା ପତ୍ନୀଙ୍କୁ କହିଲେ—"ବଂଶ ବୃଦ୍ଧି ପାଇଁ ତୁମେ ମହାମୁନି ଦୀର୍ଘତମାଙ୍କ ନିକଟକୁ ଯାଅ ।"

ଏ କଥାରେ ରାଣୀ ସମ୍ମତି ପ୍ରଦାନ କଲେ ସତ; କିନ୍ତୁ ତାଙ୍କର ଏଥିରେ ରୁଚି ହେଲା ନାହିଁ । ସେ ଦେଖିଲେ ଏ ଏକେ ତ ମୁନି ଓ ଦ୍ୱିତୀୟରେ ଅନ୍ଧ । ତାଙ୍କର ବର୍ଣ୍ଣ କଳା ଓ ସେ କୁରୂପ । ତେଣୁ ସେ ତାଙ୍କର ଗୋଟିଏ ଦାସୀକୁ ମୁନିଙ୍କ ନିକଟକୁ ପଠାଇ ଦେଲେ । ମୁନିଙ୍କ ଔରସରୁ ଦାସୀଠାରୁ କକ୍ଷୀବାନ୍ ଆଦି କେତେକ ପୁତ୍ର ଜାତ ହୋଇଥିଲେ । ସେହି ପୁତ୍ରମାନଙ୍କୁ ଦେଖି ରାଜା ମୁନିଙ୍କୁ କହିଲେ—"ବ୍ରହ୍ମନ୍ ! ଆପଣ ମୋର ଏହି ପୁତ୍ରମାନଙ୍କୁ ମୋତେ ପ୍ରଦାନ କରନ୍ତୁ ।"

ମୁନି କହିଲେ—"ରାଜନ୍ ! ଏ ସବୁ ତୁମ ପୁତ୍ର ନୁହନ୍ତି, ମୋର ପୁତ୍ର । ମୁଁ ନିଜ ପାଇଁ ଏହାଙ୍କୁ ଉତ୍ପନ୍ନ କରିଅଛି । ତୁମ ରାଣୀ ତ ମୋତେ ଅନ୍ଧ ବୋଲି ଜାଣି ମୋ ନିକଟକୁ ଆସି ନାହାନ୍ତି ।"

ଏହା ଶୁଣି ରାଜା ମହାରାଣୀ ସୁଦେଷ୍ଣାଙ୍କୁ ବୋଧଶୋଧ କରାଇ କୌଣସି ପ୍ରକାର ତାଙ୍କ ପ୍ରସ୍ତାବରେ ରାଣୀଙ୍କୁ ରାଜି କରାଇଲେ । ଏହାପରେ ଯଥାକ୍ରମେ ମୁନିଙ୍କ ଔରସରେ ରାଣୀଙ୍କ ଗର୍ଭରୁ ପରମ ଯଶସ୍ୱୀ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର, ସୁହ୍ମ ଓ ଆନ୍ଧ୍ର ଏ ଛଅ ପୁତ୍ର ଜାତ ହେଲେ । ପ୍ରତି ଗର୍ଭାଧାନ ସମୟରେ ଏପରି ଏକ ଘଟଣା ଘଟିଲା ଯେ, ମୁନି ଏହି ପୁତ୍ରମାନଙ୍କୁ କ୍ଷତ୍ରିୟପଣରୁ ଭ୍ରଷ୍ଟ କରିଦେଲେ ।"

ଶୌନକ ପଚାରିଲେ—"ହେ ସୂତ ! ଏପରି କି ଘଟଣା ଗର୍ଭାଧାନ ସମୟରେ ଘଟିଲା ?"

ସୂତ କହିଲେ—"ମହାରାଜ ! ଛାଡ଼ନ୍ତୁ ସେ କଥା । ଆପଣ ସାଧୁ ମହାତ୍ମା ହୋଇ ଏ ସବୁ କଥା ଶୁଣିବା ଠିକ୍ ନୁହେଁ । ଏ ମୁନିଙ୍କର ମାୟା ବିଚିତ୍ର । ସେ କ୍ଷଣକେ ରୁଷ୍ଟ ତ କ୍ଷଣକେ ତୁଷ୍ଟ ସ୍ୱଭାବର ଥିଲେ । ଆପଣ କେବଳ ଏତିକି ଜାଣନ୍ତୁ ଯେ, ବଲିଙ୍କର ଏହି ଛଅ କ୍ଷେତ୍ରଜ ପୁତ୍ର ହୋଇଥିଲେ । ଏମାନେ ନିଜ ନିଜର ନାମ ଅନୁସାରେ ରାଜ୍ୟ ପ୍ରତିଷ୍ଠା କରିଥିଲେ । ଜ୍ୟେଷ୍ଠ ପୁତ୍ର ଅଙ୍ଗଙ୍କ ନାମ ଅନୁସାରେ ଅଙ୍ଗ ଦେଶ (ବିହାର) ହୋଇଥିଲା ଓ ସେ ସେଠାରେ ରାଜା ହୋଇଥିଲେ । ଦ୍ୱିତୀୟ ପୁତ୍ର ବଙ୍ଗଙ୍କ ନାମରେ ବଙ୍ଗଦେଶ, ତୃତୀୟ ପୁତ୍ର କଳିଙ୍ଗଙ୍କ ନାମରେ କଳିଙ୍ଗ, ଏହିପରି ଭାବରେ ପୁଣ୍ଡ୍ର, ସୁହ୍ମ ଓ ଆନ୍ଧ୍ର ଆଦି ନିଜ ନିଜ ନାମରେ ରାଜ୍ୟ ପ୍ରତିଷ୍ଠା କରି

ସେଠାରେ ରାଜା ହୋଇଥିଲେ । ଏବେ ମଧ୍ଯ ସେହି ରାଜ୍ୟ ସବୁ ଭାରତର ପୂର୍ବ ସୀମାରେ ସେହି ସେହି ନାମରେ ସୁପ୍ରସିଦ୍ଧ । ଏହି ରାଜାମାନେ ବିଶୁଦ୍ଧ କ୍ଷତ୍ରିୟ ନ ହୋଇ ଏକ ବିଶିଷ୍ଟ ଜାତିର ରାଜା ବୋଲି ପରିଚିତ ହେଉଥିଲେ । ଏବେ ଯଦି ମୁଁ ସେମାନଙ୍କ ବଂଶ ସମ୍ବନ୍ଧରେ ବର୍ଣ୍ଣନା କରିବି, ତେବେ କଥା ବହୁତ ବଢ଼ିଯିବ । ତେଣୁ ମହାରାଜ ବଳିଙ୍କର ଜ୍ୟେଷ୍ଠ ପୁତ୍ର ଅଙ୍ଗଙ୍କ ବଂଶାବଳୀ ସମ୍ବନ୍ଧରେ କହି ମହାରାଜ ଅନୁଙ୍କ ବଂଶ କଥା କହିବି । ପୁନଶ୍ଚ ମହାରାଜ ଯଯାତିଙ୍କର ତୃତୀୟ ପୁତ୍ର ଦ୍ରୁହ୍ୟୁଙ୍କ ବଂଶାନୁଚରିତ ବର୍ଣ୍ଣନା କରିବି ।”

ଶୌନକ କହିଲେ—“ହଁ, ମହାଶୟ ! ଆପଣ ଏବେ ଶୀଘ୍ର ଆମ୍ଭମାନଙ୍କୁ ତାହା ଶୁଣାନ୍ତୁ । ଶ୍ରୀକୃଷ୍ଣ ଚରିତ ଶୁଣିବା ପାଇଁ ଆମ୍ଭମାନଙ୍କ ମନ ଚଞ୍ଚଳ ହେଲାଣି । ତେବେ ଅଙ୍ଗଙ୍କର ପୁତ୍ର ସମ୍ବନ୍ଧରେ ଆମ୍ଭମାନଙ୍କୁ କିଛି କହନ୍ତୁ ।”

ସୂତ କହିଲେ—“ଶୁଣନ୍ତୁ ମହାରାଜ ! ବଳିଙ୍କର ପୁତ୍ର ଖନପାନ, ତାଙ୍କ ପୁତ୍ର ହେଉଛନ୍ତି ଦିବିରଥ, ତାଙ୍କ ପୁତ୍ର ଧର୍ମରଥ ଓ ଧର୍ମରଥଙ୍କ ପୁତ୍ରର ନାମଥିଲା ଚିତ୍ରରଥ । ଏହି ଚିତ୍ରରଥଙ୍କର ଅନ୍ୟ ନାମ ଥିଲା ରୋମପାଦ । ତାଙ୍କର କୌଣସି ସନ୍ତାନ ନ ଥିଲେ । ତେଣୁ ଅଯୋଧ୍ୟାଧିପ ମହାରାଜ ଦଶରଥ ନିଜର ଶାନ୍ତାନାମ୍ନୀ କନ୍ୟା ରାଜାଙ୍କୁ ପ୍ରଦାନ କରିଥିଲେ । ରାଜା ସେହି କନ୍ୟାକୁ ଋଷ୍ୟଶୃଙ୍ଗଙ୍କୁ ବିବାହ ଦେଇଥିଲେ । ରାଜା ଛଳେବଳେ କୌଶଳେ ମୁନି ପୁତ୍ରଙ୍କୁ ଡକାଇ ଥିଲେ । ତାଙ୍କର ଚତୁରଙ୍ଗ ପୁତ୍ର ହୋଇଥିଲେ, ତାଙ୍କର ........”

ଏହା ଶୁଣି ଶୌନକ କହିଲେ—“ହେ ସୂତ ! ଏବେ ଆଉ ଏତେ ଚଞ୍ଚଳ ହୁଅନ୍ତୁ ନାହିଁ, ଭଲଭାବେ ବୁଝାଇ କହନ୍ତୁ ଯେ, ମହାରାଜ ରୋମପାଦ ମୁନି ପୁତ୍ର ଋଷ୍ୟଶୃଙ୍ଗଙ୍କୁ କପରି ଛଳେବଳେ କୌଶଳେ ଡକାଇଲେ ଓ ମହାରାଜ ଦଶରଥ ନିଜ କନ୍ୟାକୁ ତାଙ୍କୁ କାହିଁକି ଦେଲେ ?”

ସୂତ କହିଲେ—“ମହାରାଜ ! ମୋର ସମସ୍ତ କଥା ସ୍ମରଣ ଅଛି । ବିସ୍ତାର କରି କହିବାକୁ ଗଲେ ଆପଣ କହୁଛନ୍ତି ଯେ ସଂକ୍ଷେପରେ କହନ୍ତୁ ଓ ସଂକ୍ଷେପରେ କହିବାକ୍ଷଣି କହୁଛନ୍ତି, ‘ଆପଣ ଗାସ କାଟିଲା ପରି କହୁଛନ୍ତି ।’ ପ୍ରବକ୍ତା ହେବା ଅତ୍ୟନ୍ତ ମନ୍ଦ କାର୍ଯ୍ୟ । ତାଙ୍କୁ ଶ୍ରୋତାଙ୍କ ରୁଚିକୁ ସର୍ବଦା ଜଗି କରିବାକୁ ପଡ଼ିଥାଏ । ସେମାନେ ସଂସାରୀ ହୋଇଥିଲେ ସେମାନଙ୍କର ମନ କଥା ଜାଣିହୁଏ । କିନ୍ତୁ ଏ ବାବାଜୀମାନଙ୍କର ମନ କଥା ଜାଣିବା ଏତେ ସହଜ ନୁହେଁ ଯେ, ସେମାନେ କ’ଣ ଜାଣିବାକୁ ଇଚ୍ଛା କରନ୍ତି । ସମୟ ସମୟରେ ଗୋଟିଏ ଶବ୍ଦ ଏମାନଙ୍କୁ ବୁଝାଇବାକୁ ଯାଇ ଘଣ୍ଟା ଘଣ୍ଟା ସମୟ ବିତିଯାଏ, ତେଣୁ ମୁଁ ଅବଶ୍ୟକୀୟ କଥା କହିବି—ଆଗକୁ

ଯାହା ହେଲ ଶୁଣନ୍ତୁ । ମହାମୁନି ଋଷ୍ୟଶୃଙ୍ଗଙ୍କ କଥା ଅତ୍ୟନ୍ତ ରୋଚକ, ସରସ-ସୁନ୍ଦର ଓ ଶିକ୍ଷାପ୍ରଦ । ଆପଣମାନେ କହିଲେ ତାହା ଶୁଣାଇବି, ନ ହେଲେ ବଂଶାବଳୀ ବର୍ଣ୍ଣନା କରି ଏହିଠାରେ ସମାପ୍ତ କରିବି ।”

ଶୌନକ କହିଲେ—“ନା, ମହାଶୟ ! ଏତେ ଶୀଘ୍ର ଶେଷ କରିଦେବା ଆବଶ୍ୟକ ନାହିଁ । ମୁନିବର ଋଷ୍ୟଶୃଙ୍ଗଙ୍କ କଥା ଆମ୍ଭମାନଙ୍କୁ ଏବେ କହନ୍ତୁ । ରାଜା ତାଙ୍କୁ ଛଳେ-ବଳେ-କୌଶଳରେ କିପରି ବଣରୁ ଆଣିଲେ ଏବଂ କାହିଁକି ତାଙ୍କ ଅତି ଆଦରର ସୁକୁମାରୀ ପରମ ସୁନ୍ଦରୀ କନ୍ୟାକୁ ବନବାସୀ ମୁନିଙ୍କ ସହିତ ବିବାହ କରାଇଲେ ?”

ଏହା ଶୁଣି ସୂତ କହିଲେ—“ତେବେ ଠିକ୍ ଅଛି, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ଏହି ସମସ୍ତ କଥା କହୁଅଛି । ଆପଣ ଏକାଗ୍ର ଚିତ୍ତରେ ତାହା ଶ୍ରବଣ କରନ୍ତୁ ।”

## ଛପ୍‌ପୟ

**ଦୀର୍ଘତମା ତେଁ ଭୟେ ନୃପତି ସୁତ କ୍ଷେତ୍ରଜ ସୁଖକର ।**
**ଅଙ୍ଗ ବଙ୍ଗ ଅରୁ କଲିଙ୍ଗ ସୁହ୍ୟ ଅରୁ ପୁଣ୍ଡ୍ର ଅନ୍ଧ୍ରବର ।।**
**ନିଜ ନିଜ ନାମନି ଦେଶ ପୂର୍ବ ମହଁ ଥାପିତ କିନ୍ହେ ।।**
**ଦାସୀ ସୁତ ମୁନି ଦୀର୍ଘତମା ନିଜ ସୁତ କରି ଲୀନ୍ହେ ।।**
**ଅଙ୍ଗରାଜ ଖନପାନ ସୁତ, ଦିବିରଥ ସୁତ ତିନକେ ଅଧିପ ।**
**ତିନକେ ସୁତ ନୃପ ଧରମରଥ, ପୁତ୍ର ଚିତ୍ରରଥ ଭୟେ ନୃପ ।।**



# ମହାରାଜ ରୋମପାଦ

ସୁତୋ ଧର୍ମରଥୋ ଯସ୍ୟ ଜଜ୍ଞେ ଚିତ୍ରରଥୋଽପ୍ରଜାଃ ।
ରୋମପାଦ ଇତି ଖ୍ୟାତସ୍ତସ୍ମୈ ଦଶରଥଃ ସଖା ॥

(ଶ୍ରୀ ଭା ୯ ସ୍କ ୨୩ ଅ ୭ ଶ୍ଳୋ)

## ଛପ୍‌ପୟ

ରୋମପାଦ ଜୁ ନାମ ନ ତନକେ କୋଇ ସନ୍ତତି ।
ଶାନ୍ତା କନ୍ୟା ଦଇ ମିତ୍ର ଲଖି ଦଶରଥ ଭୂପତି ॥
ବିପ୍ରନ କୋ ଅପମାନ କଚରେଯୋ ନହିଁ ସୁରପତି ବରସେଂ ।
ଭିକ୍ଷନ ପରେଯୋ ଅକାଲ ଅନ୍ନ ବିନୁ ସବ ଜନ ତରସେଂ ॥
ଭୟେ ଚିତ୍ରରଥ ଦୁଃଖିତ ଅତି, ସମ୍ମତି ମନ୍ତ୍ରିନ ତେଂ କରୀ ।
କୌନ ପାପ ତେଂ ଘୋର ୟହ, ବିପଦା ହମ ସବ ପୈ ଧରୀ ॥

ଅଧିକ ଉପକରଣ ଦ୍ୱାରା ଧନ ଐଶ୍ୱର୍ଯ୍ୟ ବୃଦ୍ଧି ହୁଏ ନାହିଁ । ଯାହାର ଯେପରି ଭାବନା, ତାହାକୁ ସେହିପରି ଫଳ ମିଳେ । ଏଥିପାଇଁ ଏକ ପ୍ରାଚୀନ କାହାଣୀ ଅଛି— "ଥରେ ଜଣେ ରାଜା ଶିକାର କରିବାପାଇଁ ବଣକୁ ଯାଇଥିଲେ । ସେଠାରେ ତାଙ୍କୁ ଭାରି ଶୋଷ ହେଲା । ସେବକମାନେ ତାଙ୍କୁ କହିଲେ—"ମହାରାଜ ! ଏହି ନିକଟରେ ଆମ ରାଜ୍ୟର ଏକ ବୃହତ୍ତ ବେଦନା ବଗିଚା ରହିଛି, ଚାଲନ୍ତୁ ସେଠାକୁ ଯିବା । ଏକଥା ଶୁଣି ରାଜା ସେଠାକୁ ଚାଲିଲେ । ମନ୍ତ୍ରୀ ମଧ୍ୟ ତାଙ୍କ ସାଙ୍ଗରେ ଯାଇଥିଲେ । ସେ ଯାଇ ଦେଖିଲେ ଖୁବ୍ ବଡ଼ ବଗିଚା । ଏକ ହଜାର ମାଳୀ ସେଠାରେ କାମ କରୁଛନ୍ତି । ରାଜାଙ୍କୁ ଭାରି ଶୋଷ ହେଉଥିଲା, ସେ ସଙ୍ଗେ ସଙ୍ଗେ ତାଙ୍କୁ ଜଳ ମାଗିଲେ । ଜଣେ ମାଳୀ ସଙ୍ଗେ ସଙ୍ଗେ ଗଛରୁ ଗୋଟିଏ ବେଦନା ତୋଳିଆଣି ଏକ ପାତ୍ରରେ ତାହାର ରସ ବାହାର କଲା । ତହିଁରେ ପାତ୍ରଟି ପୂରିଗଲା । ରାଜା ତାହା ପାନ କଲେ । ରସ

ଅତ୍ୟନ୍ତ ମଧୁର ଥିଲା । ରାଜା ତାହା ପାନକରି ଅତ୍ୟନ୍ତ ପ୍ରସନ୍ନ ହେଲେ । ଏହାପରେ ରାଜା ପଚାରିଲେ—"ଏଠାରୁ ଫଳସବୁ କେଉଁଠିକି ଯାଏ ?" ମାଳୀମାନେ କହିଲେ—"ମହାରାଜ ! ଏଠାରୁ ରାଜ୍ୟର ମନ୍ଦିରକୁ ଏହା ପଠାଯାଏ, ସେଠାରେ ତାହା ଭୋଗ ଲଗାଯାଇ ବ୍ରାହ୍ମଣମାନଙ୍କୁ ଓ ଅନ୍ୟମାନଙ୍କୁ ପ୍ରସାଦ ରୂପରେ ବିତରଣ କରାଯାଏ ।"

ରାଜା ପଚାରିଲେ—"ତୁମେ କେତେଜଣ ମାଳୀ ଏଠାରେ କାମ କରୁଅଛ ?"

ମାଳୀମାନେ କହିଲେ—"ମହାରାଜ ! ଆମେ ଏକ ହଜାର ମାଳୀ ଏଠାରେ କାମ କରୁଛୁ ।"

ରାଜା ପୁଣି ପଚାରିଲେ—"ସମୁଦାୟ କେତେ ଗଛ ଏ ବଗିଚାରେ ଅଛି ?" ଉତ୍ତର ମିଳିଲା—"ଏକ ହଜାର ଗଛ ଏଠାରେ ଅଛି । ପ୍ରତି ଗଛର ଯତ୍ନ ନେବାପାଇଁ ଜଣେ ଲେଖାଏଁ ମାଳୀ ଅଛନ୍ତି ।"

ରାଜା କହିଲେ—"ଗୋଟିଏ ଗଛ ସକାଶେ ଜଣେ ମାଳୀର କି ଆବଶ୍ୟକତା ରହିଛି ? ଜଣେ ମାଳୀ ଅତି କମ୍‌ରେ ଅନ୍ତତଃ ଦଶଟି କରି ଗଛର ଯତ୍ନ ନେଇ ପାରନ୍ତି । ନଅଶହ ମାଳୀଙ୍କୁ ଏବେ ବାହାର କରି ଦିଅ ।" ମନ୍ତ୍ରୀ ସଙ୍ଗେ ସଙ୍ଗେ ନଅଶହ ମାଳୀଙ୍କୁ ବାହାର କରି ଦେଲେ ଓ ରାଜା ସେଠାରୁ ଫେରି ଆସିଲେ ।

କିଛିଦିନ ପରେ ରାଜା ପୁନଶ୍ଚ ସେହି ବଗିଚାକୁ ଗଲେ ଓ ପୁନଶ୍ଚ ବେଦନାରସ ପାନ କରିବାକୁ ମାଗିଲେ । ସେହି ବୁଢ଼ାମାଳୀ ଏଥର ୧୦ଟି ବେଦନା ତୋଳି ଆଣିଲା, ସେଗୁଡ଼ିକର ରସ ବାହାର କଲା ବେଳକୁ ଦେଖାଗଲା ଯେ ପାତ୍ରଟି ପୂର୍ଣ୍ଣ ହେଉନାହିଁ । ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ପ୍ରଥମେ ଗୋଟିଏ ମାତ୍ର ବେଦନାରୁ ପାତ୍ରଭରା ରସ ମିଳିଥିଲା; କିନ୍ତୁ ଏବେ ୧୦ଟି ବେଦନାର ରସରେ ସେହି ପାତ୍ରଟି ପୂର୍ଣ୍ଣ ହେଉ ନାହିଁ, ଏହାର କାରଣ କ'ଣ ?" ବୁଢ଼ା ମାଳୀଟି କହିଲା—"ପ୍ରଭୋ ! ଉଷ୍ଣତା ଯୋଗୁଁ ରସ ସବୁ ଶୁଖି ଯାଇଛି ।" ରାଜା କହିଲେ—"ଏବେ ତ ଏତେ ଗରମ ପଡ଼ି ନାହିଁ ?"

ମାଳୀ କହିଲା—"ପ୍ରଭୋ ! ଅପରାଧ କ୍ଷମା କରିବେ । ସୂର୍ଯ୍ୟଙ୍କ ତାପରେ ରସ ଶୁଖେ ନାହିଁ । ଆପଣ ଯେଉଁ ନଅଶହ ମାଳୀଙ୍କୁ ସେମାନଙ୍କର ଜୀବିକାରୁ ବଞ୍ଚିତ କଲେ, ସେମାନଙ୍କର ପିଲା କବିଲାଙ୍କ ଦୀର୍ଘଶ୍ୱାସରୁ ଏହି ରସ ସବୁ ଶୁଖିଗଲା ।" ରାଜା ଏଥର ନିଜର ଭୁଲ ବୁଝି ପାରିଲେ ଓ ସେମାନଙ୍କୁ ନିଜ ନିଜ କାର୍ଯ୍ୟରେ ପୁନର୍ନିଯୁକ୍ତ ଦେଲେ ।

ଏହା ତ ଅତି ପୁରୁଣା କଥା; କିନ୍ତୁ ପ୍ରତ୍ୟକ୍ଷରେ ଦେଖିବାକୁ ମିଳୁଛି ଯେ, ଯେଉଁମାନେ ପାଞ୍ଚ ପାଞ୍ଚ ବା ସାତ ସାତ ଗ୍ରାମର ରାଜା ଥିଲେ, ସେମାନଙ୍କର ଅପର୍ଯ୍ୟାପ୍ତ ଧନ ଥିଲା । ସେମାନେ ଏତେ ଦାନ ପୁଣ୍ୟ କରୁଥିଲେ ଯେ, ଲୋକମାନେ ସେମାନଙ୍କର ଧନର କଳନା କରି ପାରୁ ନ ଥିଲେ । ପରେ ଦେଖାଗଲା, ଶତ ଶତ ଗ୍ରାମର ଅଧିପତିଙ୍କ ପକ୍ଷେ କଣକୁ ଛଅଟିଏ ଦେବା କଷ୍ଟକର ହୋଇଗଲା । ବସୁନ୍ଧରା ଯେହିପରି ରହିଛି, କିନ୍ତୁ ତାହା ଏବେ ଧନ ଦେଉ ନାହିଁ । ଆଜି ବଡ଼ ବଡ଼ ରାଷ୍ଟ୍ରମାନେ ଦେବାଳିଆ ହୋଇ ଯାଇଛନ୍ତି । ଏହାର କାରଣ ହେଉଛି, ସେମାନଙ୍କର ଧର୍ମପ୍ରତି ନିଷ୍ଠା ନାହିଁ କିମ୍ବା ସେମାନେ ଭଗବାନଙ୍କର ଆଶ୍ରୟ ନେଉ ନାହାନ୍ତି । ନିଜ ନିଜର କୃତ୍ରିମ ସାଧନାରେ, ନିଜ ନିଜର ଧନ୍ଦାରେ ସେମାନଙ୍କର ବିଶ୍ୱାସ । ଯଦି ସେମାନେ ଆସ୍ତିକ ବୁଦ୍ଧିରେ ଦେବ, ଦ୍ୱିଜ, ଗୁରୁ ଓ ଭଗବାନଙ୍କଠାରେ ବିଶ୍ୱାସ ରଖି କାର୍ଯ୍ୟ କରନ୍ତେ, ତେବେ ଏହି ପୃଥିବୀ ସ୍ୱର୍ଣ୍ଣପ୍ରସୂ ହୁଅନ୍ତା ଓ କାମଧେନୁ ସଦୃଶ ହୋଇ ପ୍ରତ୍ୟେକଙ୍କ ଇଚ୍ଛା ପୂର୍ଣ୍ଣ କରନ୍ତା ।

ସୂତ କହିଲେ—"ମୁନିଗଣ ! ମୁଁ ଅନୁବଂଶୀୟ ମହାରାଜ ବଳିଙ୍କ ବଂଶ ବର୍ଣ୍ଣନା କରି ମହାରାଜ ଚିତ୍ରରଥଙ୍କ (ଯାହାଙ୍କର ନାମ ମଧ୍ୟ ରୋମପାଦ) ପର୍ଯ୍ୟନ୍ତ ବର୍ଣ୍ଣନା କଲି । ଏବେ ମୁଁ ମହାରାଜ ରୋମପାଦଙ୍କ କଥା କହୁଅଛି । ଏହାଙ୍କ ପ୍ରସଙ୍ଗରେ ମହର୍ଷି ଋଷ୍ୟଶୃଙ୍ଗଙ୍କ କଥା ମଧ୍ୟ ଆସିବ ।

ମହାରାଜ ରୋମପାଦ ଅଙ୍ଗ ଦେଶର ରାଜା ଥିଲେ । ସେ ଧର୍ମପୂର୍ବକ ପ୍ରଜାପାଳନ କରୁଥିଲେ । ଅଙ୍ଗଦେଶ ସେତେବେଳେ ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲା । ରାଜା ଥିଲେ ଧର୍ମାତ୍ମା, ତାଙ୍କର ଅପାର ଐଶ୍ୱର୍ଯ୍ୟ ଥିଲା । ଧନରତ୍ନରେ ତାଙ୍କ ଭଣ୍ଡାର ସର୍ବଦା ଭରପୂର ଥିଲା । ତାଙ୍କର ମନ୍ତ୍ରିମାନେ କର୍ତ୍ତବ୍ୟପରାୟଣ ଓ ନ୍ୟାୟପ୍ରିୟ ଥିଲେ । ପ୍ରଜାମାନେ ରାଜାଙ୍କୁ ପିତାଙ୍କ ସମାନ ଦେଖୁଥିଲେ । ରାଜା ମଧ୍ୟ ପ୍ରଜାମାନଙ୍କୁ ଭେଦ ଭାବରେ ନ ଦେଖି ପୁତ୍ରସମ ପାଳନ କରୁଥିଲେ । ରାଜା ସମସ୍ତ ପ୍ରକାର ସୁଖ ଭୋଗ କରୁଥିଲେ; କିନ୍ତୁ ତାଙ୍କର ପୁତ୍ର ନ ଥିଲେ । ଏଥିପାଇଁ ସେ ମନ ଦୁଃଖରେ କାଳାତିପାତ କରୁଥିଲେ । ଯଯାତିଙ୍କ ଶାପ ଓ ମହାମୁନି ଦୀର୍ଘତମାଙ୍କ କ୍ରୋଧରୁ ତାଙ୍କର ଶୁଦ୍ଧ କ୍ଷତ୍ରିୟଙ୍କ ସହିତ ସମ୍ବନ୍ଧ ନ ଥିଲା । ତଥାପି ସେ ରାଜାଥିଲେ । ତାଙ୍କର 'ସୂତ' ସଂଜ୍ଞା ହୋଇ ଯାଇଥିଲା । 'ଅବଧ' ରାଜ୍ୟ ଓ ଏହାଙ୍କ ରାଜ୍ୟର ସୀମା ଏକତ୍ର ଥିଲା । ସେ ସମୟରେ ମହାରାଜ ଦଶରଥଙ୍କ ଶାସନାଧୀନ ଥିଲା ଏହି 'ଅବଧ' । ମହାରାଜ ଦଶରଥଙ୍କ ସହିତ ତାଙ୍କର ଅତ୍ୟନ୍ତ ମିତ୍ରତା ଥିଲା ଓ ସେମାନଙ୍କ ମଧ୍ୟରେ ଅତ୍ୟଧିକ ସ୍ନେହ ସହାନୁଭୂତ ଥିଲା । ମହାରାଜ ଦଶରଥଙ୍କର ମଧ୍ୟ ଅଦୌ ପୁତ୍ର ନ ଥିଲେ । ତାଙ୍କର

ମିତ୍ର ରୋମପାଦଙ୍କୁ ଧନେ ସେ କହିଲେ—"ମୋର ଯଦି କୌଣସି ସନ୍ତାନ ସମ୍ଭବ ହୁଏ, ତେବେ ମୁଁ ତାକୁ ତୁମକୁ ଦେବ ।"

ଦୈବ ଯୋଗରୁ ମହାରାଜ ଦଶରଥଙ୍କର ଉପପତ୍ନୀଙ୍କଠାରୁ ଏକ କନ୍ୟାଜାତ ହେଲା । ଏହି କନ୍ୟା ଅତ୍ୟନ୍ତ ସୁନ୍ଦରୀ ଥିଲା । ତାଙ୍କ ରୂପ ଲାବଣ୍ୟ ଦେଖି ଦେବକନ୍ୟା-ମାନେ ମଧ୍ୟ ଲଜ୍ଜିତ ହେଉଥିଲେ । ମହାରାଜ ଦଶରଥ ନିଜର ପ୍ରତିଜ୍ଞା ଅନୁସାରେ ସେହି କନ୍ୟାକୁ ମହାରାଜ ରୋମପାଦ (ଚିତ୍ରରଥ)ଙ୍କୁ ଦେଇଦେଲେ । ରୋମପାଦଙ୍କ ରାଜମହଲରେ ସେହି କନ୍ୟା କୁମୁଦିନୀ ଭଳି ବଢ଼ିବାକୁ ଲାଗିଲା । ରାଜକୁମାରୀ ଅତ୍ୟନ୍ତ ସୁକୁମାରୀ ତଥା ଶାନ୍ତ ସ୍ୱଭାବର ଥିଲେ । ତେଣୁ ପିତା ମାତା ତାଙ୍କର ନାମ 'ଶାନ୍ତା' ରଖିଥିଲେ । ଶାନ୍ତା ଧୀରେ ଧୀରେ ଯୁବାବସ୍ଥାରେ ପଦାର୍ପଣ କଲେ । ମହାରାଜ ତାଙ୍କ ଅନୁରୂପ ସୁଯୋଗ୍ୟ ବର ଅନ୍ୱେଷଣ କରିବାରେ ଲାଗିଲେ ।

ସେ ସମୟରେ ଏକ ଦୁର୍ଘଟଣା ଘଟିଲା । ରାଜା ଲୋଭବଶତଃ ବ୍ରାହ୍ମଣ-ମାନଙ୍କୁ ମିଛ କଥା କହିଲେ । ତାଙ୍କର ଧର୍ମ ଭାବନା ଶିଥିଳ ହୋଇ ଆସିଲା । ବ୍ରାହ୍ମଣ-ମାନେ ଦୁଃଖିତ ହୋଇ ସେଠାରୁ ଚାଲିଗଲେ । ଏହି ଅପରାଧ କାରଣରୁ ରାଜ୍ୟରେ ଆଦୌ ବର୍ଷା ହେଲା ନାହିଁ । ସମଗ୍ର ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଗଲା । ବୃଷ୍ଟି ନ ହେବାରୁ ଗଛପତ୍ର ଶୁଖିଗଲା । ବସୁମାତା ଅନ୍ନ ଦେବା ବନ୍ଦ କରିଦେଲେ । ରାଜା ଏଥିରେ ଅତ୍ୟନ୍ତ ଚିନ୍ତିତ ହେଲେ । ସେ ନିଜର ମନ୍ତ୍ରୀ ତଥା ବେଦଜ୍ଞ ବ୍ରାହ୍ମଣମାନଙ୍କୁ ପଚାରିଲେ—"ଦେଶରେ ଅନାବୃଷ୍ଟି ଓ ଅତିବୃଷ୍ଟି ଶାସକଙ୍କର ପାପ କାରଣରୁ ହିଁ ହୋଇଥାଏ । ମୁଁ ଏପରି କି ପାପ କଲି ଯେ, ଯଦ୍ଦ୍ୱାରା କି ମୋ ରାଜ୍ୟରେ ବର୍ଷା ହେଉ ନାହିଁ ?"

ବ୍ରାହ୍ମଣମାନେ କହିଲେ—"ରାଜନ୍ ! ଆପଣ ଲୋଭବଶତଃ ବ୍ରାହ୍ମଣଙ୍କଠାରେ ଅପରାଧ କରିଛନ୍ତି । ତେଣୁ ନିର୍ମଳ ହୃଦୟରେ ଏହି ପାପର ପ୍ରାୟଶ୍ଚିତ କରନ୍ତୁ ଓ ବ୍ରାହ୍ମଣଙ୍କ ନିକଟରେ କ୍ଷମା ପ୍ରାର୍ଥନା କରନ୍ତୁ, ତେବେ ଇନ୍ଦ୍ର ଆପଣଙ୍କ ରାଜ୍ୟରେ ବର୍ଷା କରିବେ । ଯଦି ମହାମୁନି ଋଷ୍ୟଶୃଙ୍ଗ ଆପଣଙ୍କ ରାଜ୍ୟରେ ପଦାର୍ପଣ କରନ୍ତି, ତେବେ ଆପଣଙ୍କ ରାଜ୍ୟରେ ନିଶ୍ଚିତ ଭାବେ ବର୍ଷା ହେବ ।"

ରାଜା ପଚାରିଲେ—"ବ୍ରାହ୍ମଣଗଣ ! ମୁନିବର ଋଷ୍ୟଶୃଙ୍ଗଙ୍କଠାରେ ଏପରି କି ବିଶେଷତ୍ୱ ଅଛି, ଯଦ୍ଦ୍ୱାରା କି ସେ ଆସିବାକ୍ଷଣି ବର୍ଷା ହେବ ?"

ବ୍ରାହ୍ମଣମାନେ କହିଲେ—"ରାଜନ୍ ! ବର୍ତ୍ତମାନ ଋଷ୍ୟଶୃଙ୍ଗ ମୁନିଙ୍କ ତପସ୍ୟା ସର୍ବୋତ୍କୃଷ୍ଟ । ସେ ଆଜି ପର୍ଯ୍ୟନ୍ତ କୌଣସି ସ୍ତ୍ରୀ ଲୋକର ମୁଖ ବି ଦର୍ଶନ କରି ନାହାନ୍ତି । ଗଙ୍ଗାଜଳ ଭଳି ସେ ବିଶୁଦ୍ଧ । ସଂସାର ବିଷୟରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ । ତାଙ୍କୁ

କୌଣସି ପ୍ରକାରେ ଆପଣ ନିଜ ରାଜ୍ୟକୁ ଆଣି ତାଙ୍କ ସହିତ ଆପଣଙ୍କର ସର୍ବଶ୍ରେଷ୍ଠ ସୁନ୍ଦରୀ କନ୍ୟାକୁ ବିବାହ କରାନ୍ତୁ, ତେବେ ଆପଣଙ୍କର ସମସ୍ତ ପ୍ରକାର ଅଭ୍ୟୁଦୟ ହେବ । ସେ ଆସିବା ମାତ୍ରେ ତ ବର୍ଷା ହେବା ସୁନିଶ୍ଚିତ, ଏହା ବ୍ୟତୀତ ଆପଣଙ୍କର ପୁତ୍ର ମଧ୍ୟ ହୋଇ ପାରିବ ଏବଂ କୀର୍ତ୍ତି ଦିଗଦିଗନ୍ତ ବ୍ୟାପି ଯିବ ।”

ଏହାଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ନିଜର ଅପରାଧ ପାଇଁ ପଶ୍ଚାତାପ କଲେ ଓ ବ୍ରାହ୍ମଣମାନଙ୍କ ପାଦତଳେ ପଡ଼ି କ୍ଷମାଭିକ୍ଷା କଲେ । ବ୍ରାହ୍ମଣମାନେ ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ସେଠାରୁ ଫେରି ଆସିଲେ । ଋଷ୍ୟଶୃଙ୍ଗ ମୁନି ଇଆଡ଼କୁ କିପରି ଆସିବେ, ସେହି ଚିନ୍ତା ରାଜାଙ୍କୁ ଘାରିବାକୁ ଲାଗିଲା ।

ସେ ବିଦ୍ୱାନମାନଙ୍କୁ ଡକାଇ ଏକ ସଭା କଲେ । “ମୁନିବର ଋଷ୍ୟଶୃଙ୍ଗଙ୍କୁ କେଉଁ ଉପାୟରେ ନିଜ ରାଜ୍ୟକୁ ଅଣାଯାଇ ପାରିବ । ସେଥିରେ ଏ ବିଷୟରେ ଆଲୋଚନା ହେଲା ।” ଏ ସମ୍ବନ୍ଧରେ ବିଭିନ୍ନ ବ୍ୟକ୍ତି ବିଭିନ୍ନ ପ୍ରକାର ଉପାୟ ବ୍ୟକ୍ତ କଲେ । ଅନେକେ କହିଲେ—“ତାଙ୍କୁ ଏଠାକୁ ଆଣିବା ଅସମ୍ଭବ; କାରଣ ତାଙ୍କ ପିତା ତାଙ୍କୁ କେଉଁଠାକୁ ଯିବାକୁ ଦିଅନ୍ତି ନାହିଁ । ସେ ଆଜି ପର୍ଯ୍ୟନ୍ତ କୌଣସି ସ୍ତ୍ରୀ ଲୋକଙ୍କୁ ସହଜେ ତ ଦେଖି ନାହାନ୍ତି, ପୁନଶ୍ଚ ତାଙ୍କ ପିତା ଘୋର ଜଙ୍ଗଲରେ ରହୁଅଛନ୍ତି । ସେ ନିଜ ପୁତ୍ରକୁ କେବେହେଲେ ସ୍ତ୍ରୀ ଲୋକଙ୍କୁ ଦର୍ଶନ କରାଇ ଦେଉ ନାହାନ୍ତି । ଯଦି ସେ କୌଣସି ପ୍ରକାରେ ସ୍ତ୍ରୀ ଲୋକଙ୍କୁ ଦେଖି ନିଅନ୍ତି, ତେବେ ଚକରେ ପଡ଼ିଯିବେ ।”

ବୁଝିଗଲେ ବୋଲି ରାଜା ଏ ବିଷୟରେ ବିଦ୍ୱାନମାନଙ୍କ ଆବଶ୍ୟକତା ନାହିଁ, ଶାସ୍ତ୍ରଜ୍ଞ କିମ୍ବା ନୀତିନିପୁଣ ଏ ବିଷୟରେ କିଛି ପ୍ରତିବିଧାନ କରି ପାରିବେ ନାହିଁ । ଏ କାର୍ଯ୍ୟକୁ କେବଳ କାମପ୍ରବୀଣା ମନୋହାରିଣୀ କାମିନୀ ହିଁ କରି ପାରିବେ । ଏହା ଚିନ୍ତାକରି ସେ ବିଦ୍ୱାନମାନଙ୍କୁ ବିଦାୟ ଦେଲେ ଓ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ଏବଂ ରୂପଗର୍ବିଣୀ ବାରାଙ୍ଗନାମାନଙ୍କୁ ଡ଼କାଇ ସେମାନଙ୍କୁ ନିଜର ପ୍ରସ୍ତାବ ଜଣାଇଲେ । ସେମାନେ ଏ କଥା ଶୁଣି ଅତ୍ୟନ୍ତ ଭୟଭୀତ ହେଲେ ଓ ହାତଯୋଡ଼ି କହିଲେ—“ହେ ଅନ୍ନଦାତା ! ଅମ୍ଭମାନଙ୍କୁ କ୍ଷମା କରନ୍ତୁ । ଆପଣ ଅମ୍ଭମାନଙ୍କୁ ଅନ୍ୟ କୌଣସି କଠିନ କାର୍ଯ୍ୟ କରିବାକୁ ବରଂ କହନ୍ତୁ । ଯଦି ଚାହାନ୍ତି ଆମ୍ଭମାନଙ୍କୁ ଦଣ୍ଡ ଦିଅନ୍ତୁ; କିନ୍ତୁ ଋଷ୍ୟଶୃଙ୍ଗଙ୍କ ପିତା ବିଭଣ୍ଡକ ମୁନିଙ୍କ ନିକଟକୁ ଆମକୁ ପଠାନ୍ତୁ ନାହିଁ । ଆମେ ସେହି ଉଗ୍ରସ୍ୱଭାବ ବଶିଷ୍ଠ ମହର୍ଷିଙ୍କ ଖ୍ୟାତି ଶୁଣିଅଛୁ । ଅମ୍ଭେମାନେ ତାଙ୍କ ତପତେଜ ବିଷୟ ମଧ୍ୟ ଜାଣୁ । ଅମ୍ଭେମାନେ ଏହା ମଧ୍ୟ

ଶୁଣିଛୁ ଯେ, ସେ ସ୍ତ୍ରୀମାନଙ୍କ ଉପରେ ଖାର ଚଢ଼ନ୍ତି । ନିଜ ପୁତ୍ରକୁ ସେ ଏ ପର୍ଯ୍ୟନ୍ତ କୌଣସି ସ୍ତ୍ରୀଙ୍କୁ ଦେଖିବାର ସୁଯୋଗ ମଧ୍ୟ ଦେଇ ନାହାନ୍ତି । ଏ ସମ୍ବନ୍ଧରେ ସେ ଖୁବ୍ ସତର୍କ ଅଛନ୍ତି । ଯଦି ସେ ଆମ କାର୍ଯ୍ୟର କିଛିଏ ସୂଚନା ପାଆନ୍ତି, ତେବେ ସେ ସେହିଠାରେ ଶାପଦେଇ ଆମ୍ଭମାନଙ୍କୁ ଭସ୍ମ କରି ଦେବେ ।"

ଯେତେବେଳେ ଏମାନେ ନିଜ ନିଜର ଅସମର୍ଥତା ପ୍ରକାଶ କଲେ, ସେତେବେଳେ ଏକ ବୁଢ଼ୀ ବେଶ୍ୟା ସେମାନଙ୍କ ମଧ୍ୟରୁ ବାହାରି ନିଜର ଆଖିରେ ଲଗାଇଥିବା କୃତ୍ରିମ କଳା କଳା ବାଳକୁ କୁଞ୍ଚିତ କରାଇ ହାତ ହଲାଇ କହିଲା—"ମହାରାଜ ! ମୋତେ ଯଦି ଧୂର୍ତ୍ତମାନଙ୍କ ପାରତୋଷିକ ମିଳିବ ତେବେ ମୁଁ ସେହି କାର୍ଯ୍ୟ କରିବାକୁ ସକ୍ଷମ ହେବି ।"

ରାଜା କହିଲେ—"ତୁ ମୁନିପୁତ୍ରଙ୍କୁ ଏଠାକୁ ନେଇ ଆ, ମୁଁ ତୋତେ ଯଥେଷ୍ଟ ଧନ ଦେବି ।"

ସେ କହିଲା—"ଆଚ୍ଛା ଠିକ୍ ଅଛି ମହାରାଜ ! ମୁଁ ଋଷିପୁତ୍ରଙ୍କୁ ନିଶ୍ଚୟ ଏଠାକୁ ନେଇ ଆସିବି । ମୋ ପାଇଁ ଗୋଟିଏ ସୁନ୍ଦର ନୌକା ମଗାଇ ଦିଅନ୍ତୁ ।" ରାଜା ଅତ୍ୟନ୍ତ ସୁନ୍ଦର ନୌକାଟିଏ ମଗାଇ ଦେଲେ । ବୁଢ଼ୀ ବେଶ୍ୟା ତାକୁ ଅତି ସୁନ୍ଦରଭାବେ ସଜାଇଲା । ସେଥିରେ ସୁନ୍ଦର ସୁନ୍ଦର ଫଳ ଫଳିଥିବା ଫୁଲକୁଣ୍ଡମାନ ସଜାଇଲା । ଲଟାଥିବା ଗୃହମାନ ଲଗାଇଲା ଓ ନାନା ପ୍ରକାର ଚିତ୍ରରେ ତାକୁ ଚିତ୍ରିତ କଲା । ତାହାର ଗୋଟିଏ ଅତ୍ୟନ୍ତ ସୁନ୍ଦରୀ ଷୋଡ଼ଶୀ କନ୍ୟା ଥିଲା । ସେ ଗୀତ ବାଦ୍ୟରେ ତଥା ନୃତ୍ୟରେ ନିପୁଣା ଥିଲା । ତା ପରି ସୁନ୍ଦରୀ ବେଶ୍ୟା ଅନ୍ୟ କେହି ନ ଥିଲେ । ବୁଢ଼ୀ ତାହାର ସେହି କନ୍ୟା ଓ ଆଉ ପାଞ୍ଚ ସାତ ଜଣ ବେଶ୍ୟାଙ୍କୁ ନେଇ ଆବଶ୍ୟକୀୟ ଜିନିଷ ପତ୍ର ଏବଂ ସହଯୋଗୀମାନଙ୍କ ସହିତ ସେହି ମୁନିପୁତ୍ରଙ୍କୁ ଭୁଲାଇ ଆଣିବାକୁ ବଣକୁ ଗଲା ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏହି ଋଷ୍ୟଶୃଙ୍ଗ ମୁନି କାହାଠାରୁ ଜନ୍ମଗ୍ରହଣ କରିଥିଲେ ? ଆପଣ କହିଲେ ଯେ ସେ ଜୀବନରେ କେବେ ହେଲେ କୌଣସି ସ୍ତ୍ରୀଙ୍କୁ ଦେଖି ନ ଥିଲେ । ତେବେ ଏହା କିପରି ସମ୍ଭବ ହୋଇ ପାରେ ? ପୁରୁଷର ଜନ୍ମ ତ ସ୍ତ୍ରୀଙ୍କ ଉଦରରୁ ହିଁ ହୋଇଥାଏ । ତେବେ ସେ ସ୍ତ୍ରୀଲୋକର ମୁଖ ନ ଦେଖି କିପରି ରହି ପାରିଲେ ? ସେ ତ ନିଶ୍ଚୟ ମା ମୁଖ ଦର୍ଶନ କରିଥିବେ ?"

ଏହାର ଉତ୍ତରରେ ସୂତ କହିଲେ—"ମହାରାଜ ! ଋଷ୍ୟଶୃଙ୍ଗ ମହାମୁନି ବିଭାଣ୍ଡକଙ୍କ ପୁତ୍ର ଥିଲେ, କିନ୍ତୁ ସେ ସ୍ତ୍ରୀଙ୍କ ଗର୍ଭରୁ ଉତ୍ପନ୍ନ ହୋଇ ନ ଥିଲେ । ହରିଣୀର

ଉଦରରୁ ସେ ଜନ୍ମ ହୋଇଥିଲେ । ତାଙ୍କର ପିତା ସର୍ବଦା ଏହି ଚେଷ୍ଟା କରୁଥିଲେ ଯେ,—ମୋ ପୁତ୍ର ଯେପରି କୌଣସି ସ୍ତ୍ରୀ ମୁଖ ଦର୍ଶନ ନ କରେ । ସେ ଯେପରି ସର୍ବଦା ସଂସାରର ବିଷୟ ଭୋଗଠାରୁ ଦୂରରେ ରହେ । କିନ୍ତୁ ମହାରାଜ ! ଏହା କ'ଣ କେବେ ସମ୍ଭବ ହୋଇପାରେ ? ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ପରସ୍ପର ଆକର୍ଷଣ ରହିବା ସ୍ୱାଭାବିକ । ଏହା ମନୁଷ୍ୟକୃତ ଆକର୍ଷଣ ନୁହେଁ, ଏହା ଦୈବକୃତ । ବ୍ରହ୍ମା ପ୍ରଥମେ ପୁରୁଷଙ୍କୁ ହିଁ ସୃଷ୍ଟି କରିଥିଲେ । ସେତେବେଳେ ମନରୁ ସୃଷ୍ଟି ହେଉଥିଲା । ଏହିପରି ଭାବରେ ବ୍ରହ୍ମା ଅନେକ ମାନସ ପୁତ୍ର ସୃଷ୍ଟି କରିଥିଲେ । ସେ ସେମାନଙ୍କୁ ଆଜ୍ଞା ଦେଲେ—"ତୁମ୍ଭେମାନେ ଏ ସୃଷ୍ଟିର ବୃଦ୍ଧି କର ।" କିନ୍ତୁ କିଏ ବା କାହିଁକି ଅଯଥାରେ ଏ ଘୃଙ୍ଗଟରେ ପଡ଼ନ୍ତା ? ସୃଷ୍ଟି ବୃଦ୍ଧି କରିବାରେ କାହାରି ରୁଚି ନଥିଲା କିମ୍ବା କେହି ହେଲେ ଏହାକୁ ଭଲ କାର୍ଯ୍ୟ ବୋଲି ମନେ କରୁ ନ ଥିଲେ । ସମସ୍ତେ ବସି ବସି ହରିନାମ ଜପକଲେ । ବ୍ରହ୍ମା ସମସ୍ତଙ୍କୁ ସଂସାର ବୃଦ୍ଧି କରିବାକୁ ପ୍ରବର୍ତ୍ତାଇଲେ, ଉପଦେଶ ଦେଲେ, ପିତୃ ଭକ୍ତିର ଶିକ୍ଷା ଦେଲେ; କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ତେଣୁ ସେ ବଡ଼ ଚିନ୍ତାରେ ପଡ଼ି ଭଗବାନଙ୍କ ଶରଣ ନେଲେ । ଭଗବାନ୍ ନିଜ କାୟାରୁ ଏକ ବ୍ରହ୍ମାର ଦୁଇ ବ୍ରହ୍ମା ସୃଷ୍ଟି କଲେ । ଦୁହିଁଙ୍କ ମଧ୍ୟରୁ ଏକ ଭାଗରୁ ସ୍ତ୍ରୀ ସୃଷ୍ଟି ହେଲା । ତାକୁ ଦେଖିବା ମାତ୍ରେ ସମସ୍ତଙ୍କର ବିବାହ କରିବାକୁ ଇଚ୍ଛା ହେଲା । ସୃଷ୍ଟି ବଢ଼ାଇବା ପାଇଁ କେହି କାହାକୁ ଆଉ କହିବାକୁ ପଡ଼ିଲା ନାହିଁ । ସୃଷ୍ଟି ବଢ଼ି ଚାଲିଲା । ଏଥିପାଇଁ ଏକରୁ ଦୁଇ ହେବାପାଇଁ ପ୍ରାଣୀମାନେ ଇଚ୍ଛା କରନ୍ତି । ଭଗବାନଙ୍କ କୃପା ହେଲେ କେହି ଏ ଆକର୍ଷଣରୁ ମଧ୍ୟ ରକ୍ଷା ପାଇ ଥାଆନ୍ତି । ନାହିଁ ତ ପ୍ରାଣୀମାତ୍ରେ ଏହି ଆକର୍ଷଣରେ ଆକର୍ଷିତ ହୋଇ ଥାଆନ୍ତି । ଯେତେବେଳେ ଆକର୍ଷିତ ହୋଇ ପଡ଼ନ୍ତି, ସେତେବେଳେ ବ୍ରହ୍ମା ମଧ୍ୟ ଏହାର ପ୍ରତିରୋଧ କରିବାରେ ଅସମର୍ଥ ହୋଇ ଥାଆନ୍ତି । କେବଳ 'ନାରାୟଣ' ଋଷିଙ୍କ ବ୍ୟତୀତ ଏହି ଆକର୍ଷଣରୁ କେହିହେଲେ ରକ୍ଷା ପାଇ ନାହାନ୍ତି । 'ନର'ଙ୍କର ଚିତ୍ତ ମଧ୍ୟ ଏଥିରେ ଚଞ୍ଚଳ ହୋଇଥିଲା । ଯାହାଙ୍କ ଉପରେ ଗୁରୁ ଓ ଈଶ୍ୱରଙ୍କର ପୂର୍ଣ୍ଣ କୃପା ହୁଏ ଓ ଏଥିରୁ ରକ୍ଷା କରିବା ପାଇଁ ତାଙ୍କର ଇଚ୍ଛା ହୁଏ, ସେ ହିଁ କେବଳ ରକ୍ଷା ପାଇ ପାରନ୍ତି । ତା' ନ ହେଲେ, ହେ ମୁନିଗଣ ! କେହିହେଲେ ଏଥିରୁ ରକ୍ଷା ପାଇ ପାରନ୍ତି ନାହିଁ । ଆଉ ଅଧିକ ବା ଆପଣମାନଙ୍କୁ କ'ଣ କହିବି ? ଏକାନ୍ତରେ ଯୁବକକୁ ଦେଖି ଯୁବତୀ ଓ ଯୁବତୀକୁ ଦେଖି ଯୁବକ ନିଜ ନିଜକୁ ଭୁଲି ଯାଆନ୍ତି । ସମସ୍ତ ପ୍ରତିଜ୍ଞା ଶିଥିଳ ହୋଇଯାଏ ।"

ଏ କଥା ଶୁଣି ଶୌନକ କହିଲେ—"ହଁ ହେ ସୂତ ! ଆପଣ ଯାହା କହିଲେ ତାହା ସତ । ଏବେ ଆପଣ ଏହାପରେ କ'ଣ ହେଲା କହନ୍ତୁ । ମୁନିବର ଋଷ୍ୟଶୃଙ୍ଗଙ୍କର ଜନ୍ମ ହରିଣୀ ଗର୍ଭରୁ କିପରି ହେଲା ? ହରିଣୀଠାରୁ ମନୁଷ୍ୟ ପିଲାର ଜନ୍ମ ତ ଅସମ୍ଭବ

କଥା ? ପୁନଶ୍ଚ ତାଙ୍କୁ ବିଭାଣ୍ଡକ ମୁନିଙ୍କ ପୁତ୍ର ବୋଲି କପରି କୁହାଗଲା ? ସେହି ବୃଦ୍ଧା ବେଶ୍ୟା ବଣକୁ ଯାଇ କ'ଣ କଲା ? ସମସ୍ତ କଥା ଶୁଣିବା ପାଇଁ ଆମ୍ଭେମାନେ ଅତ୍ୟନ୍ତ କୌତୁହଳୀ ।"

ଏହା ଶୁଣି ସୂତ କହିଲେ—"ମହାରାଜ ! ଏ ସଂସାରରେ ଅସମ୍ଭବ ବୋଲି କିଛି ନାହିଁ । ଯେଉଁମାନେ ଅଳ୍ପ ବୁଦ୍ଧି ବିଶିଷ୍ଟ, ସେମାନେ ଭଗବାନଙ୍କର ମାୟାର ଶକ୍ତିକୁ ନ ଜାଣିପାରି ଯେଉଁକଥା ସେମାନଙ୍କ ବୁଦ୍ଧିକୁ ଆସେ ନାହିଁ ବା ସେମାନେ ପସନ୍ଦ କରନ୍ତି ନାହିଁ, ତାକୁ ଅସମ୍ଭବ ବୋଲି କହିଥାନ୍ତି । ଭଗବାନଙ୍କ ମାୟା ଦ୍ୱାରା ସବୁକିଛି ସମ୍ଭବ ହୋଇପାରେ । ଗୋକର୍ଣ୍ଣ ଗୋରୁଠାରୁ ହିଁ ଉତ୍ପନ୍ନ ହୋଇଥିଲେ । ବ୍ୟାସଙ୍କର ମାତା ସତ୍ୟବତୀ ମତ୍ସ୍ୟ ଉଦରରୁ ଜନ୍ମ ଲାଭ କରିଥିଲେ । କୃପ ଓ କୃପୀ ପ୍ରକାଶ ପିଶାଚୀଠାରୁ ଜାତ ହୋଇଥିଲେ । ଅଗସ୍ତ୍ୟ ଓ ବଶିଷ୍ଠ ଘଡ଼ାରୁ ଜାତ ହୋଇଥିଲେ । ଦ୍ରୋଣାଚାର୍ଯ୍ୟ ଯଜ୍ଞର ଏକ ଦ୍ରୋଣ ନାମକ ପାତ୍ରରୁ ହିଁ ଉତ୍ପନ୍ନ ହୋଇଥିଲେ । ଏକ ନୁହେଁ, ଏହିପରି ଅନେକ ଉଦାହରଣ ରହିଛି ଓ ଏହିପରି ଘଟଣା ଆଜି ମଧ୍ୟ କୌଣସି କୌଣସିଠାରେ କେବେ କେବେ ଦେଖିବାକୁ ମିଳୁଛି । ଋଷିମାନଙ୍କ ବୀର୍ଯ୍ୟ ଅମୋଘ ବୀର୍ଯ୍ୟ, ତାହା କେବେ ହେଲେ ବ୍ୟର୍ଥ ହୁଏ ନାହିଁ । ତାହା ଯେଉଁଠାରେ ପଡ଼େ ସେଠାରେ ସାର୍ଥକ ହୁଏ । ଏବେ ମୁଁ ଆପଣମାନଙ୍କୁ ମହାମୁନି ଋଷ୍ୟଶୃଙ୍ଗଙ୍କ ଉତ୍ପତ୍ତି ବିଷୟରେ କହି, ତାହାପରେ ସେହି ବେଶ୍ୟାର ମାୟା କଥା କହିବି । ଆପଣମାନେ ଏହି ସରସ ଶିକ୍ଷାପ୍ରଦ ଉପାଖ୍ୟାନକୁ କୃପା କରି ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍‌ପୟ

**ବୋଲେ ଦ୍ୱିଜ—ଯଦ ଋଷ୍ୟଶୃଙ୍ଗ ମୁନିବର ପୁର ଆବେଂ ।**
**ତୋ ସୁରପତ ଅବଲମ୍ବ ରାଜମହିଁ ଜଲ ବରସାବେଂ ।।**
**ମୁନି ଆଗମନ ଉପାୟ ବତାୟୋ, ସବ ମିଲି ମଂତ୍ରିନ ।**
**ଋଷି କୁମାର ତପ ନିରତ ନ ନିରଖି ନାରୀ ନୟନନ ।।**
**ଯଦ ପ୍ରମଦା କୋ ମୁଖ କମଲ, ନିରଖେଂ ତୋ ଫଁସି ଆୟଁଗେ ।**
**ରୂପାକର୍ଷଣ ଡୋରମହିଁ, ବଁଧେ, ବିବଶ ହୈ ଆୟେଁଗେ ।।**



# ଋଷ୍ୟଶୃଙ୍ଗ ମୁନି ଓ ବେଶ୍ୟାକନ୍ୟା

ଶାନ୍ତାଂ ସ୍ୱକନ୍ୟାଂ ପ୍ରାୟଚ୍ଛଦ୍ ଋଷ୍ୟଶୃଙ୍ଗ ଉବାହ ତାମ୍ ।
ଦେବେ'ବର୍ଷତି ଯଂ ରାମା ଆନିନ୍ୟୁର୍ହରିଣୀସୁତମ୍ ॥

(ଶ୍ରୀ ଭା ୯ ସ୍କ, ୨୩ ଅ, ୮ ଶ୍ଳୋକ)

## ଛପ୍ପୟ

ମାନୀ ସମ୍ମତ ନୃପତି ବାର ବନିତା ବୁଲାଇଁ ।
ମୁନି ମୋହନ କୀ ବାତ ସୁନି ସବଇ ଘବରାଇଁ ॥
ବୋଲି ବେଶ୍ୟା ବୃଦ୍ଧ-ପ୍ରଭୋ ! ଯଦି ଆଜ୍ଞା ପାଉଁ ।
ତୋ ଛଲ-ବଲ କରି ଋଷ୍ୟଶୃଙ୍ଗ ମୁନିବର କୂ ଲାଉଁ ॥
ସବ ସାମଗ୍ରୀ ସୌଂପୀ ନୃପ, ବେଶ୍ୟା କୂଁ ଆୟସୁ ଦଇ ।
ଠଗିନୀ ତନୟା ଦାସ ସଁଗ, ଚଢ଼ି ନୌକା ପେ ଚଲ୍ ଦଇ ॥ *

ଅଙ୍ଗିନରେ ତ୍ୟାଗ କରାଯାଏ ନାହିଁ । କେହି କେହି କହନ୍ତି, ମୁଁ ସାଂସାରିକ ବିଷୟ ପ୍ରତି ଯଦି ଆଖି ବୁଜି ଦେବି, ତେବେ ସେ ସବୁ ବଳପୂର୍ବକ ଜପରି ମୋତେ ଆସକ୍ତ କରିବ । ଏହା ସତ କଥା ଯେ, ତୁମେ ବାହାରୁ ବିଷୟକୁ ଦେଖିବ ନାହିଁ, କିନ୍ତୁ ଭିତରେ ଯେଉଁ ସଂସାର ଭୋଗର ବାସନା ରହିଛି, ତାକୁ କପରି ତ୍ୟାଗ କରି ପାରିବ ? ଯେ ପର୍ଯ୍ୟନ୍ତ ମନ ନିର୍ବିଷୟ ନ ହୋଇଛି, ଭୋଗର ବାସନା କ୍ଷୟ ନ ହୋଇଛି, ସେ ପର୍ଯ୍ୟନ୍ତ ଯେତେ ଆଖି ବୁଜି ରହ, ମୁକ୍ତ ସମ୍ଭବ ନୁହେଁ । ରହିଲେ ମଧ୍ୟ ଭୂତ ଭବିତ ସଂସାରରେ ହିଁ ରହିବା ହୋଇଥାଏ । ମହାମୁନି ସୌଭରି ଚିନ୍ତା କଲେ, ବାହାରେ ରହିବା ଦ୍ୱାରା ଦୃଷ୍ଟି ଚଞ୍ଚଳ ହୁଏ ଓ ଚିତ୍ତ ଏଣେତେଣେ ବିକ୍ଷିପ୍ତ ହୁଏ । ମୁଁ ଜଳରେ ବୁଡ଼ିରହି ସମାଧିରେ ବସିବି । ସେଠାରେ କୌଣସି ଶବ୍ଦ ଶୁଣାଯିବ ନାହିଁ କିମ୍ବା ଆକର୍ଷଣୀୟ ରୂପ ଦେଖିବାକୁ ମିଳିବ ନାହିଁ । ଏହା ଚିନ୍ତା କରି ସେ ଯମୁନା ନଦୀର ଜଳ ମଧ୍ୟରେ ସମାଧିରେ ବସିଲେ । ସମସ୍ତ ସମୟରେ ତ

ସମାଧିର ଅବସାନ ଘଟିଥାଏ । ଥରେ ତାଙ୍କର ସମାଧି ଯେତେବେଳେ ଭଗ୍ନ ହେଲା, ତାଙ୍କର ଦୃଷ୍ଟି ସହସା ଏକ ନଗର ଉପରେ ପଡ଼ିଲା । ତାକୁ ନିଜର ସ୍ତ୍ରୀ ଓ ଗ୍ରେଷ୍ଠ ଶିଶୁଙ୍କ ସହିତ ବିହାର କରୁଥିବାର ଦେଖି ତୃକ୍ଷ୍ଟ ହେବାର ବାସନା ମୁନିଙ୍କ ମନରେ ଜାଗରିତ ହେଲା । ସେ ଶୀଘ୍ର ଜଳ ମଧ୍ୟରୁ ବାହାରି ଆସି ପଚିଶ ଜଣ ସ୍ତ୍ରୀଙ୍କୁ ବିବାହ କଲେ ଓ ତାଙ୍କର ପାଞ୍ଚ ହଜାର ପୁତ୍ର ହୋଇଥିଲେ । ସାରକଥା ହେଲା; ଭିତର ବାସନା ହେଲେ, ଏହା କେବେ ନା କେବେ ବାହାରେ ପ୍ରକାଶ ପାଏ । ସଂସାରରେ ରହି ସମସ୍ତ ସମୟରେ ମଧ୍ୟ ବିଷୟ ସଂସର୍ଗ ହୋଇଯାଏ । ଉପରେ ଆଖି ବନ୍ଦ କରିବା ମଧ୍ୟ ସେହିପରି, ଯେପରି କି ଶୁତୁରମୁର୍ଗ ହାତରେ ଧନୁଷବାଣ ନେଇ ଶିକାର ପ୍ରିୟ ପୁରୁଷଙ୍କୁ ଦେଖି ନିଜର ମୁଖକୁ ବାଲିଦ୍ୱାରା ଲୁଚାଇ ଦେବା ସମ୍ଭବ ହୋଇଥିଲା । ସେ ଚିନ୍ତା କରୁଥିଲା, ମୁଁ ଏହାଙ୍କୁ ଆଦୌ ଦେଖି ପାରିବି ନାହିଁ ।" କିନ୍ତୁ ତାଙ୍କୁ ଏହା ଜଣା ନ ଥିଲା ଯେ, ନିଜେ ନ ଦେଖିଲେ ମଧ୍ୟ ସେ ତ ଦେଖି ନେଇଛି । ଅନେକ ଲୋକ ଅଭିମାନ ବଶତଃ କହିଥାନ୍ତି, "ମୁଁ ଏହାଙ୍କର ଦେଖାଶୁଣା କରିବି, ମୁଁ ଏହାଙ୍କୁ ବିଚଳିତ ହେବାକୁ ଦେବି ନାହିଁ ।" ଆରେ ଭାଇ ! ଅନ୍ୟର ଠେକା ତ ପରେ ନେବାକୁ ହେବ, ଆଗେ ନିଜକୁ ସମ୍ଭାଳ । ଯେ ନିଜେ ନିଜ ମନକୁ ବଶ ନ କରିଛ ଓ ଯେ ଅବସର ପାଇ ଆପେ ଆପେ ଘୁମାଇ ପଡ଼ିଛି, ସେ ଅପରର ଉଦ୍ଧାର ଦାୟିତ୍ୱ କିପରି ଅବା ବହନ କରି ପାରିବ ? ଏହା ନିର୍ବିବାଦର କଥା ଯେ, ନିବୃତ୍ତି ମାର୍ଗ ସବୁଠାରୁ ଶ୍ରେଷ୍ଠ । ପ୍ରଥମେ କପଡ଼ାରେ ପିଚ୍‌ଦାଗ ଲଗାଇ ପରେ ତାକୁ କ୍ଷାର ସାହାଯ୍ୟରେ ସଫାକରି ଉଜ୍ଜ୍ୱଳତର କରିବା, କୌଣସି ବୁଦ୍ଧିମାନ ବ୍ୟକ୍ତିର କାର୍ଯ୍ୟ ନୁହେଁ । ଏହା ଶ୍ରେଷ୍ଠ କଥା ଯେ, ପ୍ରଥମେ ପିଚ ଦାଗ ଲାଗିବାକୁ ନ ଦେବା; କିନ୍ତୁ ଯେତେବେଳେ ପିଚୁ ରାସ୍ତାରେ ଅନ୍ୟଙ୍କୁ ଯିବାକୁ ହେବ, ସେତେବେଳେ ପିଚ୍ ଲାଗିବାକୁ କେବେ ହେଲେ ନିସ୍ତାର ନାହିଁ, ତଥାପି ଏଥିରେ ବିବଶତା ରହିଛି । ଏଥିପାଇଁ ଋଷିଗଣ ପ୍ରବୃତ୍ତିମାର୍ଗକୁ ସୁରକ୍ଷିତ କଲା ବୋଲି କହିଛନ୍ତି । ପ୍ରଥମେ ଗୃହସ୍ଥାଶ୍ରମରେ ରହି ବିଷୟ ଭୋଗ ଓ ଅନୁଭବ କରନ୍ତୁ । ଏହାପରେ ଧୀରେ ଧୀରେ ଏଥିରୁ ନିବୃତ୍ତ ହୋଇ ଯାଆନ୍ତୁ । ପ୍ରଥମେ ଏହାର ଅନିତ୍ୟତା ଓ କ୍ଷଣ ଭଙ୍ଗୁରତାର ଅନୁଭବ କରନ୍ତୁ । ପରେ ସମସ୍ତ ପରିତ୍ୟାଗ କରି ଅନାସକ୍ତ ହୋଇ ଯାଆନ୍ତୁ । ଏହାକୁ ହିଁ କ୍ରମମାର୍ଗ ବୋଲି କୁହାଯାଏ । ଏହା ରାଜପଥ, ଏହା ହିଁ ବାଧାବିଘ୍ନ ରହିତ "ପନ୍ଥା"। ଯେଉଁମାନେ ବିଷୟର ବିନା ଅନୁଭବରେ କ୍ଷଣିକ ଆବେଗରେ ମାତିଯାଇ କିମ୍ବା କାହାରି ଉତ୍ତେଜିତ ପ୍ରେରଣା କାରଣରୁ ବୈରାଗ୍ୟ ଧାରଣ କରି ଥାଆନ୍ତି, ତେବେ ଆପମାନଙ୍କ ମଧ୍ୟରୁ ସମସ୍ତେ କୃତକାର୍ଯ୍ୟ ହୋଇ ପାରିବେ ନାହିଁ । ଅଧିକାଂଶଙ୍କର ପତନ ସୁନିଶ୍ଚିତ । ଏହା ବହୁ ସ୍ଥଳରେ ପ୍ରମାଣିତ ହୋଇଛି । ଏଥିପାଇଁ ବିଶୁଦ୍ଧ ନିବୃତ୍ତିମାର୍ଗର ଅଧିକାରୀ ଅତି ବିରଳ । ପ୍ରତ୍ୟେକ ବଡ଼ ବଡ଼ ଋଷି

ମହର୍ଷି ଏଥିପାଇଁ ପ୍ରବୃତ୍ତି ମାର୍ଗକୁ ଆଦର ନେଇଛନ୍ତି । ଏହି କାରଣରୁ ସେମାନେ ବେଦବିଧିରେ ଧର୍ମପୂର୍ବକ ଦାର ଗ୍ରହଣ କରିଛନ୍ତି । ଏ ବିଷୟରେ ଯେଉଁମାନେ ମିଥ୍ୟାଚାର ତଥା ଛଳ କପଟତା ଆଚରଣ କରନ୍ତି, ସେମାନଙ୍କର ଅଧୋଗତି ସୁନିଶ୍ଚିତ ।

ସୂତ କହିଲେ—"ମୁନିଗଣ ! ମୁଁ ପ୍ରଥମେ ଆପଣମାନଙ୍କୁ ମହାମୁନି ଋଷ୍ୟ-ଶୃଙ୍ଗଙ୍କ ଉତ୍ପତ୍ତି କଥା ଶୁଣାଇ ପରେ ସେହି ବେଶ୍ୟାର ମୋହିନୀ କର୍ତ୍ତୃତ୍ୱ କଥା କହିବି ।"

ପ୍ରଜାପତି ଭଗବାନ କଶ୍ୟପଙ୍କର ବିଭାଣ୍ଡକ ନାମକ ଏକ ପୁତ୍ର ଥିଲେ । ସେ ତ୍ୟାଗୀ, ତପସ୍ୱୀ, ସଂଯମୀ ଓ ସ୍ୱାଧ୍ୟାୟପରାୟଣ ଥିଲେ । ଭଗବାନ ବିଶ୍ୱାମିତ୍ର ଯେଉଁଠାରେ ତପ କରୁଥିଲେ, ସେହି ସିଦ୍ଧାଶ୍ରମରେ ସେ ରହୁଥିଲେ । ତାଙ୍କ ତପସ୍ୟାର ସର୍ବତ୍ର ଖ୍ୟାତି ଥିଲା । ସେ ଏକ ବିଶାଳ ସରୋବର ଜଳରେ ଠିଆ ହୋଇ ଯେ ପର୍ଯ୍ୟନ୍ତ ସୂର୍ଯ୍ୟ ପଛ ପଟକୁ ନ ଆସିଥାନ୍ତି, ସେ ପର୍ଯ୍ୟନ୍ତ ତପସ୍ୟା କରୁଥିଲେ । ସରୋବରଟି ଅତ୍ୟନ୍ତ ସୁନ୍ଦର ଓ ସୁବିସ୍ତୃତ ଥିଲା । ସେଥିରେ ନାନା ପ୍ରକାରର ପଦ୍ମଫୁଲ ବିକଶିତ ହେଉଥିଲା । ଦେବତା, ସିଦ୍ଧ ଓ ଚାରଣମାନେ ସେଥିରେ ଆସି ସ୍ନାନ କରୁଥିଲେ ।

ଥରେ ଗ୍ରୀଷ୍ମଋତୁରେ ମୁନି ସେହି ସରୋବର ମଧ୍ୟରେ ଠିଆ ହୋଇ ତପସ୍ୟା କରୁଥିଲେ । ସୂର୍ଯ୍ୟ ଯେତେବେଳକୁ ମୁଣ୍ଡ ଉପରକୁ ଆସିଯାଇ ଥାଆନ୍ତି । ମୁନି ଠିଆ ହୋଇ ହୋଇ କ୍ଲାନ୍ତ ହୋଇ ପଡ଼ିଥିଲେ, ଶରୀରରେ ଉଷ୍ଣତା ବ୍ୟାପ୍ତ ହୋଇ ଯାଇଥାଏ । ସୂର୍ଯ୍ୟ ପୂର୍ଣ୍ଣକଳାରେ ତାଙ୍କ ତାପ ପ୍ରଦାନ କରୁ ଥାଆନ୍ତି । ସେ ସମୟରେ ସ୍ୱର୍ଗର ସର୍ବଶ୍ରେଷ୍ଠ ଅପ୍‌ସରା ଉର୍ବଶୀ ସେଠାକୁ ସ୍ନାନ କରିବାକୁ ଆସିଲେ । ସେହି ଅନୁପମ ରୂପ ଲାବଣ୍ୟଯୁକ୍ତ ସ୍ୱର୍ଗୀୟ ଲଳନାକୁ ଦେଖି ମୁନିଙ୍କର ମନ ବିଚଳିତ ହୋଇଥିଲା । ସେ ବାରମ୍ବାର ପ୍ରଯତ୍ନ କରି ନିଜର ଦୃଷ୍ଟିକୁ ତା'ଆଡ଼ୁ ହଟାଇ ଆଣିବାକୁ ଚାହୁଁଥିଲେ, କିନ୍ତୁ ତା' ସୌନ୍ଦର୍ଯ୍ୟରେ ଏତେ ଅଧିକ ଆକର୍ଷଣ ଥିଲା ଯେ, ମୁନି ନିଜ ଚେଷ୍ଟାରେ ସଫଳ ହୋଇ ପାରିଲେ ନାହିଁ । ସେ ଅପଲକ ଦୃଷ୍ଟିରେ ସେହି ରୂପବତୀ, ସୌନ୍ଦର୍ଯ୍ୟର ସାକାର ପ୍ରତିମା ତଥା ମାଧୁର୍ଯ୍ୟ ମନୋହର ରୂପବିଶିଷ୍ଟ ଅପ୍‌ସରାକୁ ବାରମ୍ବାର ନିରୀକ୍ଷଣ କରିବାରେ ଲାଗିଲେ । ଅଜ୍ଞାତ-ସାରରେ ତାଙ୍କର ବୀର୍ଯ୍ୟ ସ୍ଖଳିତ ହୋଇଗଲା । ସେ ସମୟରେ ଆଶ୍ରମର ଏକ ପାଳିତା ହରିଣୀ ସେଠାକୁ ପାଣି ପିଇବାକୁ ଆସିଲା । ପାଣି ସହିତ ସେହି ଅମୋଘ ବୀର୍ଯ୍ୟକୁ ମଧ୍ୟ ସେ ପିଇଦେଲା । ଏଥିଯୋଗୁଁ ତାହାର ଗର୍ଭୋଦୟ ହେଲା । ତା' ଉଦରରୁ ମହାମୁନି ଋଷ୍ୟଶୃଙ୍ଗ ଜନ୍ମଲାଭ କଲେ । ହରିଣୀର ଉଦରରୁ

ଉତ୍ପନ୍ନ ହୋଇଥିବାରୁ ତାଙ୍କ ଶିର ଦେଶରେ ଏକ ଶିଙ୍ଘ ରହିଥିଲା । ମହାମୁନି ବିଭାଣ୍ଡକ ସେହି ବାଳକକୁ ପାଳନ ପୋଷଣ କରିବାକୁ ଲାଗିଲେ ।"

ଏହି କଥା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏତେବଡ଼ ମହର୍ଷିଙ୍କର ବୀର୍ଯ୍ୟ ଉର୍ବଶୀଙ୍କ ଦର୍ଶନ ମାତ୍ରେ କିପରି ସ୍ଖଳିତ ହେଲା ଓ ଏକ ହରିଣୀ ମହାମୁନିଙ୍କର ଅମୋଘ ବୀର୍ଯ୍ୟକୁ ଉଦରରେ ଧାରଣ କରିବାରେ କିପରି ସମର୍ଥ ହୋଇ ପାରିଲା ?"

ସୂତ କହିଲେ—"ଭଗବନ୍ ! ଭାଗ୍ୟ ସବୁକିଛି କରାଏ । ଭବିତବ୍ୟ ଯାହା ତାହା ହିଁ ଘଟେ । ସେହିପରି ସମସ୍ତେ ଭାଗ୍ୟଫଳ ଭୋଗରେ ଅଭ୍ୟସ୍ତ ହୋଇଯାଆନ୍ତି । ଏହି ହରିଣୀ ସାଧାରଣ ହରିଣୀ ନ ଥିଲା । ପୂର୍ବକାଳରେ ସେ ଏକ ଦେବକନ୍ୟା ଥିଲା । କୌଣସି ପୁଣ୍ୟାତ୍ମା ରାଜାଙ୍କୁ ଦେଖି ସେ ହରିଣୀଙ୍କ ଭଳି ନିଜର ବଡ଼ ବଡ଼ ନେତ୍ରରେ ଚଞ୍ଚଳ ଭାବରେ ସେହି ରାଜାଙ୍କୁ ଅନୁରାଗ ଭରା ଦୃଷ୍ଟିରେ ଚାହିଁଥିଲା । ତାହାର ଏହି ଅବିନୟ ଭାବକୁ ଦେଖି ଲୋକପିତାମହ ବ୍ରହ୍ମା ଅତ୍ୟନ୍ତ କ୍ରୁଦ୍ଧିତ ହେଲେ ଓ ତାକୁ ଶାପ ଦେଇ କହିଲେ—"ଯା, ତୁ ମର୍ତ୍ତ୍ୟଲୋକରେ ହରିଣୀ ହୋଇ ରହିବୁ ।" ସେ ଯେତେବେଳେ ବହୁତ ଅନୁନୟ ବିନୟ ହୋଇ ବ୍ରହ୍ମାଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲା, ସେତେବେଳେ ବ୍ରହ୍ମା କହିଲେ—"ତେବେ ଠିକ୍ ଅଛି, ମୋ ଶାପ କଦାପି ବ୍ୟର୍ଥ ହେବନାହିଁ, ତୋତେ ନିଶ୍ଚିତଭାବେ ହରିଣୀ ହେବାକୁ ପଡ଼ିବ; କିନ୍ତୁ ଯେତେ-ବେଳେ ତୋ ଉଦରରୁ ଏକ ଋଷି ପୁତ୍ର ଜାତ ହେବ, ସେତେବେଳେ ତୁ ଶାପମୁକ୍ତ ହେବୁ ।"

ଏ କଥା ଶୁଣି ସେ ସନ୍ତୋଷ ହେଲା । ସେହି ଦେବକନ୍ୟା ଏଠାକୁ ଆସି ହରିଣୀ ରୂପ ଧାରଣ କଲା । ସେ ମୁନିଙ୍କ ଆଶ୍ରମ ନିକଟରେ ରହୁଥିଲା ଓ ସବୁଜ ତୃଣ ଭକ୍ଷଣ କରି ନିଜର ଶାପମୁକ୍ତ ଦିବସକୁ ପ୍ରତୀକ୍ଷା କରିଥିଲା । ଦିନେ ଉର୍ବଶୀ ସେଠାରେ ଆବିର୍ଭାବ ହେଲେ । ଯେତେବେଳେ ସେ ନିଜର ସଙ୍ଗୀଙ୍କୁ ହରିଣୀ ରୂପରେ ଦେଖିଲେ, ତା' ଉପରେ ତାଙ୍କର ଦୟା ହେଲା । ସେ ଚିନ୍ତା କରିବାକୁ ଲାଗିଲେ, କୌଣସି ପ୍ରକାରେ ତା' ଉଦରରେ ଋଷିଙ୍କର ଶୁକ୍ର ଯେପରି ପଡ଼ିବ ।' ସେହି ସମୟରେ ତାଙ୍କ ସମ୍ମୁଖରେ ତପସ୍ୟାରତ କଶ୍ୟପ ସୁତ ମହର୍ଷି ବିଭାଣ୍ଡକଙ୍କୁ ସେ ଦେଖିଲେ । ସେ ଲଜ୍ଜାଭରା ଭାବ ପ୍ରଦର୍ଶନ କରି ସରୋବର ନିକଟକୁ ଗଲେ । ସ୍ନାନ କରିବା ବାହାନାରେ ସେ ସେଠାରେ ତାଙ୍କର ସମସ୍ତ ଅଙ୍ଗକୁ ନିରବୃତ୍ତ କରିବାକୁ ଲାଗିଲେ । ବିଧିର ବିଧାନ, ଭାଗ୍ୟର ପରାକ୍ରମରୁ ଋଷିଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଲା ଓ ଋଷିଙ୍କର ଶୁକ୍ର ସ୍ଖଳିତ ହୋଇଗଲା । ହରିଣୀ ତାହା ଜଳ ସହିତ ପାନ କଲା । ଦୈବକୃତ ଭବିତବ୍ୟକୁ

ହତ୍ୟ ସିଦ୍ଧ କରିବା ପାଇଁ ମହାମୁନି ଋଷ୍ୟଶୃଙ୍ଗ ସେହି ହରିଣୀର ଉଦରରୁ ଜନ୍ମଲାଭ କଲେ । ମୁନିପୁତ୍ରଙ୍କୁ ଜନ୍ମ ଦେଇ ସେହି ହରିଣୀ ସ୍ୱର୍ଗକୁ ଗଲା ଓ ସେଠାରେ ତାର ପୂର୍ବ ରୂପ ଫେରିପାଇଲା । ମୁନି ବିଭାଣ୍ଡକ ସେହି ବାଳକକୁ ଗୋ-ଦୁଗ୍ଧ ପାନ କରାଇ ଲାଳନପାଳନ କରିବାକୁ ଲାଗିଲେ ।

ମୁନିଙ୍କର ରେତପାତ ଯୋଗୁଁ ତାଙ୍କ ମନରେ ଅତ୍ୟନ୍ତ କ୍ଷୋଭଜାତ ହେଲା । ସେ ଚିନ୍ତା କରିବାକୁ ଲାଗିଲେ—"ଅପ୍ସରାକୁ ଦେଖିବା ଯୋଗୁଁ ହିଁ ମୋର ତେଜ ନଷ୍ଟ ହେଲା । ଏବେ ମୁଁ ମୋର ଏହି ପୁତ୍ରକୁ କେବେହେଲେ ଭୁଲବଶତଃ ବି ସ୍ତ୍ରୀ ମୁଖ ଦର୍ଶନ କରାଇବି ନାହିଁ । ତାହାକୁ ବିଶୁଦ୍ଧ ବ୍ରହ୍ମଚର୍ଯ୍ୟରେ ପରିଣତ କରିବି ।" ଏହା ଚିନ୍ତା କରି ସେ ନିଜର ପୁତ୍ର ଋଷ୍ୟଶୃଙ୍ଗଙ୍କୁ ନିଜ ଆଶ୍ରମ ବାହାରକୁ କେଉଁଠାକୁ ଯିବାକୁ ସୁଯୋଗ ଦେଉ ନ ଥିଲେ । ସେ ତାଙ୍କୁ ନିୟମ ପୂର୍ବକ ତପ, ଅଗ୍ନିହୋତ୍ର, ବେଦପାଠ ଆଦି ଶିକ୍ଷା ଦେଲେ । ଋଷିମାନଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ମିଶିବାକୁ ତାଙ୍କୁ ସୁଯୋଗ ଦେଉ ନ ଥିଲେ । ସ୍ତ୍ରୀ ଲୋକମାନଙ୍କୁ ତ ସେ ନିଜ ଆଶ୍ରମରେ ପାଦ ମଡ଼ାଇ ଦେଉ ନ ଥିଲେ । କୌଣସି ବୃଦ୍ଧା ଋଷିପତ୍ନୀ ମଧ୍ୟ ସେଠାକୁ ଯାଇପାରୁ ନ ଥିଲେ । ଯିବା ତ ଦୂରର କଥା, ପୁତ୍ର ଆଗରେ କେବେ ହେଲେ କୌଣସି ସ୍ତ୍ରୀ ଲୋକର ନାମ ଶୁଣାଉ ନ ଥିଲେ । ଋଷ୍ୟଶୃଙ୍ଗ ମଧ୍ୟ ଜାଣି ନ ଥିଲେ ଯେ, ମୁନି ଋଷିମାନଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ତ୍ରୀ ବା ପୁରୁଷ ଏ ସଂସାରରେ ଅଛନ୍ତି । ସେ କୌଣସି ନଗର ଦେଖି ନ ଥିଲେ କିମ୍ବା ନଗରର ବସ୍ତୁ ମଧ୍ୟ କେବେହେଲେ ଦେଖି ନ ଥିଲେ । ସେ ବ୍ରହ୍ମଚାରୀଙ୍କ ଭଳି ଛଣପଟ ମେଖଳା (କରିଆ) ପିନ୍ଧୁଥିଲେ, ରୁଦ୍ରାକ୍ଷର ମାଳା, କୁଶର ଦନ୍ତ ଓ ବ୍ରହ୍ମଦଣ୍ଡ ଧାରଣ କରୁଥିଲେ । ପଳାସର ଦଣ୍ଡ, କୌପୀନ ଓ ବଳ୍କଳ ବସ୍ତ୍ର ଏହା ହିଁ ତାଙ୍କର ବେଶ ପୋଷାକ ଥିଲା । ଜପ, ତପ, ଅଗ୍ନିହୋତ୍ର, ବନରେ ସ୍ୱତଃ ଉତ୍ପନ୍ନ ହେଉଥିବା ଫଳ, ଗାଈ ତଥା ନିଜ ପିତାଙ୍କ ବ୍ୟତୀତ ସଂସାରରେ ଅନ୍ୟ କୌଣସି ବସ୍ତୁ ଥିବା କଥା ଜଣା ନ ଥିଲା । ସେ ବୁଝୁଥିଲେ, ସଂସାରରେ କେବଳ ସମସ୍ତେ ତପସ୍ୱୀ ଅଟନ୍ତି । ସମସ୍ତେ ଜପ, ତପ, ବ୍ରତ ଅନୁଷ୍ଠାନରେ ସମୟ ଅତିବାହିତ କରନ୍ତି । ତାଙ୍କ ପିତା ସମିଧ, କୁଶ, ଫୁଲ, ଫଳ ଓ ଜଳ ନିଜେ ଆଣିବାକୁ ଯାଆନ୍ତି । ମଧ୍ୟାହ୍ନ ପରେ ଏକ ପ୍ରହର ପାଇଁ ସେ ବାହାରକୁ ଯାଉଥିଲେ । ସେହି ସମୟ ମଧ୍ୟରେ ବହୁତ କାମ ନିଜ ପୁତ୍ରକୁ ଦେଇ ଯାଉଥିଲେ । ସେ ସମୟରେ କୌଣସି ଋଷି-ମହର୍ଷି ଯଦି ଆଶ୍ରମରେ ପଦାର୍ପଣ କରୁଥିଲେ, ତେବେ ଋଷ୍ୟଶୃଙ୍ଗ ସେମାନଙ୍କୁ ପାଦ୍ୟ ଅର୍ଘ୍ୟ ତଥା ଫଳ ଫୁଲ ଦେଇ ସନ୍ତୁଷ୍ଟ କରୁଥିଲେ । ସେମାନଙ୍କର ସ୍ୱାଗତ-ସତ୍କାର କରୁଥିଲେ । ପ୍ରତ୍ୟେକ ଋଷି ଋଷ୍ୟଶୃଙ୍ଗଙ୍କ ଆଚରଣ ବ୍ୟବହାରରେ ସନ୍ତୁଷ୍ଟ ହେଉଥିଲେ । ବିଭାଣ୍ଡକ ମୁନି ନିଜ ପୁତ୍ରର ସରଳତା, ଶାନ୍ତ ସ୍ୱଭାବ ତଥା ବିଷୟ

ସମ୍ବନ୍ଧୀୟ ଅନଭିଜ୍ଞତା ଦେଖି ଆନନ୍ଦିତ ହେଉଥିଲେ । ସେ ଏ ପ୍ରକାରରେ ପୁତ୍ର ଯୋଗେ ନିଶ୍ଚିନ୍ତ ହୋଇ ଯାଇଥିଲେ ।

ମୁନିବର ଋଷ୍ୟଶୃଙ୍ଗ ଏବେ ବାଲ୍ୟାବସ୍ଥା ଅତିକ୍ରମ କରି ଯାଉଥାଆନ୍ତି । ଯୁବାବସ୍ଥା ତାଙ୍କୁ ସୂଚନା ନ ଦେଇ ତାଙ୍କ ଶରୀର ଉପରେ ଆଧିପତ୍ୟ ବିସ୍ତାର କରିଥାଏ । ଏ ପର୍ଯ୍ୟନ୍ତ ତ ତାଙ୍କର ଜଟା ହିଁ କେବଳ ଥିଲା । ଏବେ ତାଙ୍କର ଓଷ୍ଠ କଳା ପଡ଼ିବାକୁ ଆରମ୍ଭ କଲା । ତାଙ୍କର ଶ୍ରେଷ୍ଠ ଶ୍ରେଷ୍ଠ କଳା ବାଳ ବି ଗଜୁରିବାକୁ ଲାଗିଲା । ଦାଢ଼ି ଓ କପାଳରେ ମଧ୍ୟ ବାଳ ଉଠିଲା । ଦୁଇ କାଖ ସେ ଦେଖନ୍ତି ତ ସେଥିରେ ବାଳ ଗଜୁରି ଯାଇଛି । ହୃଦୟରେ ମଧ୍ୟ ସରସତାର ସଞ୍ଚାର ହୋଇଛି । ଅବ୍ୟକ୍ତ ଭାବରେ ଯୌବନର ପରଶ ଲାଗି ତାଙ୍କ କାନରେ କିଏ ଯେପରି କିଛି ଗୁଣୁ ଗୁଣୁ ଶବ୍ଦ କହି ଦେଉଛି; କିନ୍ତୁ ସେ ଏହାର କୌଣସି ଅଭିପ୍ରାୟ ଜାଣିପାରୁ ନାହାନ୍ତି । ସେ ଅତି ସୁଧୀର ଶାନ୍ତ ବାଳକ ଥିଲେ । ତାଙ୍କ କପାଳ ଉପରେ କେତେକ ମୁଖବ୍ରଣ ଉତ୍ପନ୍ନ ହେବାକୁ ଲାଗିଲା । ଦିନେ ସେ ନିଜର ପିତାଙ୍କୁ ପଚାରିଲେ—"ପିତା ! ମୋର ତ ଏକ ଶିଙ୍ଗ ଅଛି, ଏବେ ମୋ ମୁଖରେ ପୁନଶ୍ଚ କ'ଣ ଶିଙ୍ଗ ଉତ୍ପନ୍ନ ହେଉଛି ନା କ'ଣ ?"

ପିତା କହିଲେ—"ନା ପୁତ୍ର ! ଏହା ଶିଙ୍ଗ ନୁହେଁ, ଏହା ଖିଲ ବ୍ରଣ । ଆଙ୍ଗୁଳିରେ ଏହାକୁ ଚିପି ଦେ, ଏଥିରୁ ଖିଲ ବାହାରି ଯିବ । ଅବସ୍ଥାର ପରିବର୍ତ୍ତନ ହେଲେ ଏହା ମୁହଁରେ ଏପରି ଉଠେ । ଏହାକୁ ମୁଖବ୍ରଣ କୁହାଯାଏ ।"

ଋଷ୍ୟଶୃଙ୍ଗ ପଚାରିଲେ—"ପିତା ! ଆପଣଙ୍କ ପରି ମୋର ମଧ୍ୟ ଏତେ ଲମ୍ବା ଦାଢ଼ି ହେବ ନା କ'ଣ ?"

ପିତା କହିଲେ—"ହଁ, ପୁତ୍ର ! କାହିଁକି ବା ନ ହେବ ? କିନ୍ତୁ ଦିନକରେ ହେବନାହିଁ, ଧିରେ ଧିରେ ହେବ ।"

ପୁତ୍ର ପଚାରିଲା—"ପିତା ! ମୁଁ ଜାଣିପାରୁ ନାହିଁ ଯେ ମୋ ଶରୀରରେ କେତେକ ବ୍ୟତିକ୍ରମ ହୋଇଅଛି, ମୁଁ ଦୁର୍ବଳତା ଅନୁଭବ କରୁଛି, ମୁଁ ଅଙ୍ଗଗ୍ଳାନି ପରି ବୋଧ କରୁଛି । ମନରେ କିଛି ପରିବର୍ତ୍ତନ ଅନୁଭବ କରୁଛି ।"

ପିତା ଏହା ଶୁଣି ସ୍ନେହରେ କହିଲେ—"ତୁମେ ପଢ଼ାପଢ଼ିରେ ଶ୍ରମ କମ୍ କରୁଛ । ସର୍ବଦା ପାଠପଢ଼ାରେ ଲାଗ । ତ୍ରିକାଳ ସ୍ନାନ କର, ନିଦ୍ରା କମାଇ ଦିଅ । ଏହା ତୁମର ଏକ ପ୍ରକାରର ରୋଗ ଅଟେ ।"

ସରଳ ବାଳକଟି ଏ ସବୁ କଥା ମାନିନେଲା । ତାଙ୍କର ନିଜ ପିତାଙ୍କ ପ୍ରତି କଥା ଶୁଣିବାରେ ଅତ୍ୟନ୍ତ ଶ୍ରଦ୍ଧା ଥିଲା । ତାଙ୍କ ପାଇଁ ପିତା ହିଁ ସବୁକିଛି ଥିଲେ । ତେଣୁ ପିତା ଯାହା କହୁଥିଲେ ତାହା ବେଦବାକ୍ୟ ପରି ସେ ମାନୁଥିଲେ । ଏହି ପ୍ରକାର ସେହି ଋଷି ଘୋର ତପସ୍ୟାରେ ମଜ୍ଜି ରହିଲେ । ଯୁବାବସ୍ଥା ସହିତ ତାଙ୍କର ସାକ୍ଷାତ ପରିଚୟ ହେଲନାହିଁ ।

ଏଣେ ସେହି ବୃଦ୍ଧା ବେଶ୍ୟା ନିଜର ନୌକା ସଜାଇ ମହାମୁନି ବିଭାଣ୍ଡକଙ୍କ ଆଶ୍ରମ ଆଡ଼େ ଯାତ୍ରା କଲା । ଆଶ୍ରମ ମାତ୍ର ଦୁଇକୋଶ ଥାଇ ସେ ବାଟରେ ନୌକାକୁ ଏକ ପର୍ବତ କଡ଼ରେ ଲୁଚାଇ ବାନ୍ଧି ଦେଲା । ଏହାପରେ ଋଷିଆଡ଼େ ଗୁପ୍ତଚର ପଠାଇ ଅନୁସନ୍ଧାନରେ ଲାଗିଗଲା । ସେ ପ୍ରତ୍ୟେକ ମୁନି ଋଷିଙ୍କର ଗତିବିଧି ଅନୁସନ୍ଧାନ କଲା । ସେ ମୁନିଙ୍କର ଦୈନନ୍ଦିନ କୃତ୍ୟ ସବୁ କ୍ରମେ ଲକ୍ଷ୍ୟ କରି ଜାଣିନେଲା । ମୁନିଗଣ କେତେବେଳେ କୁଶ ସମିଧ ଆଣିବାକୁ ଯାଆନ୍ତି, କେତେବେଳେ ଫେରନ୍ତି; ଏ ସବୁ ଜାଣି ସେ ନିଜର କୌଶଳ ଜାଲ ବିସ୍ତାରିଲା । ସେ ଜାଣି ପାରିଲା ଯେ ପ୍ରତ୍ୟେକ ଚତୁର୍ଦ୍ଦଶୀ ଦିନ ମୁନି ମଧ୍ୟାହ୍ନ କୃତ୍ୟ ସାରି ବାହାରକୁ ଚାଲି ଯାଆନ୍ତି ଓ ସୂର୍ଯ୍ୟାସ୍ତ ସମୟକୁ ଆଶ୍ରମକୁ ଫେରିଆସନ୍ତି । କାରଣ ଅମାବାସ୍ୟା ଓ ପୂର୍ଣ୍ଣିମାକୁ ଦେବପୌର୍ଣ୍ଣ-ମାସ୍ୟ ଯଜ୍ଞ କରିବାକୁ ହୁଏ । ସେ ଏଥିପାଇଁ ଅତି ସୁନ୍ଦର ସମିଧ ଦୂରରୁ ଆଣି ଥାଆନ୍ତି । ଠିକ୍ ସେହିଦିନ ସେ ଋଷ୍ୟଶୃଙ୍ଗଙ୍କୁ ଭୁଲେଇ ନିଜ ଉଦ୍ଦେଶ୍ୟ ସଫଳ କରିବା ପାଇଁ ଦୃଢ଼ନିଶ୍ଚିତ ହେଲା ।

କ୍ରମେ ଶୁକ୍ଳପକ୍ଷର ଚତୁର୍ଦ୍ଦଶୀ ତିଥି ସମାଗତ ହେଲା । ସେ ଏକଗୁପ୍ତ ସ୍ଥାନରେ ନିଜ କନ୍ୟା ସହିତ ଲୁଚି ରହିଲା । ମୁନି ବିଭାଣ୍ଡକ ଯେତେବେଳେ ମଧ୍ୟାହ୍ନ କୃତ୍ୟ ସାରି ପ୍ରସାଦ ସେବନ କରି କୁଶ ନେଇ ବାହାରକୁ ଚାଲିଗଲେ, ସେତେବେଳେ ସେ ନିଜର ପରମ ସୁନ୍ଦରୀ କନ୍ୟାକୁ ଭଲ କରି ବେଶ କରି ସଜାଇ ଷୋଡ଼ଶ ଶୃଙ୍ଗାର କରି ମୁନିପୁତ୍ର ଋଷ୍ୟଶୃଙ୍ଗଙ୍କ ନିକଟକୁ ପଠାଇଲା ।

ସେହି ବେଶ୍ୟା କନ୍ୟା ମଧ୍ୟ ଯୁବାବସ୍ଥାରେ ଏବେ ପଦାର୍ପଣ କରିଥାଏ । ଯୌବନ ମଦରେ ମତୁଆଲି ସେହି କନ୍ୟା ମନ୍ଦ ମନ୍ଦ ଗତିରେ ଯାଇ ମୁନି ପୁତ୍ରଙ୍କ ପାଖରେ ପହଞ୍ଚିଲା । ମୁନିପୁତ୍ର ଏକ କୁଶାସନ ଉପରେ ବସି କରି ବସିଥାଇ ବେଦାଧ୍ୟୟନ କରୁଥିବା ସମୟରେ ଏହି ବେଶ୍ୟାକନ୍ୟା ଝମ୍ ଝମ୍ ଶବ୍ଦ କରି ଯାଇ ତାଙ୍କ ସମ୍ମୁଖରେ ଠିଆ ହେଲା । ତାହାର ବହୁମୂଲ୍ୟ ବସ୍ତ୍ରରୁ ସୁଗନ୍ଧ ଭାସି ଆସୁଥାଏ । ସୁଗନ୍ଧିତ ପୁଷ୍ପର ମାଳା ସେ ପିନ୍ଧିଥାଏ । କେଶରେ ସୁଗନ୍ଧିତ ତେଲ ଲଗାଇ ଥାଏ । ବସ୍ତ୍ରରେ ଓ ଅଙ୍ଗରେ ଅତର ଲଗାଇ ଥାଏ । ତାକୁ ଦେଖି ମୁନି କୁମାର ସହସା ଉଠି ଠିଆ ହେଲେ । ତାହାର ମୁଖମଣ୍ଡଳ ଝଲକି ଉଠୁଥିଲା । କାନର କୁଣ୍ଡଳ କପାଳର ଦୁଇ

ପାର୍ଶ୍ୱକୁ ଦୋଳାୟମାନ ହେଉଥିଲା । ତାହାର ପ୍ରକାଶରେ କନ୍ୟାର ସୌନ୍ଦର୍ଯ୍ୟ ଝରି ପଡୁଥିଲା । ଋଷ୍ୟଶୃଙ୍ଗ ତାକୁ ଦେଖି ମନ୍ତ୍ରମୁଗ୍ଧ ହୋଇ ରହିଗଲେ । ଏ ପ୍ରକାର ମୁନି ସେ ଆଜି ପର୍ଯ୍ୟନ୍ତ ଦର୍ଶନ କରି ନ ଥିଲେ । ସେ ବୁଝିପାରିଲେ, ଏ ହେଉଛନ୍ତି କୌଣସି ମହାନ୍ ବ୍ରତଧାରୀ ଅତି ଉଚ୍ଚକୋଟିର ମୁନି । ତେଣୁ ସେ ନିଜର ସଦାଚାରର ଅନୁସାରେ ସେହି (ବେଶ୍ୟା କନ୍ୟାରୂପୀ) ମୁନିଙ୍କୁ ଅଭ୍ୟର୍ଥନା କଲେ ଓ କହିଲେ—"ହେ ମୁନିବର ! ଆପଣଙ୍କର ତପ ତେଜରେ ମୁଁ ଆପଣଙ୍କୁ ମୋ ଠାରୁ ଶ୍ରେଷ୍ଠ ବିବେଚନା କରୁଛି । ତେଣୁ ମୁଁ ଆପଣଙ୍କୁ ପ୍ରଣାମ କରୁଛି । ଏହି ଗଙ୍ଗାଜଳ ନିଅନ୍ତୁ, ଏହା ସୁନ୍ଦର, ସ୍ୱଚ୍ଛ ଓ ନିର୍ମଳ ଅଟେ । ଏଥିରେ ଉଶୀର (ଖସ) ମଧ୍ୟ ପଡ଼ି ଅଛି । ଆପଣ ଏଥିରେ ନିଜର ଚରଣ ପ୍ରକ୍ଷାଳନ କରନ୍ତୁ । ଏହା ଅଷ୍ଟଧାତୁ ନିର୍ମିତ ଅର୍ଘ ପାତ୍ର, ଏହା ମଧ୍ୟ ଆପଣ ଗ୍ରହଣ କରନ୍ତୁ । ଏହି ସୁନ୍ଦର ବଲ୍‌କଲ ବସ୍ତ୍ରରେ ଆବୃତ୍ତ ମୃଗଛାଲ ଉପରେ ବିରାଜମାନ କରନ୍ତୁ । ବନର ଏହି ସୁମିଷ୍ଟ ଫଳ ଗ୍ରହଣ କରନ୍ତୁ ।"

ଏହାଶୁଣି ସେହି ବେଶ୍ୟାକନ୍ୟା କହିଲା—"ବ୍ରହ୍ମନ୍ ! ମୁଁ କାହାର ନମସ୍କାର ଗ୍ରହଣ କରେନାହିଁ । ଆପଣଙ୍କ ପାଦ୍ୟ ଅର୍ଘ୍ୟକୁ ବି ଗ୍ରହଣ କରିବି ନାହିଁ । ବନର ଏ ଫଳ ମୋର ଆବଶ୍ୟକ ନାହିଁ । ଏ ସମସ୍ତ ମୁଁ ଦୂରକୁ ଫିଙ୍ଗି ଦିଏ । ମୋତେ ଦେଇଥିବା ଫଳକୁ ଆପଣ ଖାଇ ନିଅନ୍ତୁ ଓ ମୁଁ ଆଣିଥିବା ପେୟକୁ ପାନ କରନ୍ତୁ । ମୁଁ କାହାର ନମସ୍କାରକୁ ଏପରି ଗ୍ରହଣ କରେନାହିଁ । ମୁଁ ବ୍ରତ କରିଛି, ମୁଁ ସମସ୍ତଙ୍କୁ ଆଲିଙ୍ଗନ କରିବି । ଏଣୁ ଆପଣ ଆସନ୍ତୁ, ମୁଁ ଆପଣଙ୍କୁ ଟିକିଏ ଆଲିଙ୍ଗନ କରେଁ ।"

ସରଳ ଋଷିକୁମାର କ'ଣ ଜାଣିଥିଲେ ଯେ, ଏହାର ଆଲିଙ୍ଗନରେ ହଳାହଳ ବିଷ ଭରି ରହିଛି । ସରଳ ସ୍ୱଭାବରେ ସେ ତା' ଛାତିକୁ ଆଉଜି ପଡ଼ିଲେ । ସେହି ବାରବନିତା ମୁନିକୁମାରଙ୍କୁ ବାରମ୍ବାର ଗାଢ଼ ଆଲିଙ୍ଗନ କଲା । ମୁନିକୁମାରଙ୍କ ସମଗ୍ର ଶରୀରରେ ବିଦ୍ୟୁତ୍ ଖେଳିଗଲା । ସେ ଆତ୍ମବିସ୍ମୃତ ହୋଇ ପଡ଼ିଲେ । ଏହାପରେ ସେହି ବେଶ୍ୟାକନ୍ୟା ତାଙ୍କ ମୁହଁକୁ ନିଜ ମୁଖ ଆଡ଼କୁ ଟାଣି ଆଣି ବାରମ୍ବାର ଚୁମ୍ବନ ଦେଲା । ତାହାର ସୁଖଦ ସ୍ପର୍ଶ ଓ ଶରୀରର ଦିବ୍ୟ ଗନ୍ଧରେ ମୁନିପୁତ୍ରଙ୍କର ଚେତନା ନଷ୍ଟ ହୋଇଗଲା । ସେ ବୁଝିପାରିଲେ ନାହିଁ ଯେ, ଏହା କି ଯାଦୁ (କୁହୁକ) । ଏହାପରେ ସେ ମୁନି କୁମାରଙ୍କୁ ନିଜ ଝୋଲାରୁ କାଢ଼ି ରସଗୋଲା ଖାଇବାକୁ ଦେଲା । ଏ ପର୍ଯ୍ୟନ୍ତ ସେ ବନର ସ୍ୱାଦିଷ୍ଟ ଓ କଷା ପିତା ଫଳମୂଳ ଖାଇ ଜୀବନଧାରଣ କରୁଥିଲେ । ଏବେ ସେହି ସୁନ୍ଦର ସ୍ୱାଦିଷ୍ଟ ସୁଗନ୍ଧଯୁକ୍ତ ରସୁଆଳ ଗୋଲ ଗୋଲ ରସଗୋଲାଗୁଡ଼ିକୁ ଖାଇ ସେ ଆଶ୍ଚର୍ଯ୍ୟ ହୋଇଗଲେ । ସେତିକରେ ତାଙ୍କର ତୃପ୍ତି ହେଲନାହିଁ । ପୁନଶ୍ଚ ସେହି ବେଶ୍ୟାକନ୍ୟା ତାଙ୍କୁ ଗୋଲାପଜାମୁ, ରସଗୋଲା ଖୁଆଇ ଅଳ୍ପ ସୁଗନ୍ଧିତ ଦ୍ରବ୍ୟ ମିଶ୍ରିତ ସୁରା ପାନ କରାଇଲା । ତାହା କରିବାକ୍ଷଣି ମୁନିପୁତ୍ରଙ୍କର

ମୁଣ୍ଡ ଧରିଗଲା, ତାଙ୍କୁ ନିଶା ଲାଗିଲା, ଆଖି ଢଳ ଢଳ ହେଲା । ଏବେ ସେ ସେହି ବେଶ୍ୟାକନ୍ୟାକୁ ବାରମ୍ବାର ନିରେଖି ଚାହିଁବାକୁ ଲାଗିଲେ । ଏହାପରେ ସେହି ବେଶ୍ୟାକନ୍ୟା ନିଜ ବସ୍ତ୍ରରୁ କନ୍ଦୁକ ବାହାର କଲା । ପାଦର ନୂପୁରକୁ ବଜାଇ ବଜାଇ ସେ କନ୍ଦୁକ ଖେଳ ଆରମ୍ଭ କରିଦେଲା । ଦୌଡ଼ି ଦୌଡ଼ି ଯାଇ ପୁଣି ତାହା ନେଇ ଆସିଲା । ସେ ଋଷ୍ୟଶୃଙ୍ଗଙ୍କୁ କହିଲା—"ଆପଣ ମଧ୍ୟ ଏହାକୁ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ ନିଜ ହାତରେ ପକାଇ ଧରି ନିଅନ୍ତୁ ।"

ମୁନିପୁତ୍ର କେବେହେଲେ କନ୍ଦୁକ ଦେଖି ନ ଥିଲେ । ସେ ତାହାର କଥା ଅନୁସାରେ ତା' ପଛରେ ଦୌଡ଼ିଲେ । ସେ ଅବସର ପାଇ ତାଙ୍କୁ ଆଲିଙ୍ଗନ କରି ନେଉଥିଲା । ଏହା ମୁନିପୁତ୍ରଙ୍କୁ ଅତ୍ୟନ୍ତ ସୁଖ ପ୍ରଦତ୍ତ ହେଲା । ସେ ବାରମ୍ବାର ସେହିପରି ଆଲିଙ୍ଗନ ଚାହିଁଲେ । ଏହିପରି ଭାବରେ ସେ ସେହି ବେଶ୍ୟାକନ୍ୟା ସହିତ ଅନେକ ସମୟ ପର୍ଯ୍ୟନ୍ତ କନ୍ଦୁକ କ୍ରୀଡ଼ାରେ ରତ ରହିଲେ । କନ୍ଦୁକ ଖେଳୁଥିବା ସମୟରେ ତା' ବେଣୀ ଅଗରେ ବନ୍ଧା ହୋଇ ଝୁଲୁଥିବା ଅତି ସୁନ୍ଦର ସୁବାସିତ ଫୁଲଗୁଡ଼ିକ ତଳେ ଛିଣ୍ଡି ପଡ଼ିଲା । ଏହାପରେ ସେ ପୁଣି ମୁନି କୁମାରଙ୍କୁ ଗୀତ ଶୁଣାଇଲା, ନୃତ୍ୟ ଦେଖାଇଲା ଓ ମୁନିଙ୍କ ଆସିବା ସମୟ ହୋଇ ଯାଇଥିବା ଜାଣି ତାଙ୍କୁ କହିଲା—"ହେ ମୁନିକୁମାର ! ମୋତେ ବର୍ତ୍ତମାନ ଯିବାକୁ ଅନୁମତି ଦିଅନ୍ତୁ । ବହୁତ ଡେରି ହୋଇଗଲାଣି । ମୁଁ ମୋ ନିଜ ଆଶ୍ରମକୁ ଫେରିଯିବି ।"

ମୁନିକୁମାର ବିବଶତା ସ୍ୱରରେ କହିଲେ—"ତୁମକୁ ଛାଡ଼ି ମୁଁ କିପରି ରହି ପାରିବି ? ମୋତେ ମଧ୍ୟ ତୁମ ସଙ୍ଗେ ନେଇଚାଲ । ତୁମ ଆଶ୍ରମକୁ ମୁଁ ଯିବି । ତୁମ ଆଶ୍ରମ କେଉଁଠି ?

ବେଶ୍ୟାକନ୍ୟା କହିଲା—" ଆଶ୍ରମ ଏଠାରୁ ଅନେକ ଦୂର । ବର୍ତ୍ତମାନ ମୋତେ ସନ୍ଧ୍ୟାବନ୍ଦନା ଆଦି ସାୟଂକାଳୀନ କୃତ୍ୟ କରିବାକୁ ହେବ । ମୁଁ ଆଉ ଥରେ କେବେ ଆସିଲେ ତୁମକୁ ମୋ ଆଶ୍ରମ ଦେଖାଇବାକୁ ନେଇଯିବି । ଆଜି ମୋର ବହୁତ କାର୍ଯ୍ୟ ଅଛି ।" ଏହା କହି ସେ ଝୁମ ଝୁମ୍ ଶବ୍ଦ କରି ବାରମ୍ବାର ମୁନି ପୁତ୍ର ଆଡ଼କୁ ଚାହିଁ ଚାହିଁ ଚାଲିଗଲା ।

ସୂତ କହିଲେ—"ମୁନିଗଣ ! ଯେ ପର୍ଯ୍ୟନ୍ତ ସେହି ବେଶ୍ୟା ଦୃଷ୍ଟିଗୋଚର ହେଉଥିଲା, ସେ ପର୍ଯ୍ୟନ୍ତ ମୁନିପୁତ୍ର ଏକା ଧ୍ୟାନରେ ସେହିଠାରେ ଚିତ୍ରପ୍ରତିମା ପରି ଠିଆ ହୋଇ ତା' ଆଡ଼େ ଚାହିଁ ରହିଥିଲେ । ସେ ଯେତେବେଳେ ତାଙ୍କ ଦୃଷ୍ଟିର ଅନ୍ତରାଳ ହୋଇଗଲା, ସେତେବେଳେ ସେ ବାତଚକ୍ରପରି ପଛକୁ ଢଳି ପଡ଼ିଲେ । ଏବେ ସେ ମୂର୍ଚ୍ଛିତ ପ୍ରାୟ । ସୁରା ନିଶାରେ ତାଙ୍କ ନେତ୍ର ରକ୍ତାଭ ଓ ହୃଦୟ ସ୍ପନ୍ଦିତ

ଯେତେ ଯେପରି ତାଙ୍କ ହୃଦୟକୁ କେହି ବିଦାରଣ କରୁଛି । କିଛି ସମୟ ପରେ ମୁନିକୁମାରଙ୍କର ଚେତା ଫେରିଲା । ସେ ଉଠି ବସି ପଡ଼ିଲେ । ତାଙ୍କୁ ସାରା ସଂସାର ଶୂନ୍ୟ ପରି ବୋଧ ହେଲା । ପୃଥିବୀ ଘୂରୁଥିବା ପରି ତାଙ୍କୁ ପ୍ରତୀତ ହେବାକୁ ଲାଗିଲା । ତାଙ୍କର ଏପରି ଅବସ୍ଥା ଦେଖି ଚତୁର୍ଦ୍ଦଶୀର ଚନ୍ଦ୍ର ଆକାଶରେ ହସି ଉଠିଲେ । ଯୁବମୁନିଙ୍କର ହୃଦୟତନ୍ତ୍ରୀର ତାର ସେହି ବେଶ୍ୟାର ବିଚ୍ଛେଦ ବେଦନାରେ ଝଂକୃତ ହୋଇ ଉଠିଲା । ସେ ସଂଧ୍ୟା, ବନ୍ଦନା, ବେଦପାଠ, ଗୋ-ଦୋହନ ସବୁକିଛି ଭୁଲି ବଡ଼ ପାଗଳଙ୍କ ଭଳି ନିର୍ନିମେଷ ନୟନରେ ଆକାଶକୁ ଚାହିଁ ରହିଲେ । ତାଙ୍କ ନେତ୍ରରୁ ଅଶ୍ରୁଧାର ବହିବାକୁ ଲାଗିଲା । ସେ ସେହି ବେଶ୍ୟା କନ୍ୟାର ମନୋମୟୀ ମୂର୍ତ୍ତି ସହିତ ବାର୍ତ୍ତାଳାପ କରିବାକୁ ଲାଗିଲେ । ତା' ହୃଦୟ ମନ୍ଦିରରେ ବସି ତାକୁ ହିଁ ଧ୍ୟାନ କରିବାକୁ ଲାଗିଲେ ।

## ଛପ୍‌ପୟ

ବୀର୍ଯ୍ୟ ବିଭାଣ୍ଡକ ପାନ ନୀର ସଁଗ ହରିଣୀ କୀଓୟୋ ।
ଜନେମ୍ୟା ଶୃଙ୍ଗ ସିର ପୁତ୍ର ନାମ ଶୃଙ୍ଗୀ ଧରି ଦୀୟୋ ॥
ବିଷୟନ ତେଁ ଅନଭିଜ୍ଞ ବୃତ୍ତି ତପ ମାଁହିଁ ଲଗାଈ ।
ନାରି ନ କବହୁଁ ଲଖୀ କରନ ଛଲ ବେଶ୍ୟା ଆଈ ॥
ପରମ ସୁନ୍ଦରୀ ଷୋଡ଼ଶୀ, ଲଖି, ସମୁଝେ ମୁନି ତପୋଧନ ।
ଆଲିଙ୍ଗନ ଛଲ ତେଁ କରେୟା, ମୋହିତ ମୁନି କୋ କରେୟା ମନ ॥



—

# ମୁନି ଋଷ୍ୟଶୃଙ୍ଗ ଫାନ୍ଦରେ ପଡ଼ିଲେ

ନାଟ୍ୟ ସଂଗୀତବାଦିତ୍ରୈର୍ବିଭ୍ରମାଲିଙ୍ଗନାର୍ହଣୈଃ ।
ସ ତୁ ରାଜ୍ଞୋଽନପତ୍ୟସ୍ୟ ନିରୂପେଷ୍ଟିଂ ମରୁତ୍ୱତଃ ।।

(ଶ୍ରୀ ଭା ୯ ସ୍କ ୨୩ଶ ଅ ୯ ଶ୍ଳୋ)

## ଛପ୍ପୟ

ଅତ ଚେଷ୍ଟରେ ସବ ବାତ କପଟ ବନ୍ ପିତୁହିଁ ବତାଇ ।
ସମ୍ପୂଝି ଗୟୋ ମୁନି ୟୁହଁ କାମିନୀ କୁଳଟା ଆଇ ।।
ସୁତ ସମୁଝାଓ-ବସ୍ତ୍ର ! ନ ମୁନି ଖେଲ ତୋହି ଭୁଲୟୋ ।
ଅବ କହୟୋ ମତ ବାତ ଅସୁର ମାୟା କର ଆୟୋ ।।
ପିତୁ ଅଶ୍ରୁ ମାନୀ ନହିଂ, ଦଶା ଅନୌଂଖି-ସୀ ଭଇ ।
ଘାୟଲ କର ଶର ନୈଂନ ତେଂ, ଠଗିନୀ ଠଗି କୈ ଲେ ଗଇ ।।

ଶୀଲ, ସଙ୍କୋଚ, ଲଜ୍ଜା, ବିନୟ ଆଦି ସଦ୍‌ଗୁଣ ଯେ ପର୍ଯ୍ୟନ୍ତ ରହିଥାଏ, ସେ ପର୍ଯ୍ୟନ୍ତ ଚିତ୍ତକୁ କୌଣସି ବକ୍ରତା ବା କୁଟିଳତା ହରଣ କରି ନ ଥାଏ ଓ ସେ ପର୍ଯ୍ୟନ୍ତ ଭ୍ରୂକୁଟିରୂପୀ ବାଣଦ୍ୱାରା କୌଣସି କାମିନୀ କଟାକ୍ଷ ରୂପକ ଶର ଦ୍ୱାରା ଯୁବକର ହୃଦୟକୁ ବିଦ୍ଧ ନ କରିଥାଏ । ମନରେ ଯେତେବେଳେ କାମବୀଜ ଅଙ୍କୁରିତ ହୁଏ, ସେତେବେଳେ ବ୍ୟବହାରରେ କପଟତା ଦେଖାଦିଏ । ଗୁରୁଜନମାନଙ୍କ ପ୍ରତି ଭକ୍ତି ଓ ଆଦର ଭାବ କମିଯାଏ । ଭାବ ରାଜ୍ୟରେ ଗୋପନ ପ୍ରବୃତ୍ତି ବଢ଼ିଯାଏ । ମନ ଅନ୍ୟାନ୍ୟ ଚିନ୍ତନୀୟ ବସ୍ତୁକୁ ଛାଡ଼ି, ସେହି ସୁନ୍ଦର ବସ୍ତୁକୁ ସର୍ବଦା ମନନ କରେ । ଭଗବାନଙ୍କର ମନମୋହିନୀ ମଧୁର ମୂର୍ତ୍ତିକୁ ଆମ୍ଭେମାନେ ନିତ୍ୟ ଧ୍ୟାନ କରୁଥାଉଁ । ଶ୍ରଦ୍ଧାପୂର୍ବକ ସେଥିରେ ମନୋନିବେଶ କରୁଥାଏ । ସର୍ବଦା ତାଙ୍କର ସାନ୍ନିଧ୍ୟ ଲାଭ

କରିବାପାଇଁ ଚେଷ୍ଟା କରୁଥାଉ । ନଖଠାରୁ ଶିଖାଗ୍ର ପର୍ଯ୍ୟନ୍ତ ଓ ଶିଖାଗ୍ରଠାରୁ ପାଦ ପର୍ଯ୍ୟନ୍ତ ମନଯୋଗ ପୂର୍ବକ ତାଙ୍କର ଚିନ୍ତନ କରୁଥାଉଁ । ତଥାପି ତାଙ୍କୁ ମନରେ ସମ୍ପୂର୍ଣ୍ଣରୂପେ ମନନ କରିପାରୁ ନାହିଁ । ସ୍ୱପ୍ନରେ ମଧ୍ୟ କେବେହେଲେ ତାଙ୍କୁ ଦେଖିପାରୁ ନାହିଁ । କିନ୍ତୁ ଏହାର ବିପରୀତ କୌଣସି ସୁନ୍ଦରୀ କାମିନୀକୁ ଆମେ ସହଜରେ ଦେଖିପାରୁ । ଦେଖିକରି ଯଦି ତା'ଠାରୁ ଦୃଷ୍ଟି ଫେରାଇ ନେଉ, ତେବେ ଚକ୍ଷୁର ପଲକ ମାତ୍ରେ ସେହି ରୂପ ଆମ ମନରାଜ୍ୟକୁ ଅଧିକାର କରିନିଏ । ଆମେ ଯେତେ ସେ ରୂପକୁ ଭୁଲି ଯିବାକୁ ପ୍ରଯତ୍ନ କରୁ, ତାହା ଯେତେ ଅଧିକ ଆମ ସ୍ମୃତିପଟକୁ ଆସିଥାଏ । ଭଗବାନଙ୍କର ଭୁବନମୋହିନୀ ମାୟାର ଏହା ହିଁ ପ୍ରଭାବ । ଏହା ହିଁ ସଂସାରକୁ ସୃଜନ କରୁଥିବା ତାଙ୍କର ପ୍ରକୃତି, ମାୟା ଅଥବା ଅବିଦ୍ୟା ଅଟେ ! ଜୀବ ଭାବିପାରେ ନାହିଁ ଯେ, ଜଡ଼ରୂପୀ ମିଥ୍ୟା ମାୟାର ଯେତେବେଳେ ଏତେ ଅଧିକ ଆକର୍ଷଣ, ସେତେବେଳେ ଏହା ସହଜରେ ଅନୁମେୟ ଯେ, ସେହି ମାୟାପତିଙ୍କର ଆକର୍ଷଣ କେତେ ବଳବତ୍ତର ହୋଇଥିବ । ଯେତେବେଳେ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଏତେ ମାଦକତା ଭରି ରହିଛି, ଏହା ନିଶ୍ଚିତ ଯେ, ସେତେବେଳେ ପ୍ରକୃତିର ଊର୍ଦ୍ଧ୍ୱରେ ଥିବା ସେହି ପରମପୁରୁଷଙ୍କର ସୌନ୍ଦର୍ଯ୍ୟରେ କେତେ ମୋହକତା ଭରି ରହି ନ ଥିବ ? କିନ୍ତୁ ଏହା ଜାଣିବାର ଯୋଗ୍ୟତା ଆମର କାହିଁ ? ଏହି ଯୋଗ୍ୟତା ମଧ୍ୟ ତାଙ୍କର କୃପା ନ ହେଲେ ସହଜରେ ଲାଭ ହୋଇପାରେ ନାହିଁ ।

ସୂତ କହିଲେ—"ମୁନିଗଣ ! ବେଶ୍ୟା ଫେରି ଯିବାର କିଛି ସମୟ ପରେ ମହାମୁନି ବିଭାଣ୍ଡକ ସମିଧର ବିଡ଼ା ଶିରରେ ବହନ କରି, ହାତରେ କୁଶ, ଫୁଲ, ଫଳ ଧରି ଆଶ୍ରମକୁ ଫେରିଆସିଲେ । ଆଜି ସେ ଦେଖିବାକୁ ପାଇଲେ ଯେ, ତାଙ୍କ ପୁତ୍ର ପୂର୍ବଦିନ ଭଳି ତାଙ୍କର ସମ୍ମାନ କରୁନାହିଁ । ଧାଇଁ ଆସି ତାଙ୍କ ମୁଣ୍ଡରୁ ସମିଧର ବୋଝ ଓହ୍ଲାଇ ନେଉନାହିଁ । ପାଦ ଧୋଇବା ପାଇଁ କମଣ୍ଡଳୁରେ ଜଳ ଭରି ଆଣୁନାହିଁ । ସେ ତାଙ୍କୁ ଦେଖିକରି ବି ଉଠି ଆସୁନାହିଁ । ସେ ଜାଣି ପାରୁନାହିଁ ଯେ ମୁନି ଆଶ୍ରମରେ କେତେବେଳୁ ପଦାର୍ପଣ କଲେଣି । ଏହାଦେଖି ବିଭାଣ୍ଡକ ଚକିତ ହୋଇଗଲେ । ଆଜି ତାଙ୍କ ପୁତ୍ରର ଏ ବ୍ୟତିକ୍ରମ କାହିଁକି ? ତା'ର ଏପରି ବିଚିତ୍ର ଦଶାର କାରଣ କ'ଣ ? ପୂର୍ବରୁ ତ ସେ କେବେ ଋଷ୍ୟଶୃଙ୍ଗଙ୍କୁ ଏପରି ଦଶାରେ ଦେଖି ନାହାନ୍ତି ? ସେ ଏକାକୀ ହୋଇ ଶୂନ୍ୟ ଆଶ୍ରମରେ ବସି ଆଜି ସେହି ମନମୋହିନୀ ବେଶ୍ୟାକନ୍ୟାର ମୂର୍ତ୍ତିକୁ ତନ୍ମୟ ହୋଇ ଧ୍ୟାନ କରୁଛନ୍ତି । ବିଚ୍ଛେଦ, ବିବଶତା, ବିକଳତା ଓ ବ୍ୟାକୁଳତା କାରଣରୁ ମଝିରେ ମଝିରେ ସେ ଉଷ୍ମ ଦୀର୍ଘ ନିଶ୍ୱାସ ଛାଡ଼ୁଛନ୍ତି । ତାଙ୍କ ଅଖି ଉଦ୍ଭ୍ରାନ୍ତ । ସେ ଅପଲକ ନେତ୍ରରେ ଶୂନ୍ୟ ଆକାଶକୁ ଚାହିଁ ରହିଛନ୍ତି । ଦେଖିଲେ ଜଣା ପଡୁଛି ସତେ ଯେପରି ସେ ତ୍ରାଟକ ଯୋଗରେ ଆକାଶକୁ

ଚୁହିଁ ରହିଛନ୍ତି । ତାଙ୍କ ମନ ଦୂଷିତ ହୋଇଯାଇ ଥାଏ । ନିଜ ପୁତ୍ରକୁ ଏପରି ଅବସ୍ଥାରେ ଦେଖି ମୁନି ସମିଧ ବୋଝାକୁ ମୁଣ୍ଡରୁ ଓହ୍ଲାଇ ରଖିଦେଲେ ଓ ଋଷ୍ୟଶୃଙ୍ଗଙ୍କ ନିକଟକୁ ଯାଇ କହିଲେ—"ବତ୍ସ ! ଆଜି ତୋର ଅବସ୍ଥା ଏପରି କାହିଁକି ? ଏତେବେଳଯାଏ ତୁ ସାୟଂକାଳୀନ ସନ୍ଧ୍ୟା ଓ ଅଗ୍ନିହୋତ୍ର କରିନାହୁଁ କାହିଁକି ? ଏ ସ୍ରୁବ ଓ ସ୍ରୁଚ ତ ଏ ପର୍ଯ୍ୟନ୍ତ ଧୁଆ ନ ହୋଇ ପଡ଼ି ରହିଛି । ଯଜ୍ଞଶାଳାର ସମସ୍ତ ବସ୍ତୁ ଇତଃସ୍ତତ ପଡ଼ିଛି । ଏ ଆସନ ଓ ମୃଗଚର୍ମ ଉଠାହୋଇ ନାହିଁ । ଏପର୍ଯ୍ୟନ୍ତ ତୁ ବାଛୁରୀକୁ ଦୁଧ ପିଆଇ ନାହୁଁ କିମ୍ବା ଦୁଧ ଦୁହିଁ ନାହୁଁ ! ତୋ ଆଖି କାହିଁକି ଲାଲ ପଡ଼ିଛି ? ତୋ ବଲ୍‌କଲ ବସ୍ତ୍ରରେ ଧୂଳି କାହିଁକି ଲାଗିଛି ? ଆଜି ତୋର ଏପରି ବିସ୍ମୟାସ୍ପଦ ଅବସ୍ଥା କାହିଁକି ? ତୁ ଆଜି କାହିଁକି ଏତେ ଅନ୍ୟମନସ୍କ ହୋଇ ପଡ଼ିଛୁ ? ଏଥିପୂର୍ବରୁ ତ କେବେହେଲେ ମୁଁ ତୋତେ ଏପରି ବିସ୍ମୟାସ୍ପଦ ଅବସ୍ଥାରେ ଦେଖିନାହିଁ ? ତୁ ମୋ ଆଗରେ ତୋର ଦୁଃଖ ଓ ଚିନ୍ତାର କାରଣ ଶୀଘ୍ର କହ ।"

ମୁନିଙ୍କର ଏହି ପ୍ରଶ୍ନ ଶୁଣି ଋଷ୍ୟଶୃଙ୍ଗ ଉଠିପଡ଼ି ନିଜର ପୂଜନୀୟ ପିତାଙ୍କୁ ପ୍ରଣାମ କଲି । ସେ ସ୍ୱଭାବତଃ ଅତି ସରଳ ଥିଲି । ଛନ୍ଦ, କପଟ, ଦୁରଭିସନ୍ଧି, ଛଳନା ଓ କୌଣସି କଥା ଗୋପନ ରଖିବାକୁ ସେ ତ ଶିଖି ନ ଥିଲି । ଏସବୁ ତ ନଗର ସଭ୍ୟତାର ଶ୍ରେଷ୍ଠ ବସ୍ତୁ ଓ ନଗର ସଭ୍ୟତା ଉନ୍ନତିର ବିଶେଷ୍ୟବସ୍ତୁ ରୂପେ ଆଜି ଗ୍ରହଣ କରାଯାଉଛି । ସରଳତାରେ ବନ ମଧ୍ୟରେ ଆଶ୍ରମ ଜୀବନଯାପନ କରୁଥିବା ଶାନ୍ତଶିଷ୍ଟ ମୁନିକୁମାରଙ୍କଠାରେ ଏ ସବୁର ଗନ୍ଧ ବି ନ ଥିଲି । ଏଣୁ ମୁନି ପଚାରିବାରୁ ଋଷ୍ୟଶୃଙ୍ଗ ସରଳତାରେ ତାଙ୍କୁ କହିଲେ—"ପିତା ! ମୁଁ କ'ଣ ବା ଆପଣଙ୍କୁ କହିବି ? ଆପଣ ଆଶ୍ରମରୁ ଚାଲିଯିବା ସଙ୍ଗେ ସଙ୍ଗେ ଜଣେ ଅତି ତେଜସ୍ୱୀ, ତପସ୍ୱୀ ମୁନି ଏଠାରେ ପଦାର୍ପଣ କଲେ । ପିତା ! ଆଜି ପର୍ଯ୍ୟନ୍ତ ଏତେ ପ୍ରଭାବାନ ତପୋଧନଙ୍କର ଦର୍ଶନ ମୁଁ କେବେହେଲେ କରି ନ ଥିଲି । ତାଙ୍କର ସମସ୍ତ କଥା ବଚନ ଓ ଆକର୍ଷକ ଥିଲି । ତାଙ୍କର ବେଶ ଆମ ମୁନିମାନଙ୍କ ବେଶଠାରୁ ସମ୍ପୂର୍ଣ୍ଣ ପୃଥକ୍ ଥିଲି । ତାଙ୍କ ଜଟା ଖୁବ୍ ବଡ଼ ବଡ଼ ଥିଲି । ତାହା ପଛପଟକୁ ଦୁଇ ଫାଙ୍କରେ ଛନ୍ଦପଡ଼ି ଲଟକି ଥିଲି । ତାହା ଆମ୍ଭମାନଙ୍କ ଜଟାଭଳି ରୁକ୍ଷ ଓ ଶୁଷ୍କ ନ ଥିଲି । ତାହା ଅତି ଚିକ୍କଣ ଓ ସୁନ୍ଦର ଥିଲି । ତହିଁରେ ସର୍ବଦା ଦିବ୍ୟ ସୁଗନ୍ଧ ବାହାରୁ ଥିଲା ଓ ତହିଁରେ ବିଚିତ୍ର ରଙ୍ଗ ବେରଙ୍ଗ ପୁଷ୍ପ ଗୁନ୍ଥା ଯାଇଥିଲି । ସମ୍ମୁଖରେ କେତେକ ପୁଷ୍ପ ପଡ଼ିଛି ଦେଖନ୍ତୁ । ତାହା ସେହି ତପୋଧନ ମୁନିଙ୍କ ଜଟାରୁ ଖସି ପଡ଼ିଛି । ତାଙ୍କର ମସ୍ତକ ବର୍ତ୍ତୁଳ ଓ ଆକର୍ଷକ । ଆମ୍ଭେମାନେ ଯେପରି ଭସ୍ମର ତିଳକ ଧାରଣ କରୁଁ, ତାଙ୍କ ତିଳକ ସେପରି ନ ଥିଲି । ସେ ଏକ ନୀଳରଙ୍ଗର ଟୋପା ମୁଣ୍ଡରେ ଲଗାଇଥିଲେ । ତାଙ୍କ ଶରୀରରେ ଯେଉଁ ଭସ୍ମ ଲଗାଇଥିଲେ, ତାହା କଳା ନ ଥିଲି, ବରଂ ତାହା ଅତି

ସ୍ୱଚ୍ଛ ଓ ସୁଗନ୍ଧିତ ଥିଲା । ତାଙ୍କ ଭ୍ରୂଲତା (ଆଖିପତା) ଆମ୍ଭମାନଙ୍କ ଭଳି ନ ଥିଲା, ଏପରି ଭ୍ରୂଲତା ମୁଁ ଆଜି ପର୍ଯ୍ୟନ୍ତ କୌଣସି ମୁନିଙ୍କର ଥିବାର ଦେଖି ନାହିଁ । ତାହା ପତଳା ଓ କିଞ୍ଚିତ୍ ବଙ୍କ ଥିଲା । କହି ପାରିବି ନାହିଁ ଯେ ସେଥିରେ ସେ କ'ଣ ଲଗାଇଥିଲେ । କିନ୍ତୁ ଏହା ସର୍ବଦା ଝିଟକି ଉଠୁଥିଲା । ତାଙ୍କର ନେତ୍ର ବିଶାଳ ଓ କମଳ ପରି ଥିଲା । ସେ ଯେତେବେଳେ ମୋ ଆଡ଼କୁ ଚାହୁଁଥିଲେ, ସେତେବେଳେ ଏପରି ଜଣା ପଡ଼ୁଥିଲା, ଯେତେ ଯେପରି ଅମୃତ ବର୍ଷା ହେଉଛି । ତାଙ୍କର ନାକ ଅତି ସୁନ୍ଦର, ଶୁକ ଚଞ୍ଚୁ ପ୍ରାୟ ଉଚ୍ଚା ଓ ପତଳା ଥିଲା । ସେ ତହିଁରେ ଏକ ଛିଦ୍ର କରି ଏକ ପ୍ରକାର ଗୋଲାକାର କୌଣସି ସୁନ୍ଦର ବସ୍ତୁ ପିନ୍ଧିଥିଲେ । ସୂର୍ଯ୍ୟ କିରଣ ପଡ଼ି ତହିଁରୁ ନୀଳ କିରଣ ବାହାରୁ ଥିଲା । ପିତା ! ତାଙ୍କ କର୍ଣ୍ଣରେ ଗୋଲ ଗୋଲ କୌଣସି ବସ୍ତୁ ଝୁଲୁଥିଲା, ଯାହାକି ତାଙ୍କ ମୁଖର ଶୋଭା ବୃଦ୍ଧି କରୁଥିଲା । ତାଙ୍କର ଦନ୍ତପଙ୍‌କ୍ତି ଗୋ-ଦୁଗ୍‌ଧ ଭଳି ସ୍ୱଚ୍ଛ ଥିଲା । ତାଙ୍କ ମୁଖ କମଳରୁ ନିରନ୍ତର ସୁଗନ୍ଧ ଭାସି ଆସୁଥିଲା । ତାଙ୍କର ଓଷ୍ଠ ପକ୍ୱ ବିମ୍ବଫଳ ପରି ଥିଲା । ତାଙ୍କ ରୁଦ୍ରାକ୍ଷମାଳା ଆମ ରୁଦ୍ରାକ୍ଷମାଳା-ଠାରୁ ଭିନ୍ନ ଧରଣର ଥିଲା । ତାହା କଳାରଙ୍ଗର ନ ଥିଲା, ସମ୍ପୂର୍ଣ୍ଣ ହଳଦିଆ ରଙ୍ଗର ଥିଲା ଓ ତାହା ଝଲସି ଉଠୁଥିଲା । ତାଙ୍କର ତୁଳସୀ ମାଳା ନ ଥିଲା । ସେ ଯେଉଁ ମାଳା ପିନ୍ଧିଥିଲେ ତହିଁରେ ନେଳି, ନାଲି, ସବୁଜ ଆଦି ରଙ୍ଗର କ'ଣ ସବୁ ଗୁନ୍ଥା ହୋଇଥିଲା, ତାହା ମୁଁ କହି ପାରିବି ନାହିଁ । ସେ ସେହିପରି କେତେକ ମାଳା ପିନ୍ଧି ଥିଲେ । ତାଙ୍କର ପୁଷ୍ପମାଳା ମଧ୍ୟ ଅତ୍ୟନ୍ତ ଦିବ୍ୟ ଥିଲା । ତାଙ୍କ ବାହୁଦ୍ୱୟର ଉତ୍ତୋଳନ-ଦୋଳନ ଅତି ସୁନ୍ଦର ଥିଲା । ରୁଦ୍ରାକ୍ଷ ସ୍ଥାନରେ କୌଣସି ବାଦ୍ୟ ସୃଷ୍ଟି କରୁଥିବା ବସ୍ତୁ ସେ ପିନ୍ଧିଥିଲେ । ଯେତେବେଳେ ସେ ହସ୍ତ ସଞ୍ଚାଳନ କରୁଥିଲେ, ସେତେବେଳେ ବଡ଼ ବିଚିତ୍ର ଶବ୍ଦ ତହିଁରୁ ବାହାରୁଥିଲା । ତାଙ୍କ କଣ୍ଠର ନିମ୍ନ ଦେଶକୁ ବକ୍ଷସ୍ଥଳରେ ମାଂସର ଦୁଇଟି ଗୋଲ ଗୋଲ ବସ୍ତୁ ପର୍ବତ ଚୂଳପରି ଲୋମହୀନ ଅବସ୍ଥାରେ ଉଚ୍ଚ ହୋଇଥିଲା । ତାହା ଏକ ଲାଲ୍ ରଙ୍ଗର ଅତି ପାତଳା ବଲ୍‌କଲ ବସ୍ତ୍ରରେ ବିଚିତ୍ର ଭାବରେ ବନ୍ଧା ହୋଇଥିଲା । ତାହା ଉପରେ ଏକ ନୀଳ ରଙ୍ଗର ବଲ୍‌କଲ ଓଢ଼ଣୀ ଥିଲା । ତାହା ଏତେ ପତଳା ଥିଲା ଯେ ତାହା ଭେଦକରି ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗ ସବୁ ଦିଶୁଥିଲା । ତାଙ୍କର ଅଙ୍ଗୁଳିଗୁଡ଼ିକ ସରୁ ଓ ଅତି କୋମଳ ଥିଲା । ସେଥିରେ ସେ ପବିତ୍ରୀକୁଶ ପରିବର୍ତ୍ତେ କୌଣସି ନାଲିରଙ୍ଗର ଏପରି ବସ୍ତୁ ପିନ୍ଧିଥିଲେ ଯେ, ତାହା ଝଲ୍‌ମଲ୍ କରୁଥିଲା । ତାଙ୍କର ଉଦରଦେଶ କୃଶ ଥିଲା । ନାଭି ଭିତରକୁ ଗହିରିଆ ଓ ଗୋଲାକାର ଥିଲା । ତାଙ୍କ ମେଖଳା ଆମ ମେଖଳାଠାରୁ ଭିନ୍ନ ଧରଣର ଥିଲା । ତହିଁରେ ଏହି ବିଚିତ୍ରତା ଥିଲା ଯେ, ତାହା ବାଜୁଥିଲା ଓ ତନ୍ମଧ୍ୟରେ ଥିବା ବଲ୍‌କଲ ବିଦ୍ୟୁତ୍‌ଭଳି ଚମକୁ ଥିଲା । ତାଙ୍କର ନିତମ୍ବ ଦେଶ ଅନ୍ୟ ମୁନିଙ୍କ ଅପେକ୍ଷା ବଡ଼ ଥିଲା । ତାଙ୍କର ପ୍ରତ୍ୟେକ ବଲ୍‌କଲ ମଧ୍ୟରୁ ସୁଗନ୍ଧ ଭାସି ଆସୁଥିଲା । ସେହି

ତପୋଧନ ଯୋଗୀ ଯେତେବେଳେ ଚାଲିଯାଉଥିଲେ, ସେତେବେଳେ ତାଙ୍କ ପାଦ ଦେଶରେ କୌଣସି ବସ୍ତୁ ଅତି ମଧୁର ସ୍ୱରରେ ବାଜୁଥିଲା । ତାଙ୍କର ଚରଣ କୋମଳ ପଦ୍ମଧାର ନୀଳରଙ୍ଗ ବିଶିଷ୍ଟ ଓ ଅତି ସୁନ୍ଦର ଥିଲା । ସେହି ମହାନୁଭବ ବିଚିତ୍ର ଢଙ୍ଗରେ ଚାଲୁଥିଲେ । ତାଙ୍କ ମୁଖମଣ୍ଡଳରେ ନିରନ୍ତର ମନ୍ଦ ମନ୍ଦ ହସ ଫୁଟି ଉଠୁଥିଲା । ସେତେବେଳେ ସେ ଠୋ ଠୋ ହସି ଉଠୁଥିଲେ, ତହିଁରୁ ପୁଷ୍ପ ଝଡ଼ି ପଡ଼ୁଥିବା ପରି ପ୍ରତୀତ ହେଉଥିଲା । ପିତା ! ତାଙ୍କର ତେଜ, ତପ, ବ୍ରତ ସବୁକିଛି ଅଲୌକିକ ଥିଲା । ଏହା ତାଙ୍କର ବ୍ରହ୍ମଚର୍ଯ୍ୟ ବ୍ରତ ଥିଲା ନା କ'ଣ ? କେଉଁ ବ୍ରତ ଅନୁଷ୍ଠାନ କରି ସେ ଏତେ ତେଜସ୍ୱୀ ହୋଇ ପାରିଛନ୍ତି ? ମୁଁ ମଧ୍ୟ ତାଙ୍କ ସହିତ ସେହିପରି ତପ କରି ଏ ପ୍ରକାର ତେଜ ଲାଭ କରିବାକୁ ଚାହେଁ ।

ପିତା ! ସେ ହସି ହସି ମୋ ନିକଟକୁ ଆସିଥିଲେ । ମୁଁ ତାଙ୍କୁ ପ୍ରଣାମ କଲି, ପାଦ୍ୟଅର୍ଘ୍ୟ ଦେବାକୁ ଚାହିଁଲି ; କିନ୍ତୁ ସେ ମୋ ପ୍ରଣାମ ଗ୍ରହଣ କଲେନାହିଁ କିମ୍ବା ମୁଁ ଦେଇଥିବା ପାଦ୍ୟ ଅର୍ଘ୍ୟ ଆଦିକୁ ଗ୍ରହଣ କଲେନାହିଁ । ମୁଁ ଦେଇଥିବା ଫଳମୂଳ ସେ ନ ଖାଇ ଦୂରକୁ ଫିଙ୍ଗିଦେଲେ ଓ ତାଙ୍କ ଝୋଲା ମୁଣିରୁ ଗୋଲ ଗୋଲ ବଡ଼ ବିଚିତ୍ର ଫଳ ବାହାର କଲେ । ପିତଃ ! ବଡ଼ ବିଚିତ୍ର କଥା, ତାଙ୍କ ଫଳର ଚୋପା ନ ଥିଲା କିମ୍ବା ମଞ୍ଜି ନ ଥିଲା । ତାହାର ସ୍ୱାଦ ଅଲୌକିକ ଥିଲା । ଅମୃତୋପମ ସେହି ଫଳ କଣ୍ଠଦେଶରେ ଅଟକି ନ ଥିଲା । ତାହା ପାଟି ଭିତରକୁ ପକାଇବା ମାତ୍ରେ ଜିହ୍ୱାରୁ ଲାଳ ନିର୍ଗତ ହୋଇ ସଙ୍ଗେ ସଙ୍ଗେ କଣ୍ଠର ନିମ୍ନଦେଶକୁ ଖସିଗଲା । ଯେତେ ଖାଇଲେ ମଧ୍ୟ ତହିଁରେ ତୃପ୍ତି ଆସିଲା ନାହିଁ । ତହିଁରେ ଦାନ୍ତ ଖଟା ହେଲାନାହିଁ କି ମନ ବି ତୃପ୍ତି ହେଲାନାହିଁ । ଦାନ୍ତର ତ କିଛି କାମ ନ ଥିଲା, ବରଂ ତାହା ଓଠରୁ ଗଳା ପାଖକୁ ଯାଇ ସ୍ୱତଃ ଉଦରସ୍ଥ ହୋଇଗଲା । ଏହାପରେ ସେ ତାଙ୍କର କମଣ୍ଡଳୁ ବାହାର କଲେ । ତାହା ଆମ୍ଭମାନଙ୍କ କମଣ୍ଡଳୁଠାରୁ ସ୍ୱତନ୍ତ୍ର ଥିଲା । ତାହା ଅତ୍ୟନ୍ତ ମନୋମୁଗ୍ଧକର ଥିଲା ଓ ନିମ୍ନ ଥିଲା । ତାହାର ମୁଖ ଶ୍ରେଷ୍ଠ ଥିଲା । ତାହା କୌଣସି ବସ୍ତୁରେ ବନ୍ଦ ରହିଥିଲା । ତାହା ଖୋଲି ସେ ତହିଁରୁ ମୋତେ ଏକ ପାନୀୟ ପିଆଇଲେ, ତାହା ପାନ କରିବାମାତ୍ରେ ମୋତେ ଏ ପୃଥିବୀ ଘୂରୁଥିବା ପରି ଜଣା ପଡ଼ିଲା, ଚକ୍ଷୁରେ ସ୍ଫୁର୍ତ୍ତି ଆସିଲା, ଇନ୍ଦ୍ରିୟମାନଙ୍କରେ ମାଦକତା ଭରିଗଲା । ମୋର ଅବସ୍ଥା ଅତି ବିଚିତ୍ର ଧରଣରେ ହୋଇଗଲା । ପିତା ! ତାଙ୍କ ପାଖରେ ବେଲଫଳ ପରି ଏକ ବିଚିତ୍ର ଫଳ ଥିଲା । ସେ ତାହା ଭୂମି ଉପରେ ପିଟିଦେବା ମାତ୍ରେ ତାହା ପୁନଶ୍ଚ ଊର୍ଦ୍ଧ୍ୱକୁ ଉଠି ଯାଉଥିଲା । ତାହାକୁ ସେ ମଝେ ମଝେ ହାତ ପ୍ରସାରଣ କରି ଧରି ନେଉଥିଲେ । ପୁଣି ମାରୁଥିଲେ ଓ ଦୌଡ଼ି ଦୌଡ଼ି ଯାଇ ତାକୁ ଘେନି ଆଣୁଥିଲେ । ଏହି ପ୍ରକାର ସେ ଅନେକ ସମୟ ପର୍ଯ୍ୟନ୍ତ ମୋ ସହିତ କ୍ରୀଡ଼ାରତ

ରହିଲେ । ସେ ଏହାପରେ ବାରମ୍ବାର ମୋତେ ଆଲିଙ୍ଗନ କଲେ । ଏହାଦ୍ୱାରା ମୁଁ ଅତ୍ୟନ୍ତ ସୁଖ ଅନୁଭବ କଲି । କେତେଥର ସେ ମୋର ମୁଖକୁ ନୁଆଁଇ ତାହିଁରେ ନିଜର ମୁଖ ରଖି ଏକ ଅବ୍ୟକ୍ତ ଶବ୍ଦ କଲେ, ଯଦ୍ଦ୍ୱାରା କି ମୋର ଶରୀର ରୋମାଞ୍ଚିତ ହେଲା । ପିତା ! ସେ ମହାତ୍ମା ଖୁବ୍ ଭଲ ଲୋକଥିଲେ, ହସି ହସି ମୋତେ କଥା କହୁଥିଲେ; ମୋତେ ଅତ୍ୟନ୍ତ ସ୍ନେହ କରୁଥିଲେ । ତାଙ୍କର ଚାଲିଚଳନ, ଚାହାଣୀ ଉଠା-ବସା, ହସ, କ୍ରୀଡ଼ା, ବେଦ ଗାୟନ ଓ ନୃତ୍ୟ ସବୁକିଛି ମୋହକ ଓ ବିଚିତ୍ର ଧରଣର ଥିଲା । ତାଙ୍କ ଜଟାରୁ ସୁନ୍ଦର ଝର ପଡ଼ୁଥିଲା । ସେ ଅନେକ ସମୟ ପର୍ଯ୍ୟନ୍ତ ମୋ ପାଖରେ ରହିଲେ । ପିତା ! ମୁଁ ତାଙ୍କ ପାଖରେ ସର୍ବଦା ରହିବାକୁ ମୋର ଇଚ୍ଛା ହେଉଛି । ଯେତେବେଳୁ ସେ ବିଦାୟ ନେଲେଣି, ସେତିକବେଳୁ ମୋର ମନ କେଉଁଥିରେ ଲାଗୁ ନାହିଁ, ମୋର ମନରେ ଉଦାସ ଭାବ ଜାଗ୍ରତ ହୋଇଛି, ଶରୀର ଅବଶ ହୋଇ ପଡ଼ିଛି । ମୁହୂର୍ତ୍ତକ ପାଇଁ ସେ ଯେପରି ମୋ ମନକୁ ପୃଥକ୍ ନ ହୁଅନ୍ତି । ମୁଁ ତାଙ୍କର ପରି ତପସ୍ୟା କରିବାକୁ ଚାହେଁ ।"

ନିଜର ସରଳ ନିଷ୍କପଟ ଅଲିଅଳ ଅବୋଧ ପୁତ୍ର ମୁଖରୁ ଏ ସମସ୍ତ କଥା ଶୁଣି ମୁନି ବୁଝିପାରିଲେ ଯେ, କୌଣସି ଏକ କୁଳଟା ମୋ ପୁତ୍ରକୁ ପାଲରେ ପକାଇବାକୁ ଚାହିଁଛି । ଓହୋ ! କେବଳ ଏହି କଥା ନ ହେବା ପାଇଁ ମୁଁ ସମସ୍ତ ପ୍ରକାର ପ୍ରଯତ୍ନ କଲି; କିନ୍ତୁ ସବୁ ବ୍ୟର୍ଥ ହେଲା । ମୋର ଇଚ୍ଛା ଥିଲା, ମୋ ପୁତ୍ର ଯେପରି ସର୍ବଦା ସ୍ତ୍ରୀ ସଂସ୍ପର୍ଶରୁ ଦୂରରେ ରହେ । ଏବେ ଥରେ ସେ ତାହା ଅନୁଭବ କରି ନେଲା, ତେବେ ଏଥିରୁ ତ ରକ୍ଷା ପାଇବା ତା' ପକ୍ଷେ ଅସମ୍ଭବ ହୋଇ ପଡ଼ିବ । ତଥାପି ମଧ୍ୟ ସେ ପୁତ୍ରକୁ ସ୍ତ୍ରୀ ସମ୍ବନ୍ଧୀୟ ଜ୍ଞାନ ହେବାକୁ ଦେଲେନାହିଁ । ସେହି ପ୍ରାପ୍ତ ବୟସ୍କ ବାଳକକୁ ଏ ସମ୍ବନ୍ଧରେ ଅଜ୍ଞାନ କରି ରଖିବା ପାଇଁ ସେ କହିଲେ—"ପୁତ୍ର ! ସେ କୌଣସି ତପସ୍ୱୀ ନ ଥିଲେ । ସେ ଏକ ରାକ୍ଷସ ଥିଲା । ରାକ୍ଷସମାନେ ବଡ଼ ମାୟାବୀ ଅଟନ୍ତି । ସେମାନେ ବିଚିତ୍ର ବିଚିତ୍ର ବେଶ ହୋଇ ଲୋକମାନଙ୍କୁ ବିପଥଗାମୀ କରନ୍ତି । ପୁନଶ୍ଚ ଯଦି କେବେ ଏ ପ୍ରକାର ବେଶରେ ସେ ରାକ୍ଷସ ଆସେ, ତେବେ ତୁ ତାକୁ ଛୁଇଁବୁ ନାହିଁ । ଯାହାର ଏତେ ଲମ୍ବ ଲମ୍ବ ଜଟା, ଦାଢ଼ି, ମୁଛ ନାହିଁ, କଣ୍ଠର ନିମ୍ନଦେଶରୁ ବକ୍ଷସ୍ଥଳରେ ମାଂସପିଣ୍ଡ, ତାଙ୍କୁ ତୁ ଛଦ୍ମବେଶୀ ରାକ୍ଷସୀ ବୋଲି ଜାଣିବୁ । ସେ ଯେଉଁ ଫଳ ତୋତେ ଦେଇଥିଲା, ତାହା ବିଷଫଳ ଥିଲା, ସେ ଫଳ ତୁ କେବେହେଲେ ଖାଇବୁ ନାହିଁ । ସେ ରାକ୍ଷସ ତୋତେ ଯେଉଁ ପେୟବସ୍ତୁ ପାନ କରାଇ ଥିଲା, ତାହା ତପସ୍ୱୀମାନଙ୍କ ପାଇଁ ଅପେୟ । ତଦ୍ଦ୍ୱାରା ତପ, ତେଜ, ଧର୍ମ, କର୍ମ ସବୁକିଛି ନଷ୍ଟ ହୋଇଯାଏ । ତୁ ଭୁଲରେ ସୁଦ୍ଧା କେବେହେଲେ ତାହା ପାନ କରିବୁ ନାହିଁ । ରାକ୍ଷସଙ୍କ ପାଖରୁ ସର୍ବଦା ସାବଧାନରେ ରହିବୁ । ତାଙ୍କୁ ଛୁଇଁଲେ ବି ପାପ ଲାଗେ । ଯାହା ଘଟିବାର ଘଟି ଯାଇଛି । ଯା' ଏବେ ଗଙ୍ଗାରେ ସ୍ନାନ କରି ଦ୍ୱିଗୁଣା

ଗାୟତ୍ରୀ ଜପ କର, ସାୟଂକାଳୀନ ଅଗ୍ନିହୋତ୍ର କର । ସେ ଋଷସକୁ ପଥ୍ୟରୂପେ ଭୂଲିଯା' ।

ଋଷ୍ୟଶୃଙ୍ଗ ପିତାଙ୍କ କଥାରେ 'ହଁ' ଟିଏ ତ ମାରଦେଲ; କନ୍ତୁ ସେ ତାକୁ ମନରୁ ଭୂଲି ପାରିଲା ନାହିଁ । ଥରୁଟିଏ ଯେଉଁ ସୁଖ ଅନୁଭବ କରାଯାଏ, ତାହା ତତ୍ତ୍ୱ ବୈରାଗ୍ୟ ବନା ଭୂଲି ହୋଇପାରେ ନାହିଁ ।

ମହର୍ଷି ବଭାଣ୍ଡକ ଏଥିପାଇଁ ଅତ୍ୟନ୍ତ ଚନ୍ତିତ ହେଲେ । ରାତସାରା ତାଙ୍କୁ ନଦ ହେଲନାହିଁ । ପ୍ରାତଃକାଳ ହେବାରୁ ସେ ସେହ୍ନ ବେଶ୍ୟାର ଅନୁସନ୍ଧାନରେ ବାହାରି ପଡ଼ିଲେ । ବେଶ୍ୟା ମଧ୍ୟ ଭାରି ସତର୍କ ଥିଲ । ସେ ତା'ର ଗୁପ୍ତଚର ଦ୍ୱାରା ସବୁ ଖବର ରଖିଥିଲ । ସେ ଏବେ ଜାଣିଲ ଯେ ମୁନ ତାକୁ ଖୋଜିବାକୁ ଅସୁଛନ୍ତି । ତେଣୁ ସେ ତନଦନ ପର୍ଯ୍ୟନ୍ତ ଲୁଚ ରହଲ । ମୁନ ଯେତେବେଳେ ବନରେ ତାକୁ ନ ପାଇଲେ, ସେତେବେଳେ ସେ ନରାଶ ହୋଇ ଫେରିଲେ ।

ତୃତୀୟ ଦନ ସେ ଯେତେବେଳେ କୁଶ ସମିଧ ଆଣିବା ପାଇଁ ବନକୁ ଗଲେ, ସେତେବେଳେ ସେହ୍ନ ବେଶ୍ୟାକନ୍ୟା ପୁନଶ୍ଚ ଋଷ୍ୟଶୃଙ୍ଗଙ୍କ ନକଟକୁ ଆସିଲ । ତାକୁ ଦେଖିବା ମାତ୍ରେ ମୁନପୁତ୍ରଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲ ଓ ସେ ଅତ୍ୟନ୍ତ ଉଲ୍ଲାସର ସହତ କହଲେ—"ମୁନବର ! ଆପଣ ତନଦନ ପର୍ଯ୍ୟନ୍ତ କେଉଁଠି ଥିଲେ ? ଆପଣଙ୍କ ବନା ତ ପ୍ରତ ମୁହୂର୍ତ୍ତରେ ମୋର ଜୀବନ ଦୁର୍ବିସହ ବୋଧ ହେଉଛୁ । ଆପଣଙ୍କର ତପ, ତେଜ ଓ ବ୍ରହ୍ମଚର୍ଯ୍ୟ ବ୍ରତରେ ମୁଁ ଅତ୍ୟନ୍ତ ପ୍ରଭାବତ । ଆପଣଙ୍କ ଆଗମନ ହେତୁ ମୋର ପିତା ସନ୍ତୁଷ୍ଟ ନୁହନ୍ତି । ତେଣୁ କୃପାକର ସେ ଫେରିବା ପୂର୍ବରୁ ଆପଣ ମୋତେ ଆପଣଙ୍କ ଆଶ୍ରମକୁ ନେଇ ଚାଲନ୍ତୁ । ଆପଣଙ୍କ ଆଶ୍ରମ ଦର୍ଶନ କରିବା ପାଇଁ ମୋର ଭାରି ଇଚ୍ଛା ।"

ଏହା ହିଁ ତ ଥିଲା ବେଶ୍ୟାର ଉଦ୍ଦେଶ୍ୟ । ସେ ବଳମ୍ବ ନ କରି ମୁନପୁତ୍ରଙ୍କୁ ସଙ୍ଗରେ ନେଇ ସେଠାରୁ ଚାଲିଗଲ । ନୌକା ନକଟକୁ ଆଣି ସେ ସେଥିରେ ମୁନଙ୍କୁ ବସାଇଲ ଓ ନାଉରୀକୁ ଚୁପ୍ କରି କହଦେଲ ଏଥର ନୌକା ଚଳାଅ । ନାଉରୀ ନୌକା ଖୋଲି ଚଳାଇବାକୁ ଆରମ୍ଭ କଲ । ଗଙ୍ଗାର ଉତ୍ତାଳ ତରଙ୍ଗକୁ କାଟି ନୌକା ତାର ଗନ୍ତବ୍ୟ ପଥରେ ଆଗେଇ ଚାଲିଲ । ବେଶ୍ୟାମାନେ ବଭନ୍ନ ପ୍ରକାର ଗୀତ ଗାଇ ଗାଇ, ନାନାପ୍ରକାର ଭାବଭଙ୍ଗୀ ଦେଖାଇ ବଭନ୍ନ ପ୍ରକାରର ଏଣୁ ତେଣୁ କର୍ଣ୍ଣପ୍ରିୟ କଥା କହ ଋଷ୍ୟଶୃଙ୍ଗ ମୁନଙ୍କ ମନକୁ ମୁଗ୍ଧ କରିବାକୁ ଲଗିଲେ । ମୁନପୁତ୍ର ବୁଝିଥିଲେ ଯେ, ମୁଁ ଭୂଲୋକ ଛାଡ଼ି ଅନ୍ୟ କୌଣସି ଏକ ଲୋକରେ ଆସି ପହଞ୍ଚିଛୁ । ବେଶ୍ୟାମାନଙ୍କର ତାଳ, ସ୍ୱର ସହତ ମଧୁର ସ୍ୱରର ଗାନ ଓ ନାନା ଭାବଭଙ୍ଗୀ

ଅଦ୍ଭୁତ ନୃତ୍ୟ ଦେଖି ଏବଂ ବିବିଧ ବାଦ୍ୟର ସୁନ୍ଦର ସ୍ୱର ଶୁଣି ଋଷ୍ୟଶୃଙ୍ଗ ମୁଗ୍ଧ ହୋଇଯାଇ ଥିଲେ । ଅବଶ୍ୟ ସେ ମଝିରେ ମଝିରେ ପିତାଙ୍କ କଥା ମନେ ପକାଉ ଥିଲେ; କିନ୍ତୁ ବେଶ୍ୟାମାନେ ତାଙ୍କୁ ନାନାପ୍ରକାର ମଜ୍ଜା କଥା ଶୁଣାଇ ଭୁଲାଇ ରଖିଥିଲେ ।"

ସୂତ କହିଲେ—"ମୁନିଗଣ ! ବେଶ୍ୟାମାନେ ଏହି ପ୍ରକାର କଳେବଳେ କୌଶଳେ ବିଭାଣ୍ଡକ ମୁନିଙ୍କର ନିରୀହ ଶାନ୍ତ-ସରଳ ପୁଅଙ୍କୁ ଫାନ୍ଦରେ ପକାଇ ନେଇ ଆସିଲେ । ଯେତେବେଳେ ଏହି ସମାଚାର ଅଙ୍ଗଦେଶର ରାଜା ରୋମପାଦ ଶୁଣିଲେ, ସେତେବେଳେ ସେ ଆନନ୍ଦରେ ବିଭୋର ହୋଇ ପଡ଼ିଲେ ।"

## ଛପ୍ପୟ

ମୁନି-ସୁତ କେ ଛପି ପାସ ବାତ-ବନିତା ପୁନି ଆଈ ।
ନୌକା ପେ ଲେ ଗଈ ନାବ ପୁନି ତୁରତ ଚଲାଈ ।।
ଗାବତ ରସମୟ ଗୀତ ନୃତ୍ୟ କରି ବାଦ୍ୟ ବଜାବତ୍ ।
ଅଙ୍ଗଦେଶ ଲେ ଗଈ ତିନହୁଁ ଅତି ହରଷାବତ୍ ।।
ଋଷ୍ୟଶୃଙ୍ଗ ପହୁଁଚେ ଜବହିଁ, ରାଜ ମାହିଁ ବରଷା ଭଈ ।
ଭୟେ ସୁଖୀ ସବ ପ୍ରଜାଗନ, ବିପତ୍ତି-ଭୂତନୀ ଭଗି ଗଈ ।।



# ମହାରାଜ ରୋମପାଦଙ୍କ ବଂଶଜ

ପ୍ରଜାମଦାଦ୍‌ଶରଥୋ ଯେନ ଲେଭେଽପ୍ରଜାଃ ପ୍ରଜାଃ ।
ଚତୁରଙ୍ଗୋ ରୋମପାଦାତ୍‌ପୃଥୁଲାକ୍ଷସ୍ତୁ ତତ୍‌ସୁତଃ ॥

(ଶ୍ରୀ ଭା ୯ ସ୍କ, ୨୩ ଅ, ୧୦ ଶ୍ଲୋକ)

## ଛପ୍‌ପୟ

ଶାନ୍ତା କନ୍ୟାସଙ୍ଗ ବ୍ୟାହ ମୁନି ସୁତକୋ କୀନ୍ହୋଂ ।
ସନ୍ତୁମାରୀ ଲହି ବହୁ, ଜଗତ ସୁଖ ମୁନି ଅବ ଚୀନ୍ହୋ ॥
କୋପ ବିଭଣ୍ଡକ କରେୟା, ବେଷ ତେଂ ନୃପ ପୁର ଆୟୋ ।
ବହୁ ସ୍ୱାଗତ ନୃପ କରେୟା, ବହୂ ସୁତ ପୌର ଗିରୟୋ ॥
ସୁତ-ବଧୂ ସଁଗ ପୁତ୍ରକୁଁ, ଲଖି ଲଟ୍‌ଟୁ ମୁନିବର ଭୟୋ ।
ଉତର୍ୟୋ କ୍ରୋଧ କପୂର ସମ, ପୁତ୍ରବଧୂକୁଁ ବର ଦୟୋ ॥

ଏହା ସିଦ୍ଧାନ୍ତ ହୋଇଛି ଯେ, ଯେତେ କାମାତୁର ପୁରୁଷ ହୋଇଥାଆନ୍ତୁ ନା କାହିଁକି, ତାଙ୍କୁ ଯଦି ଅତ୍ୟଧିକ କ୍ରୁଦ୍ଧିତ କରାଯାଏ, ତେବେ କ୍ରୋଧ ବଶବର୍ତ୍ତୀ ହୋଇ ତାଙ୍କର କାମ ଭାବନା ନଷ୍ଟ ହୋଇଯାଏ । ଯଦି ଏହି ପ୍ରକାର କ୍ରୋଧାବିଷ୍ଟ ପୁରୁଷଙ୍କୁ ନିଜର କାମନା ଅନୁସାରେ ମୋହିତକାରୀ ବସ୍ତୁ ଦେଖାଇ ଦିଆଯାଏ, ତେବେ ତାଙ୍କର କ୍ରୋଧ ନଷ୍ଟ ହୋଇଯାଏ । କ୍ରୋଧ ହେଉଛି ଏକ ପ୍ରକାରର ଅଗ୍ନି । ଅଗ୍ନି ଯେପରି ଜଳଦ୍ୱାରା ଶାନ୍ତ ହୋଇଯାଏ ସେହିପରି କ୍ରୋଧାଗ୍ନି ଶୁଚି, ସୁନ୍ଦର, ପବିତ୍ର, ଉଜ୍ଜ୍ୱଳ, ମୋହକାରୀ ଆଦି ଯେତେ ଶୃଙ୍ଗାର ରସ ବର୍ଦ୍ଧନକାରୀ ବସ୍ତୁ ଅଛି ତାହା ଦେଖି ଶାନ୍ତ ପଡ଼ିଯାଏ । କ୍ରୋଧୀ ଲୋକର ଆଗରେ କ୍ରୋଧ ପ୍ରକାଶ କଲେ, ତାହାର କ୍ରୋଧ ଦ୍ୱିଗୁଣିତ ହୋଇଯାଏ । ଚିତ୍ତର ଅନୁକୂଳ ପରିସ୍ଥିତି ଦେଖି ତାହାର ଚିତ୍ତ ତରଳିଯାଏ । ତାହାପରେ ନିଜର କର୍ମପାଇଁ ସେ ଅନୁତାପ କରେ ।

ସୂତ କହିଲେ—"ମୁନିଗଣ ! ଅଙ୍ଗ ଦେଶକୁ ଆସି ବେଶ୍ୟା ନୌକା ଅଟକାଇଲେ । ମୁନିପୁତ୍ର ବେଶ୍ୟାମାନଙ୍କୁ ପଚାରିଲେ—"ମୁନିଗଣ ! ଆମେ ବର୍ତ୍ତମାନ କେଉଁଠାରେ ଆସି ପହୁଞ୍ଚିଲେ ?"

ବୃଦ୍ଧା ବେଶ୍ୟା କହିଲା—"ଆୟୁଷ୍ମାନ୍ ! ଆମେ ବର୍ତ୍ତମାନ ଅଙ୍ଗଦେଶ ନିକଟରେ ଆସି ପହଞ୍ଚି ଗଲେଣି । ଚାଲନ୍ତୁ ଆମ ଆଶ୍ରମ ଏବେ ଦର୍ଶନ କରିବେ ।" ଏହା କହି ସେ ମୁନିଙ୍କୁ ଘାଟରେ ଓହ୍ଲାଇ ଦେଲା । ଖବର ପାଇବା ମାତ୍ରେ ମହାରାଜ ରୋମପାଦ ହଜାର ହଜାର ବ୍ରାହ୍ମଣ ଓ ମୁନିଗଣଙ୍କ ସଙ୍ଗରେ ଆସି ମହାମୁନି ଋଷ୍ୟଶୃଙ୍ଗଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କଲେ । ସେ ପାଦ୍ୟଅର୍ଘ୍ୟ ଦେଇ ବିଧିପୂର୍ବକ ମୁନିଙ୍କୁ ସ୍ୱାଗତ କଲେ ଓ ଖୁବ୍ ଆଡ଼ମ୍ବର ସହକାରେ ରଥରେ ବସାଇ ନିଜ ରାଜଧାନୀକୁ ନେଇଗଲେ । ମୁନିପୁତ୍ର ଏ ପର୍ଯ୍ୟନ୍ତ କେବେହେଲେ ନଗର ଦେଖି ନ ଥିଲେ । ସେ ରାଜଧାନୀର ଧୁମ୍ ଧାମ୍ ଚହଲ ପହଲ ସ୍ତ୍ରୀ ପୁରୁଷ ତଥା ବଡ଼ ବଡ଼ ପ୍ରାସାଦ ସବୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ରାଜାଙ୍କ ପୁରୋହିତ ଋଷ୍ୟଶୃଙ୍ଗଙ୍କୁ ସମସ୍ତ ପ୍ରବୃତ୍ତି ମାର୍ଗର ତଥ୍ୟ ବୁଝାଇଲେ । ରାଜା ଅତ୍ୟନ୍ତ ଆଦର ସତ୍କାରରେ ମୁନିପୁତ୍ରଙ୍କୁ ନିଜ ପାଖରେ ବସାଇଲେ । ସେ ସେଠାରେ ପହଞ୍ଚିବା ମାତ୍ରେ ଇନ୍ଦ୍ର ବର୍ଷା କଲେ । ଚତୁର୍ଦ୍ଦିଗ ଜଳରେ ପରିପୂର୍ଣ୍ଣ ହୋଇଗଲା । ମରୁଭୂମି ଭଳି ଶୁଷ୍କ ଭୂଖଣ୍ଡରେ ବର୍ଷା ହେବା ଦ୍ୱାରା ଭୂମି ଶସ୍ୟଶ୍ୟାମଳା ହୋଇଗଲା । ସବୁଠି ସବୁଜ ରଙ୍ଗର ଘାସ ଓ ଦୋଳାୟମାନ ଧାନଗଛ ସବୁ ଦେଖାଗଲା । ରାଜା ନିଜର ପରମ ସୁନ୍ଦରୀ ଅତି ସୁକୁମାରୀ ହୃଦୟର କନ୍ୟା ଶାନ୍ତାକୁ ଋଷ୍ୟଶୃଙ୍ଗଙ୍କ ସହିତ ବିବାହ କରିଦେଲେ । ଏବେ ମୁନି ବୁଝିପାରିଲେ ଯେ, ଏ ମୁନି ନୁହନ୍ତି, ଭଗବାନଙ୍କର ମନୋହାରିଣୀ ମୋହିନୀ ମାୟା । ଏଣେ ସୁନ୍ଦରୀ ବଧୂକୁ ପାଇ ମୁନି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ରାଜାଙ୍କ ଉଆସରେ ସମସ୍ତ ପ୍ରକାର ସୁଖୋପଭୋଗ ସାମଗ୍ରୀ ତଥା ସତ୍କାର ପାଇ ଶାନ୍ତା ସହିତ ଗୃହସ୍ଥଧର୍ମ ପାଳନ କରିବାକୁ ଲାଗିଲେ । ସେ ଯେପରି ଶାନ୍ତ ଶିଷ୍ଟ ଓ ସରଳ ଥିଲେ, ଶାନ୍ତା ମଧ୍ୟ ସେହିପରି ଗୁଣୀ ଭଳି ବଡ଼ ବଡ଼ ସୁନ୍ଦର ନେତ୍ରବିଶିଷ୍ଟା ଶାନ୍ତ ସରଳ ରାଜକୁମାରୀ ଥିଲା । ଶାନ୍ତା ନିଜର ଶରୀରର ସର୍ବସ୍ୱ ମନ, ଧନ ମୁନିଙ୍କ ଚରଣରେ ଅର୍ପଣ କରିଦେଲା । ସେ ନିଷ୍କପଟ ଭାବରେ ନିଜର ପତି ପରମେଶ୍ୱରଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲା । ତାଙ୍କର ସେବା, ଶୁଶ୍ରୂଷା, ବିନୟ ତଥା ଅନୁକୂଳ ଆଚରଣରେ ସେ ମୁନିଙ୍କୁ ବଶ କରିନେଲେ । ମୁନି ମଧ୍ୟ ତାଙ୍କର ପ୍ରେମପାଶରେ ଏପରି ଆବଦ୍ଧ ହୋଇଗଲେ ଯେ, ସେ ସମ୍ପୂର୍ଣ୍ଣରୂପେ ବନ ଓ ନିଜ ଆଶ୍ରମ କଥା ଭୁଲିଗଲେ ।

ଏଣେ ବିଭାଣ୍ଡକ ମୁନି ଯେତେବେଳେ ଆଶ୍ରମକୁ ଫେରିଥିଲେ, ସେତେବେଳେ ସେ ସେଠାରେ ପୁତ୍ରକୁ ନ ଦେଖି ଅତ୍ୟନ୍ତ ଚିନ୍ତିତ ହେଲେ । ସଙ୍ଗେ ସଙ୍ଗେ ତାଙ୍କର ଶଙ୍କା ଉପୁଜିଲା ଯେ, ବୋଧହୁଏ କେହି ଭୁଲାଇ ମୋର ପୁତ୍ରକୁ ଏଠାରୁ ନେଇ ଯାଇଛି । ସେ ନିକଟସ୍ଥ ଆଶ୍ରମମାନଙ୍କୁ ଯାଇ ସନ୍ଧାନ ନେଲେ; କିନ୍ତୁ ପୁତ୍ରକୁ ପାଇଲେ ନାହିଁ । ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପୁତ୍ରକୁ ଖୋଜିବା ସମ୍ବନ୍ଧରେ ଜଣେ

ବୃଦ୍ଧ ମୁନି ହସି ହସି କହିଲେ—"ମହାଭାଗ ! ନଗରକୁ ଯାଇ ପୁତ୍ରକୁ ଖୋଜନ୍ତୁ, ଆପଣଙ୍କ ପୁତ୍ରକୁ ତ କେହି ଆପଣଙ୍କଠୁଁ କଣିବାକୁ ଆସି ନ ଥିଲେ ।"

ଏହା ଶୁଣି ମୁନି ଲାଲ ଲାଲ ଆଖି କରି କହିଲେ—"କ'ଣ ମୋର ପୁତ୍ର କୌଣସି ବିକ୍ରୟ କରିବା ବସ୍ତୁ ?"

ସେହି ବୃଦ୍ଧ ମୁନିଙ୍କୁ କହିଲେ—"ଆପଣ ତ ପୁତ୍ରକୁ ନିଜର ଖେଳନା କରି ରଖିଥିଲେ । ତାକୁ ସଂସାର ଜ୍ଞାନ ପ୍ରଦାନ କରାଇଲେ ନାହିଁ କି କାହାରି ସହିତ ମିଶିବାକୁ ଦେଲେନାହିଁ । ସଂସାର ସମ୍ବନ୍ଧରେ ତାକୁ ଅଜ୍ଞାତ କରି ରଖିଲେ । ଅଜ୍ଞାନର ତ୍ୟାଗ, ତ୍ୟାଗ ନୁହେଁ । ଜ୍ଞାନ ପୂର୍ବକ ତ୍ୟାଗ ହିଁ ବାସ୍ତବ ତ୍ୟାଗ । ଅନ୍ଧକାରକୁ ଦେଖିବା ଦ୍ୱାରା ହିଁ ଆଲୋକର ମହତ୍ତ୍ୱ ସ୍ୱୀକାର କରାଯାଏ । ରାତିର ଜ୍ଞାନ ହେଲେ ହିଁ ଦିବସର ଉପଯୋଗିତା ବୋଧଗମ୍ୟ ହୁଏ । ଯେ ପର୍ଯ୍ୟନ୍ତ ପ୍ରବୃତ୍ତି ମାର୍ଗ ସମ୍ବନ୍ଧରେ ପୂର୍ଣ୍ଣ ଜ୍ଞାନ ନ ହୋଇଛି, ସେ ପର୍ଯ୍ୟନ୍ତ ନିବୃତ୍ତି ମାର୍ଗର ଶ୍ରେଷ୍ଠତା ମନୁଷ୍ୟ ଜାଣି ପାରିବ ଅବା କାହୁଁ ? ସ୍ୱାଭାବିକ ପ୍ରବୃତ୍ତିଗୁଡ଼ିକୁ ଜାଣିଶୁଣି ଅବରୋଧ କରିବାର କେଉଁ କାହାର ବା ଅଛି ? ସମାବର୍ତ୍ତନ ଓ ବିବାହଯୋଗ୍ୟ ପୁତ୍ରକୁ ସ୍ତ୍ରୀ ସହିତ ପରିଚୟ ନ କରାଇ ଆପଣ ଯେଉଁ ପାପ କରିଅଛନ୍ତି, ତାହାର ଫଳ ସ୍ୱରୂପ ଅଙ୍ଗଦେଶର ରାଜାଙ୍କ ରାଜ୍ୟରେ ବର୍ଷା ହେଉନାହିଁ । ଆପଣ ଏବେ ଅଙ୍ଗରାଜ୍ୟକୁ ଯାଇ ପୁତ୍ରର ସନ୍ଧାନ ନିଅନ୍ତୁ ।"

ବିଭାଣ୍ଡକ ଏବେ ଜାଣିଗଲେ ଯେ ଏ ସବୁ ଅଙ୍ଗ ଦେଶର ରାଜାଙ୍କ ଷଡ଼ଯନ୍ତ୍ର । ସେ କ୍ରୋଧରେ ଜର୍ଜ୍ଜରିତ ହୋଇ ରାଜାଙ୍କୁ ଶାପ ଦେବାକୁ ଉଦ୍ୟତ ହେଲେ । ଏହା ଦେଖି ସେଠାରେ ଥିବା ଅନ୍ୟ ଋଷିମାନେ ତାଙ୍କୁ ଏଥିରୁ ନିବୃତ୍ତ କଲେ । ସେମାନେ ଶାସ୍ତ୍ରୀୟ ପ୍ରମାଣ ଦେଇ ତାଙ୍କୁ ବୁଝାଇଲେ—"ଆପଣ ଏପରି କରିବା ଅନୁଚିତ । ଆପଣ ଅଙ୍ଗରାଜାଙ୍କ ନିକଟକୁ ପ୍ରଥମେ ଯାଆନ୍ତୁ ଓ ସମସ୍ତ ଘଟଣା ପଚାରି ବୁଝନ୍ତୁ । ତାଙ୍କଠାରୁ ସମସ୍ତ କଥା ଶୁଣି ସାରିବା ପରେ ଯଦି ଉଚିତ ମନେକରନ୍ତି, ତେବେ ତାଙ୍କୁ ଶାପ ବା ବରଦାନ ଯାହା କିଛି ଦେବେ ।"

ଅନ୍ୟ ମୁନି ଋଷିମାନଙ୍କର କଥା ମାନି ବିଭାଣ୍ଡକ ମୁନି ନିଜର କ୍ରୋଧ ସମ୍ବରଣ ନକରି ଅଙ୍ଗଦେଶର ରାଜଧାନୀ ଚମ୍ପାପୁରୀ (ଚମ୍ପାରଣ୍ୟ)କୁ ଯାତ୍ରା କଲେ । ସେ ମନରେ ଭାବିଲେ, ବୋଧହୁଏ, ଏହି ଷଡ଼ଯନ୍ତ୍ରରେ କେତେକ ମୁନିଙ୍କର ହାତ ଅଛି । ତେଣେ ରାଜା ମଧ୍ୟ ଏହି ସୂଚନା ପ୍ରଥମରୁ ପାଇଗଲେ ଯେ, ମହାମୁନି ବିଭାଣ୍ଡକ କ୍ରୋଧରେ ଜର୍ଜ୍ଜରିତ ହୋଇ ରାଜଧାନୀକୁ ଆସୁଅଛନ୍ତି । ତେଣୁ ସେ ଅନେକ ରାଜକର୍ମଚାରୀ ପଠାଇ ପ୍ରତି ଗ୍ରାମ୍ୟ ପଥରେ ତାଙ୍କର ସ୍ୱାଗତ ସତ୍କାରର ବ୍ୟବସ୍ଥା କରାଇଲେ । ମୁନି ଯେଉଁ ଗ୍ରାମରେ ଯାଇ ପହଞ୍ଚିଲେ, ସେହି ଗ୍ରାମର କୃଷକ ତଥା

ଆବାଳବୃଦ୍ଧବନିତା ତାଙ୍କୁ ଅତ୍ୟନ୍ତ ଭକ୍ତି ଓ ଆଦର ସତ୍କାର କରି ସମସ୍ତ ପ୍ରକାର ଉତ୍ତମ ଦ୍ରବ୍ୟ ପ୍ରଦାନ କରୁଥିଲେ । ମୁନି ପଗ୍ଭରୁଥିଲେ—"ଏ କାହାର ଗ୍ରାମ ?" ସମସ୍ତେ କହୁଥିଲେ—"ମହାରାଜ ! ଏ ଋଷ୍ୟଶୃଙ୍ଗ ମୁନିଙ୍କ ଗ୍ରାମ । ରାଜା ନିଜର କନ୍ୟାକୁ ତାଙ୍କୁ ବିବାହ ଦେଇ ଏହି ଗ୍ରାମ ସବୁ ତାଙ୍କୁ ଯୌତୁକ ଦେଇଛନ୍ତି ।" ଏହି ପ୍ରକାର ପ୍ରତ୍ୟେକ ଗ୍ରାମରେ ପୂଜିତ ତଥା ସସମ୍ମାନିତ ହୋଇ ସେ ଚମ୍ପାପୁରୀରେ ଯାଇ ପହଞ୍ଚିଲେ । ରାଜା ତାଙ୍କର ସସମ୍ମାନ ସ୍ୱାଗତ ସତ୍କାର କଲେ । ମୁନି ମଧ୍ୟ ତାଙ୍କ ବିନମ୍ର ପୂଜନରେ ପ୍ରସନ୍ନ ହେଲେ । ସେ ତ ମୁନି, ମୁନିଭଳି ଆଚରଣ ତାଙ୍କର ଧର୍ମ । ତାଙ୍କର ବୃଦ୍ଧି ପାଇଥିବା ରଜୋଗୁଣ ଦୂର ହୋଇଗଲା । ରାଜା ତାଙ୍କୁ ମୁନିପୁତ୍ର ଋଷ୍ୟଶୃଙ୍ଗଙ୍କ ମହଲକୁ ନେଇଗଲେ । ସେ ସେଠାରେ ଦେଖିଲେ ଯେ ସ୍ୱର୍ଗରେ ଇନ୍ଦ୍ର ଯେପରି ରହନ୍ତି, ଋଷ୍ୟଶୃଙ୍ଗ ସେହିପରି ଅତ୍ୟନ୍ତ ସମ୍ମାନର ସହିତ ରାଜମହଲରେ ରହିଛନ୍ତି । ହଜାର ହଜାର ଦାସ ଦାସୀ ତାଙ୍କ ସେବାରେ ନିଯୁକ୍ତ ଅଛନ୍ତି । ରାଜ-କୁମାରୀ ଶାନ୍ତା ବିଜୁଳି ଭଳି ସର୍ବଦା ନିଜର ଶୋଭାରେ ମହଲକୁ ଶୋଭାନ୍ୱିତ କରି ଆନନ୍ଦରେ ଘୂରୁ ଥାଆନ୍ତି । ଏହି ସମୟରେ ଋଷ୍ୟଶୃଙ୍ଗ ସମ୍ମୁଖରେ ନିଜ ପିତାଙ୍କୁ ଦେଖି ଅତ୍ୟନ୍ତ ଲଜ୍ଜିତ ହୋଇ ଠିଆହୋଇ ପଡ଼ିଲେ । ପୁତ୍ର ଓ ପୁତ୍ରବଧୂ ଉଭୟେ ଆସି ମୁନିଙ୍କ ପାଦ ଧରି ପ୍ରଣାମକଲେ । ତାଙ୍କର ପୂଜାର୍ଚ୍ଚନା କଲେ ଓ ହାତଯୋଡ଼ି ଠିଆ ହେଲେ । ଏତେ ସୁନ୍ଦରୀ ସୁକୁମାରୀ ରାଜକୁମାରୀ ପୁତ୍ରବଧୂଙ୍କୁ ଦେଖି ମୁନିଙ୍କର କ୍ରୋଧ କର୍ପୂର ଭଳି କୁଆଡ଼େ ଉଡ଼ିଗଲା । ସେ ପୁତ୍ରକୁ ଆଲିଙ୍ଗନ କଲେ, ପୁତ୍ରବଧୂର ଶିର ଆଘ୍ରାଣ ପୂର୍ବକ ତାଙ୍କୁ ଆଶୀର୍ବାଦ କରି ପୁତ୍ର ପୌତ୍ରବତୀ ହୋଇ ସୁଖମୟ ଜୀବନଯାପନ କରିବାକୁ କହିଲେ । ଅଙ୍ଗରାଜ ମହାରାଜ ରୋମପାଦଙ୍କୁ ମଧ୍ୟ ସେ କୃପା ଦୃଷ୍ଟିରେ ଦେଖିଲେ । କିଛିଦିନ ସେ ରାଜାଙ୍କର ଆତିଥ୍ୟ ସ୍ୱୀକାର କରି ପୁତ୍ରକୁ ସେଠାରେ ଛାଡ଼ି ମୁନି ତପସ୍ୟା କରିବାପାଇଁ ବନକୁ ଚାଲି ଆସିଲେ ।

ଏତେ ଯଶସ୍ୱୀ, ତପସ୍ୱୀ, ଧର୍ମମୀ ଓ ସରଳ ଜାମାତାଙ୍କୁ ପାଇ ରାଜାଙ୍କର ଆନନ୍ଦର ସୀମା ରହିଲା ନାହିଁ । କିଛି ଦିନ ପରେ ଶାନ୍ତାଙ୍କଠାରୁ ଏକ ପୁତ୍ରରତ୍ନ ଜନ୍ମ ଗ୍ରହଣ କଲା । ଏ ସମ୍ବାଦ ପାଇ ରାଜ୍ୟବାସୀ ଆନନ୍ଦ ଉତ୍ସବରେ ମାତିଗଲେ ।

ଦିନେ ଶାନ୍ତାନିଜର ସର୍ବ-ସମର୍ଥ ପତିଦେବତାଙ୍କୁ କହିଲେ—"ପ୍ରାଣନାଥ ! ଆପଣଙ୍କ କୃପାରୁ ମୁଁ ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟରେ ଅଛି; କିନ୍ତୁ ମୋର ଆଉ ଭାଇ ନାହାନ୍ତି, ଏଥିପାଇଁ ମୋର ପିତାମାତା ଅତ୍ୟନ୍ତ ଦୁଃଖୀ ଓ ମୁଁ ମଧ୍ୟ ଏଥିପାଇଁ ଚିନ୍ତିତ । ଆପଣ ଏପରି କୌଣସି ଉପାୟ ଅଛି କହନ୍ତୁ; ଯଦ୍ୱାରା କି ମୋର ଏକ ଭାଇ ଜନ୍ମଲାଭ କରିବ ।"

ଋଷ୍ୟଶୃଙ୍ଗ କହିଲେ—"ମୁଁ ବିଧିପୂର୍ବକ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ବେଦାଧ୍ୟୟନ କରିଅଛି । ତେଣୁ ପୁତ୍ର ନିମିତ୍ତ ମହାରାଜଙ୍କ ଦ୍ୱାରା ମୁଁ ପୁତ୍ରେଷ୍ଟି ଯଜ୍ଞ

କରାଇବ । ଏହି ଯଜ୍ଞର ପ୍ରଧାନ ଦେବତା ହେଉଛନ୍ତି ଇନ୍ଦ୍ର । ସେ ନିଶ୍ଚୟ ମହାରାଜଙ୍କୁ ପୁତ୍ର ପ୍ରଦାନ କରିବେ ।"

ଏହା ଶୁଣି ଶାନ୍ତା ଆନନ୍ଦରେ ଉତ୍ଫୁଲ୍ଲିତ ହେଲେ । ସେ ଏହି କଥା ପିତା ମାତାଙ୍କ ଆଗରେ ଯାଇ କହିଲେ । ରାଜା ଅତି ଆନନ୍ଦରେ ବହୁତ ବେଦଜ୍ଞ ବ୍ରାହ୍ମଣଙ୍କୁ ବରଣ କରି ଯଜ୍ଞର ସମସ୍ତ ଆୟୋଜନ କଲେ । ଖୁବ୍ ଆଡ଼ମ୍ବର ସହକାରେ ଯଜ୍ଞ ହେଲା । ସେହି ଯଜ୍ଞର ଫଳ ସଙ୍ଗେ ସଙ୍ଗେ ମିଳିଗଲା । ଇନ୍ଦ୍ର ପ୍ରସନ୍ନ ହୋଇ ରାଜାଙ୍କୁ ପୁତ୍ରବାନ୍ ହେବା ପାଇଁ ଆଶୀର୍ବାଦ କଲେ । ମହାରାଣୀ ଗର୍ଭବତୀ ହେଲେ ଓ ନିର୍ଦ୍ଦିଷ୍ଟ ସମୟରେ ତାଙ୍କର ଏକ ପୁତ୍ର ସନ୍ତାନ ଜାତ ହେଲା । ରାଜା ସେହି ପୁତ୍ରର ନାମ ରଖିଲେ 'ଚତୁରଙ୍ଗ' । କୁମାର ଚତୁରଙ୍ଗ ଶୁକ୍ଳପକ୍ଷ ଚନ୍ଦ୍ରମା ପରି ବଢ଼ିବାକୁ ଲାଗିଲେ ।

ଏଣେ ଅଯୋଧ୍ୟାର ରାଜା ଦଶରଥ ଏ ଶୁଭ ସମ୍ବାଦ ଶୁଣି ଅତ୍ୟନ୍ତ ଖୁସି ହେଲେ । ସେ ଯେତେବେଳେ ଜାଣିଲେ ଯେ ତାଙ୍କର କନ୍ୟା ଶାନ୍ତାର ପତି ପୁତ୍ରେଷ୍ଟି ଯଜ୍ଞ କରିବାରେ ଅତି ନିପୁଣ, ସେତେବେଳେ ସେ ଅନୁନୟ ବିନୟ ସହକାରେ ଶାନ୍ତା ସହିତ ଋଷ୍ୟଶୃଙ୍ଗଙ୍କୁ ଅଯୋଧ୍ୟାକୁ ଆଣିଲେ । ଦଶରଥଙ୍କ ଆଗ୍ରହରେ ମହାମୁନି ବଶିଷ୍ଠ ସମ୍ମତି ପ୍ରଦାନ କରିବାରୁ ଦଶରଥଙ୍କ ପାଇଁ ମଧ୍ୟ ପୁତ୍ରେଷ୍ଟି ଯଜ୍ଞର ବନ୍ଦୋବସ୍ତ କରାଗଲା । ଏହାର ଫଳ ସ୍ୱରୂପ କୁଳମଣ୍ଡନ କୌଶଲ୍ୟା ନନ୍ଦବର୍ଦ୍ଧନ ରଘୁନନ୍ଦନ ଶ୍ରୀ ରାମଚନ୍ଦ୍ରଙ୍କର, ପ୍ରେମର ସାକାର ରୂପ କୈକେୟୀ ଆନନ୍ଦବର୍ଦ୍ଧନ ଶ୍ରୀ ଭରତଙ୍କର, ସୁମିତ୍ରାନନ୍ଦନବର୍ଦ୍ଧନ ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କର ଜନ୍ମ ହେଲା ।

ମୁନିବର ଋଷ୍ୟଶୃଙ୍ଗ ଯେତେବେଳେ ଦେଖିଲେ ଯେ, ଶାନ୍ତାଙ୍କର ପୁତ୍ରଟିଏ ହୋଇ ଯାଇଛି, ସେତେବେଳେ ସେ ରାଜା ରୋମପାଦଙ୍କଠାରୁ ଅନୁମତି ନେଇ ପୁନଃ ବନକୁ ଚାଲିଗଲେ । ଏବେ ସେ ଅଙ୍ଗ ଦେଶକୁ ଛାଡ଼ି ଗଙ୍ଗା କୂଳରେ ଥିବା କାନ୍ୟକୁବ୍ଜ ଦେଶକୁ ଆସି ରହିବାକୁ ଲାଗିଲେ । ଶାନ୍ତା ମଧ୍ୟ ରାଜଭବନ ଛାଡ଼ି ତାଙ୍କ ସହିତ ରହିଲେ ଓ ତାଙ୍କର ସମସ୍ତ ପ୍ରକାର ସେବା କରିବାରେ ନିଜକୁ ନିୟୋଜିତ କଲେ । ମୁନି ଋଷ୍ୟଶୃଙ୍ଗଙ୍କର ଆଶ୍ରମ ଗଙ୍ଗା ତଟରେ ଥିବା କାନ୍ୟକୁବ୍ଜ ଦେଶରେ (ଆଧୁନିକ ଫରୁଖାବାଦ ଜିଲ୍ଲାର ଶୃଙ୍ଗୀରାମପୁର) ଏବେ ବି ବିଦ୍ୟମାନ । ଏଠାରେ ଗୋଟିଏ ଅତି ବଡ଼ ଧରଣର ମେଳା ହୁଏ ।

ଏହି ପ୍ରକାର ମହାରାଜ ରୋମପାଦଙ୍କ କନ୍ୟାର ବିବାହ ମହାମୁନି ଋଷ୍ୟଶୃଙ୍ଗଙ୍କ ସହିତ ହୋଇଥିଲା । ମହାରାଜଙ୍କ ପୁତ୍ର ଚତୁରଙ୍ଗ ମଧ୍ୟ ବଡ଼ ଧର୍ମାତ୍ମା ତଥା ଗୁଣଗ୍ରାହୀ ଥିଲେ । ତାଙ୍କର ପୁତ୍ରର ନାମ ଥିଲା ପୃଥୁଲାକ୍ଷ, ପୃଥୁଲାକ୍ଷଙ୍କର ପୁତ୍ର ବୃହଦ୍ରଥ, ବୃହଦ୍‌କର୍ମା ଓ ବୃହଦ୍‌ଭାନୁ । ଏହି ତିନିଜଣଙ୍କ ମଧ୍ୟରେ ଜ୍ୟେଷ୍ଠ ବୃହଦ୍ରଥଙ୍କ ପୁତ୍ରର

ନାମ ବୃହନ୍ମନା ଥିଲା । ତାଙ୍କ ପୁତ୍ରର ନାମ ଜୟଦ୍ରଥ । ଜୟଦ୍ରଥଙ୍କର ସମ୍ଭୂତି ନାମ୍ନୀ ନିଜ ପତ୍ନୀଙ୍କଠାରୁ ବିଜୟ ନାମକ ପୁତ୍ର ଜାତ ହୋଇଥିଲା । ବିଜୟଙ୍କର ପୁତ୍ରର ନାମ ଧୃତି, ଧୃତିଙ୍କ ପୁତ୍ର ଧୃତବ୍ରତ, ତାଙ୍କ ପୁତ୍ରର ନାମ ସତ୍କର୍ମା ଓ ମହାରାଜ ସତ୍କର୍ମାଙ୍କ ପୁତ୍ରର ନାମ ସୂତରାଜ ଅଧିରଥ ଥିଲା ।

ମହାରାଜ ଅଧିରଥଙ୍କର କୌଣସି ପୁତ୍ର ନ ଥିଲେ । ଦିନେ ସେ ଗଙ୍ଗାଜଳରେ ସ୍ନାନ କରୁଥିବା ସମୟରେ ଗଙ୍ଗାଙ୍କ ପ୍ରବାହରେ ଏକ ପେଟି ଭାସି ଆସୁଥିବାର ଦେଖିଥିଲେ । ମଲ୍ଲିମାନଙ୍କ ଦ୍ୱାରା ସେ ସେହି ପେଟିକୁ ଉପରକୁ ଉଠାଇ ଆଣି ଦେଖିଲେ ଯେ, ତା' ଭିତରେ ଏକ ସୁନ୍ଦର ବାଳକ ଅଛି । ଦେବକୁମାର ସଦୃଶ ତା'ର ଆଭା ଓ କର୍ଣ୍ଣରେ ଦିବ୍ୟ କୁଣ୍ଡଳ ସ୍ୱାଭାବିକ ଭାବରେ ଥିଲା । ରାଜା ତାକୁ ନିଜ ଘରକୁ ନେଇ ଆସି ପୁତ୍ରପରି ଲାଳନପାଳନ କଲେ । କୁନ୍ତୀଙ୍କ କନ୍ୟାବସ୍ଥାରେ ସୂର୍ଯ୍ୟଙ୍କ ଔରସରୁ ସେହି ପୁତ୍ର କର୍ଣ୍ଣ ଦ୍ୱାରରେ ଜନ୍ମ ଲାଭ କରିଥିଲା । ରାଜା ତାଙ୍କୁ ନିଜ ପୁତ୍ର ରୂପେ ଗ୍ରହଣ କରି ତାଙ୍କ ପତ୍ନୀ ରାଧାଙ୍କ ହସ୍ତରେ ଦେଲେ । ଏଥିପାଇଁ କୁନ୍ତୀପୁତ୍ର କର୍ଣ୍ଣଙ୍କୁ କର୍ଣ୍ଣରାଧେୟ ବୋଲି କୁହାଯାଏ । ପରେ ଅଧିରଥଙ୍କର ଆହୁରି ପୁତ୍ର ମଧ୍ୟ ହୋଇଥିଲେ । ପୃଥିବୀପତି କର୍ଣ୍ଣଙ୍କର ମଧ୍ୟ ଅନେକ ପୁତ୍ର ହୋଇଥିଲେ । ସେମାନଙ୍କ ମଧ୍ୟରୁ ବୃଷସେନ ମୁଖ୍ୟ ଥିଲେ । ପରେ ଏହାଙ୍କର ବଂଶ ବିସ୍ତାର ହେଲା, ଏହା ବର୍ଣ୍ଣନା କରିବା ଏଠାରେ ସମ୍ଭବ ନୁହେଁ । ବଙ୍ଗ, ଓଡ଼ିଶା, ତଥା ମିଥିଳାରେ ଏବେ ମଧ୍ୟ ଅନେକ କର୍ଣ୍ଣବଂଶୀୟ କାୟସ୍ଥ ଅଛନ୍ତି ।

ସୂତ କହିଲେ—"ମୁନିଗଣ ! ଏହି ପ୍ରକାର ଅତି ସଂକ୍ଷେପରେ ମୁଁ ଆପଣମାନଙ୍କୁ ମହାରାଜ ଯଯାତିଙ୍କ ଚତୁର୍ଥ ପୁତ୍ର ଅନୁଙ୍କ ବଂଶ ସମ୍ବନ୍ଧରେ କହିଲି । ଏବେ ତାଙ୍କର ତୃତୀୟ ପୁତ୍ର ଦ୍ରୁହ୍ୟୁଙ୍କ ବଂଶ ବିଷୟରେ ଆପଣମାନଙ୍କୁ ସଂକ୍ଷେପରେ କହୁଛି, ତାହା ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ଋଷ୍ୟଶୃଙ୍ଗ ମୁନି ଗୃହୀ ବନେ ବହୁ ମଖ କରବାୟେ ।
ଦଶରଥ ଅରୁ ନୃପ ରୋମପାଦ ଜିନ ତେଂ ସୁତ ପାୟେ ।
ରୋମପାଦ କେ ଭୟେ ପୁତ୍ର ଚତୁରଙ୍ଗ ଅମାନୀ ।।
ଦଶବୀଂ ପୀଢ଼ୀ ଭୟେ କର୍ଣ୍ଣ କୁନ୍ତୀ ତେଂ ଦାନୀ ।।
ସୂତ ଯଯାତି ଅନୁ-ବଂଶମହଁ, ଭୟେ ଧର୍ମଯୁତ ଭୂପ ସବ ।
କହ୍ୟୋ ବଂଶ ଅନୁ ପୁରୁ କୋ, ସୁନୋ ଦ୍ରୁହ୍ୟୁ କୋ ବଂଶ ଅବ ।।



# ଦ୍ରୁହ୍ୟୁ ଓ ତୁର୍ବସୁଙ୍କ ବଂଶ ବର୍ଣ୍ଣନା

ଦ୍ରୁହ୍ୟୋଶ୍ଚ ତନୟୋ ବଭ୍ରୁଃ ସେତୁସ୍ତସ୍ୟାତ୍ମଜସ୍ତତଃ ।
ଆରବ୍ଧସ୍ତସ୍ୟ ଗାନ୍ଧାରସ୍ତସ୍ୟ ଧର୍ମସ୍ତତୋ ଧୃତଃ ।

(ଶ୍ରୀ ଭା ୯ ସ୍କ, ୨୩ ଅ, ୧୪, ୧୫ ଶ୍ଳୋ)

## ଛପ୍ପୟ

ନୃପତି ଦ୍ରୁହ୍ୟୁ-ସୁତ ବଭ୍ରୁ ସୁତ ସେତୁ ଜିନହୁ ତେଁ ।
ସେତୁ ପୁତ୍ର ଆରବ୍ଧ ଭୟେ ଗାନ୍ଧାର ତିନହୁ ତେଁ ।
ଚୌଥୀ ପାଢ଼ୀ ମାଁହି ପ୍ରଚେତା ଭୟେ ଶକ୍ତି ଯୁତ ।
ତିନ ତେଁ ଅତି ବଳବାନ୍ ଭୟେ ତେଜସ୍ୱୀ ଶତ ସୁତ ।।
ଉତ୍ତର ଦିଶି କେ ଭୂପ ଭୟେ, ମ୍ଲେଚ୍ଛନ କେ ରାଜା ବିଦିତ ।
ଅବ ତୁର୍ବସୁ କୋ ସୁନହୁ କୁଲ, ଜୋ ଯଯାତି କେ ଦ୍ୱିତୀୟ ସୁତ ।।

ଯେଉଁ କୁଳରେ ଗୋଟିଏ ଭଗବଦ୍‌ଭକ୍ତ ଜନ୍ମ ଲାଭ କରେ, ସେ ନିଜ ବଂଶର ପୂର୍ବ ସାତ ପୁରୁଷ, ପର ସାତ ପୁରୁଷ ଓ ମାତୃକୁଳର ସାତ ପୁରୁଷକୁ ଉଦ୍ଧାର କରେ । ଯଦି କୌଣସି କୁଳରେ ଭକ୍ତ-ଭାବନ ଭଗବାନ୍ ବାସୁଦେବଙ୍କର ପ୍ରକଟ ହୁଏ, ତେବେ ସେ କୁଳ ସମ୍ବନ୍ଧରେ କହିବାର କିଛି ନାହିଁ । ସେହି ସମ୍ପୂର୍ଣ୍ଣ କୁଳ ଧନ୍ୟ ହୋଇଯାଏ । ସୂର୍ଯ୍ୟ ବଂଶର ଏତେ ମହିମାର କାରଣ କ'ଣ ? ଏଥିପାଇଁ କ'ଣ ରବିକୁଳତିଳକ ଶ୍ରୀ ରାଘବ ଅବତୀର୍ଣ୍ଣ ହୋଇଥିଲେ ? ଅଜନ୍ମା ହୋଇ ମଧ୍ୟ ସେ ସୂର୍ଯ୍ୟବଂଶରେ ଜନ୍ମ ଗ୍ରହଣ କରି ଥିଲେ । ସେହି କାରଣରୁ ଉକ୍ତ କୁଳ ପରମ ପାବନ ହୋଇଗଲା । ଚନ୍ଦ୍ର-ବଂଶର କଥା ମଧ୍ୟ ତଦ୍ରୂପ । ଯଦିଚ ଚନ୍ଦ୍ରବଂଶରେ ଏହିରୁ ଅନେକ ବଳି ଶୂର-ବୀର ଯଶସ୍ୱୀ, ପ୍ରତାପୀ ରାଜା ହୋଇ ଥିଲେ; ତଥାପି ସେମାନେ ସମସ୍ତେ ମରଣଧର୍ମା ଥିଲେ ।

ଏହି ବଂଶର ମହତ୍ତ୍ୱ ତ ଯାଦବେନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ର ଭଗବାନଙ୍କ ଅବତାର କାରଣରୁ ବୃଦ୍ଧି ପାଇଥିଲା । ମହାରାଜ ଯଯାତିଙ୍କର ଜ୍ୟେଷ୍ଠ ପୁତ୍ର ମହାରାଜ ଯଦୁ ଯଦିଚ ପିତାଙ୍କ ଶାପରେ କ୍ଷତ୍ରିୟତ୍ୱରୁ ପତନ (ହୀନ) ହୋଇଥିଲେ, ତଥାପି ଭଗବାନ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହେବା ପରେ ଦେବତାଙ୍କ ପାଇଁ ସେହି କୁଳ ପରମ ବନ୍ଦନୀୟ ହୋଇଗଲା । ଭଗବାନଙ୍କ ସମ୍ବନ୍ଧରୁ ଅନ୍ୟ ସମସ୍ତ ରାଜମାନଙ୍କର କୁଳ ମଧ୍ୟ କୀର୍ତ୍ତିନୀୟ ହୋଇଗଲା ।

ସୂତ କହିଲେ—"ମୁନିଗଣ ! ମୁଁ ମହାରାଜ ଯଯାତିଙ୍କ ପଞ୍ଚମ ଓ ଚତୁର୍ଥ ପୁତ୍ର ପୁରୁ ଏବଂ ଅନୁଙ୍କ ବଂଶ ବିଷୟ କହିଲି । ଏବେ ତାଙ୍କ ତୃତୀୟ ପୁତ୍ର ଦ୍ରୁହ୍ୟଙ୍କ କୁଳ ସମ୍ବନ୍ଧରେ ସଂକ୍ଷେପରେ କହୁଅଛି । ସେ ହିମାଳୟର ଏ ପାଖ ଓ ଆରପାଖ ଦେଶର ଅନାର୍ଯ୍ୟ ମ୍ଲେଚ୍ଛ ଦେଶଗୁଡ଼ିକ (ପାହାଡ଼ୀ, ତିବ୍ବତ, କାବୁଲ, କାନ୍ଦାହାର, ରୁଷ, ଚୀନ, ଜାପାନ) ରାଜା ହୋଇ ଶାସନ କରୁଥିଲେ । ବର୍ଣ୍ଣାଶ୍ରମୀ ଦେଶର ସୀମାଠାରୁ ବାହାର ଯିବା ଦ୍ୱାରା ସେ ସଂସ୍କାର ହୀନ ହୋଇ ଯାଇଥିଲେ । ମ୍ଲେଚ୍ଛଙ୍କ ସଂସର୍ଗରୁ ସେମାନଙ୍କ ସହିତ ବିବାହ ଆଦି ସମ୍ବନ୍ଧ ସ୍ଥାପନ କରିବା ଦ୍ୱାରା ସେ ମଧ୍ୟ ମ୍ଲେଚ୍ଛ ଭଳି ହୋଇଗଲେ । ତେଣୁ ତାଙ୍କ ବଂଶର ଅଳ୍ପ କେତେକ ରାଜାଙ୍କ ନାମମାତ୍ର କେବଳ କହୁ ଅଛି ।

ମହାରାଜ ଦ୍ରୁହ୍ୟଙ୍କର ପୁତ୍ରର ନାମ ବଭ୍ରୁ । ତାଙ୍କ ପୁତ୍ର ସେତୁ, ସେତୁଙ୍କ ପୁତ୍ର ଆରବ୍ଧ ଓ ଆରବ୍ଧଙ୍କ ପୁତ୍ରର ନାମ ଥିଲା ଗାନ୍ଧାର । ଏହି ଗାନ୍ଧାରଙ୍କ ନାମ ଅନୁସାରେ ଗାନ୍ଧାର (କାବୁଲ୍ କାନ୍ଦାହାର) ଦେଶ ପ୍ରସିଦ୍ଧି ଲାଭ କରୁଥିଲା । ଏହି ଦେଶରେ ବହୁତ ଫଳ ହୁଏ । ସେଠାକାର ଅନାର ଅତି ପ୍ରସିଦ୍ଧ । ଏହି ଦେଶର ଅଶ୍ୱମାନେ ମଧ୍ୟ ଅତି ଉତ୍କୃଷ୍ଟ ଧରଣର । ମହାରାଜ ଗାନ୍ଧାରଙ୍କର ପୁତ୍ରନାମ ଥିଲା ଧର୍ମ । ଧର୍ମଙ୍କ ପୁତ୍ର ଧୃତ, ତାଙ୍କ ପୁତ୍ର ଦୁର୍ମନା ଓ ଦୁର୍ମନାଙ୍କ ପୁତ୍ରର ନାମ ଥିଲା ପ୍ରଚେତା । ପ୍ରଚେତାଙ୍କର ପରମ ପରାକ୍ରମୀ ଏକଶହ ପୁତ୍ର ଥିଲେ । ଏମାନେ ପାହାଡ଼, ପର୍ବତ ଓ ସମୁଦ୍ର ପାର ହୋଇ ବଡ଼ ବଡ଼ ଟାପୁମାନଙ୍କୁ ଗଲେ ଓ ସେଠାରେ ସେମାନେ ନିଜ ନିଜର ଉପନିବେଶ ସ୍ଥାପନ କଲେ । ଦ୍ୱିଜଗଣଙ୍କଠାରୁ ଦୂରରେ ରହିବା ଦ୍ୱାରା ଓ ଶୀତ ପ୍ରଧାନ ଦେଶରେ ରହିବା ଦ୍ୱାରା ସେମାନଙ୍କର ରୂପ ରଙ୍ଗ ବଦଳି ଗଲା ଓ ସେମାନେ ସଂସ୍କାର ହୀନ ହୋଇ ପଡ଼ିଲେ । ଯଦିଚ ଏମାନଙ୍କର ଏ ସବୁ ଦେଶ ପ୍ରାଚୀନ ମାନଚିତ୍ର ଅନୁସାରେ ଭାରତବର୍ଷର ଅନ୍ତର୍ଗତ ଥିଲା, ପରେ ଭାରତବର୍ଷ କହିଲେ ସେହି ଦେଶକୁ ବୁଝାଇଲା, ଯେଉଁଥିରେ ବର୍ଣ୍ଣାଶ୍ରମୀ ଆର୍ଯ୍ୟମାନେ ବସବାସ କରି ରହିଲେ । ଅର୍ଥାତ୍ ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ, ଅଟକ୍ ନଦୀଠାରୁ କଟକ (ଜଗନ୍ନାଥ ପୁରୀ) ପର୍ଯ୍ୟନ୍ତ ଏହା ବିସ୍ତୃତ ଥିଲା । ପରେ ଗାନ୍ଧାର ଦେଶ ମଧ୍ୟ ଭାରତବର୍ଷରୁ ବିଚ୍ଛିନ୍ନ ହୋଇଗଲା । ପରେ ଭାରତର କେତେକ ଅଞ୍ଚଳ ଯବନାଧିକ୍ୟ କାରଣରୁ ନିଜ

ଅଞ୍ଚଳକୁ ଭାରତରୁ ପୃଥକ୍ କରି ରଖିବାକୁ ଚେଷ୍ଟା କଲେ । ଏହିପରି ଭାବରେ କାଳକ୍ରମେ ଭାରତବର୍ଷର ସୀମା ସଙ୍କୁଚିତ ହୋଇ ଯାଇଛି । ମୁଁ ଏତକରେ ଯଯାତି ପୁତ୍ର ଦ୍ରୁହ୍ୟୁଙ୍କ ବଂଶ ବର୍ଣ୍ଣନା କଲି । ଏହି ପ୍ରକାର ଶର୍ମିଷ୍ଠାଙ୍କଠାରୁ ଉତ୍ପନ୍ନ ମହାରାଜ ଯଯାତିଙ୍କର ତିନି ପୁତ୍ରଙ୍କ ସମ୍ବନ୍ଧରେ ମୁଁ କହିଲି । ଏବେ ଦେବଯାନୀଙ୍କଠାରୁ ଉତ୍ପନ୍ନ ମହାରାଜ ଯଯାତିଙ୍କ ଦ୍ୱିତୀୟ ପୁତ୍ର ତୁର୍ବସୁଙ୍କ ବଂଶ ବିଷୟ ଶ୍ରବଣ କରନ୍ତୁ ।

ମହାରାଜ ତୁର୍ବସୁଙ୍କ ପୁତ୍ରର ନାମ ବହ୍ନି, ବହ୍ନିଙ୍କ ପୁତ୍ର ଭର୍ଗ ଓ ଭର୍ଗଙ୍କ ପୁତ୍ରର ନାମ ଥିଲି ଭାନୁମାନ । ଭାନୁମାନଙ୍କର ପୁତ୍ର ତ୍ରିଭାନୁ । ଏହି ମହାରାଜ ତ୍ରିଭାନୁଙ୍କର ପୁତ୍ର ହୋଇଥିଲେ ପରମ ଯଶସ୍ୱୀ, ଉଦାର ବୁଦ୍ଧି ମହାରାଜ କରନ୍ଧମ । ଏହି କରନ୍ଧମାନଙ୍କର ପୁତ୍ର ହୋଇଥିଲେ ମରୁତ । ଏହି ମରୁତ ଏତେବଡ଼ ଯଜ୍ଞ କରିଥିଲେ—ଯେ, ସେଭଳି ବୈଭବଶାଳୀ ଯଜ୍ଞ ଅନ୍ୟ କୌଣସି ରାଜା ଏ ପର୍ଯ୍ୟନ୍ତ କରିପାରି ନାହାନ୍ତି । ଏହି ମରୁତ ପୁତ୍ରହୀନ ଥିଲେ । ସେ ପୁରୁବଂଶୀୟ ଦୁଷ୍ୟନ୍ତଙ୍କୁ ନିଜର ପୁତ୍ର ସ୍ୱୀକାର କରିଥିଲେ । ତାଙ୍କ ପୂର୍ବରୁ ନିଜ ପିତାଙ୍କର ଅନ୍ୟ କୌଣସି ପୁତ୍ର ନ ଥିବାରୁ ସେ ପରେ ରାଜ୍ୟ ଲୋଭରେ ପୁନଶ୍ଚ ସେହି ପୁରୁବଂଶକୁ ଫେରିଗଲେ । ଏହାଙ୍କ ପରେ ତାଙ୍କ ବଂଶରେ ଆଗକୁ ଆଉ କେହି ରହିଲେ କି ନାହିଁ ତାହାର କୌଣସି ଇତିହାସ ନାହିଁ ।

ଏହାଶୁଣି ଶୌନକ କହିଲେ—"ହେ ସୂତ ! ତାହା ଏବେ ଜଣା ପଡ଼ୁ ବା ନ ପଡ଼ୁ, ଏହା ବାସ୍ତବ କଥା ଯେ, ଏହି ବଂଶାବଳୀ ସମ୍ବନ୍ଧରେ ଶୁଣି ଶୁଣି ଆମେ ଅନେକ କଥା ଜାଣିଲୁଣି । ମଝେ ମଝେ ଆପଣ ସୁନ୍ଦର ସୁନ୍ଦର ମନୋମୁଗ୍ଧକର ବହୁ ଆଖ୍ୟାନ ଶୁଣାଇଲେଣି । ତାହା ଆମେ ମନଯୋଗ ସହକାରେ ଶୁଣିଲୁଣି; କିନ୍ତୁ ତାଙ୍କଠାରୁ ଏ ହେଲେ, ଆଙ୍କଠାରୁ ସେ ହେଲେ । ଏହି କଥାକୁ ଆପଣଙ୍କଠାରୁ ଶୁଣି ଏକପ୍ରକାର କଟୁ ଔଷଧ ସେବନ କଲାଭଳି ଆଖି ବୁଜି ତାହା ଆମେ ଶୁଣି ଯାଉଛୁ । ଏବେ ଆପଣ ରାଜର୍ଷି ଯଯାତିଙ୍କର ଚାରିପୁତ୍ରଙ୍କ ବଂଶାବଳୀ ତ ବର୍ଣ୍ଣନା କଲେ । ଏହା ଆମେ ସ୍ୱୀକାର କରୁଛୁ ଯେ, ଆପଣ ତାହା ଆପଣଙ୍କ ଅତ୍ୟନ୍ତ ଅତି ସଂକ୍ଷେପରେ କହିଲେ । ଯାହା ସବୁ କହିଲେ ତାହା ମଧ୍ୟ ପର୍ଯ୍ୟାପ୍ତ । ତେଣୁ ଆପଣ ବର୍ତ୍ତମାନ ଯଯାତିଙ୍କ ଜ୍ୟେଷ୍ଠ ପୁତ୍ର ଯଦୁଙ୍କ ବଂଶ ସମ୍ବନ୍ଧରେ ବର୍ଣ୍ଣନା କରନ୍ତୁ । ଏଥିରେ ଯେଉଁ ମୁଖ୍ୟ ମୁଖ୍ୟ ପ୍ରସିଦ୍ଧ ପ୍ରସିଦ୍ଧ ରାଜାମାନେ ଥିଲେ ତାଙ୍କରି ବିଷୟରେ କେବଳ ବର୍ଣ୍ଣନା କରନ୍ତୁ । ବର୍ତ୍ତମାନ ଶ୍ରୀକୃଷ୍ଣଙ୍କ କଥା କହନ୍ତୁ । ସେହି ନନ୍ଦନନ୍ଦନଙ୍କର କମନୀୟ କ୍ରୀଡ଼ା (ଲୀଳା ସମ୍ବନ୍ଧରେ) ଶୁଣାନ୍ତୁ । ଭଗବାନଙ୍କର ବ୍ରଜ, ମଥୁରା ଓ ଦ୍ୱାରକାର ସୁମଧୁର ଲୀଳା ସମ୍ବନ୍ଧରେ କହନ୍ତୁ, ଏଥିରେ ହିଁ କର୍ଣ୍ଣର ସାର୍ଥକତା ଅଛି । ଏହି ଭକ୍ତିକଥାର ଲୋଭରେ ଆମ୍ଭେମାନେ

ଧୈର୍ଯ୍ୟଧର ଏପର୍ଯ୍ୟନ୍ତ ଏ ସବୁ କଥା ଶୁଣି ଆସିଲୁ; କିନ୍ତୁ ଏ ସବୁତ ଅନ୍ୟ ବିଷୟ । ସେହି କୃଷ୍ଣଙ୍କ କଥା ହିଁ ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ଠିକ୍ ଅଛି ମହାରାଜ ! ଏବେ ମୁଁ ମହାରାଜ ଯଦୁଙ୍କ ବଂଶ ବିଷୟରେ ହିଁ ଆପଣମାନଙ୍କୁ କହିବି । ଆପଣମାନେ ଧୈର୍ଯ୍ୟଧର ତାହା ଶୁଣନ୍ତୁ । ପୂର୍ଣ୍ଣ ରସ ହିଁ ତ ରସ । ଏଥିରେ ଏଣୁ ତେଣୁ କହିବାର କିଛି ନାହିଁ ।"

## ଛପ୍ପୟ

ତୁର୍ବସୁକେ ସୁତ ବହ୍ନି ବହ୍ନି-କେ ଭର୍ଗ ଭୂମିପତି ।
ଭାନୁମାନ ତିନ ତନୟ ତ୍ରିଭାନହୁ ତିନ ସୁତ ଦୃଢ଼ମତି ।।
ନୃପ ତ୍ରିଭାନୁକେ ତନୟ କରନ୍ଧମ ଭୂପ ମନସ୍ୱୀ ।
ମରୁତ ନୃପତି ତିନ ପୁତ୍ର ଯଜ୍ଞ କରି ଭୟେ ଯଶସ୍ୱୀ ।।
ପୁରୁବଂଶୀ ଦୁଷ୍ୟନ୍ତ କୂଁ, ଗୋଦ ଲୟୋ ପରି ଲୋଭବଶ ।
ନିଜକୁଲମହଁ ପୁନି ମିଲି ଗୟୋ, ବଢ୍ୟୋ ନ ପୁନି ତିନ ବଂଶଯଶ ।।



## ଯଦୁବଂଶ ବର୍ଣ୍ଣନ

ଯଯାତେର୍ଜ୍ୟେଷ୍ଠପୁତ୍ରସ୍ୟ ଯଦୋର୍ବଂଶଂ ନରର୍ଷଭ ।
ବର୍ଣ୍ଣୟାମି ମହାପୁଣ୍ୟଂ ସର୍ବପାପହରଂ ନୃଣାମ୍ ।।
ଯଦୋର୍ବଂଶଂ ନରଃ ଶ୍ରୁତ୍ୱା ସର୍ବପାପୈଃ ପ୍ରମୁଚ୍ୟତେ ।
ଯତ୍ରାବତୀର୍ଣ୍ଣୋ ଭଗବାନ୍ ପରମାତ୍ମା ନରାକୃତିଃ ।।

(ଶ୍ରୀ ଭା ୯ ସ୍କ ୨୩ଶ ଅ ୧୮-୧୯-୨୦ ଶ୍ଳୋ)

### ଛପ୍‌ପୟ

ଯଦୁନନ୍ଦନ କେ ପାଦପଦ୍ମମହଁ ଶୀଶ ନବାଊଁ ।
ଅବ ଯଯାତି କେ ଜ୍ୟେଷ୍ଠପୁତ୍ର ଯଦୁବଂଶ ସୁନାଊଁ ।।
ଭଏ୍ୟ ଚାର ଯଦୁପୁତ୍ର ସହସ୍ରଜିତ୍, କ୍ରୋଷ୍ଟା, ରପୁ ନଲ ।
ନୃପ ସହସ୍ରଜିତ୍ ପୁତ୍ର ଭଯେ ଶତଜିତହୁ ଅମିତବଲ୍ ।।
ଶତଜିତ କେ ସୁତ ମହାହୟ ହୈହୟ ହୁସର ବେଣୁହୟ ।
ହୈହୟ କୁଲ ବଲବାନ ଅତି, କରୀ ଜିନନ ଦଶ ଦିଶ ବିଜୟ ।।

ଭଗବାନଙ୍କର ଅବତାର ଯେଉଁ କୁଳରେ ହୁଏ, ତାହା ଅତ୍ୟନ୍ତ ପାବନ ଓ ସର୍ବଶ୍ରେଷ୍ଠ । ମହାରାଜ ଭଗୀରଥ ନିଜର ତପୋବଳରେ ଶ୍ରୀ ଗଙ୍ଗାଙ୍କୁ ଭୂପୃଷ୍ଠକୁ ଆଣିଥିଲେ; କିନ୍ତୁ ସେଥିରେ ମହାରାଜ ସଗର, ଅସମଞ୍ଜ, ଅଂଶୁମାନ ଓ ଦିଲୀପଙ୍କର ମଧ୍ୟ ତପ ଓ ଶ୍ରମ ସମ୍ମିଳିତ ଥିଲା । ପଞ୍ଚମ ପୁରୁଷକୁ ଆସି ଭଗବତୀ ତ୍ରିପଥଗାମିନୀ ଗଙ୍ଗା ପ୍ରସନ୍ନ ହେଲେ ଓ ଭକ୍ତବର ଭଗୀରଥଙ୍କ ପଛେ ପଛେ ଚାଲି ଆସିଲେ । ଏଥିପାଇଁ ତାଙ୍କର ନାମ ଭାଗିରଥୀ । ଏହି ପ୍ରକାରେ ଏହା ସତ୍ୟ ପ୍ରତିପାଦିତ ହୁଏ ଯେ ଶ୍ରୀ ଦେବକୀ, ବସୁଦେବ ଓ ନନ୍ଦ ଯଶୋଦାଙ୍କ ପୁଣ୍ୟ ପ୍ରଭାବରେ ପ୍ରଭୁଙ୍କର ପ୍ରାକଟ୍ୟ ହୋଇଥିଲା; କିନ୍ତୁ ଏଥିରେ ଯଦୁବଂଶର ସମସ୍ତ ରାଜାଙ୍କର ମଧ୍ୟ ପୁଣ୍ୟ ସମ୍ମିଳିତ ।

ପ୍ରଭୁଙ୍କର ପ୍ରାକଟ୍ୟ କୌଣସି ସମାଧାନ ଯୋଗୁଁ ବା ପୁଣ୍ୟ ଫଳରେ କଦାପି ସମ୍ଭବ ହୋଇ ନ ପାରେ, ସେ ନିଜେ କୃପାକରି ଯେଉଁ କୁଳକୁ ପବିତ୍ର କରିବାକୁ ଚାହାନ୍ତି, ଯେଉଁ ବଂଶକୁ ଗୌରବାନ୍ୱିତ କରିବାକୁ ଚାହାନ୍ତି, ସେହି ବଂଶରେ ହିଁ ପ୍ରକଟ ହୁଅନ୍ତି । ତାଙ୍କୁ ସାଧନା ଦ୍ୱାରା କେହି ବାନ୍ଧି ପାରନ୍ତି ନାହିଁ । ସେ ନିଜେ ପ୍ରେମ ଡୋରୀରେ ବନ୍ଧାହୋଇ ନାଚି ପାରନ୍ତି । ଏହି ଅଷ୍ଟବିଂଶତି ଦ୍ୱାପର ଯୁଗ ଶେଷରେ ସେ ଯଦୁକୁଳ ଉପରେ କୃପା କରିଥିଲେ । ସେହି ଯଦୁକୁଳ ବିଷୟରେ କୁହାଯାଉ ଅଛି ।

ସୂତ କହିଲେ—"ମୁନିଗଣ ! ଏବେ ମୁଁ ମହାରାଜ ଯଯାତିଙ୍କ ଜ୍ୟେଷ୍ଠ ତଥା ଶ୍ରେଷ୍ଠ ପୁତ୍ର ଶୁକ୍ରନନ୍ଦିନୀ ଭଗବତୀ ଦେବଯାନୀଙ୍କ ଗର୍ଭରୁ ସର୍ବପ୍ରଥମେ ଉତ୍ପନ୍ନ ହୋଇଥିବା ମହାରାଜ ଯଦୁଙ୍କ ବଂଶ ବର୍ଣ୍ଣନା କରୁଅଛି । ଯେଉଁ ବଂଶରେ କି ଅଜନ୍ମା ଭଗବାନ୍ ବାସୁଦେବ ନର ରୂପରେ ଅବତୀର୍ଣ୍ଣ ହୋଇଥିଲେ ।"

ମହାରାଜ ଯଯାତିଙ୍କ ଦେବଯାନୀଙ୍କଠାରୁ ଯେଉଁଭଳି ଯଦୁଙ୍କର ଜନ୍ମ ହୋଇଥିଲା ଓ ଯେପରି ପିତାଙ୍କ ବୃଦ୍ଧାବସ୍ଥା ନ ନେଇଥିବାରୁ ତାଙ୍କୁ କ୍ଷେତ୍ରିତ୍ୱରୁ ଭ୍ରଷ୍ଟ କରି ଦିଆ ଯାଇଥିଲା, ଏହି ସବୁ ପ୍ରସଙ୍ଗକୁ ମୁଁ ମହାରାଜ ଯଯାତିଙ୍କ ଚରିତରେ କହିଅଛି । ଏବେ ତାଙ୍କର ଭବିଷ୍ୟତ ବଂଶ କଥା ଶ୍ରବଣ କରନ୍ତୁ । ମହାରାଜ ଯଦୁଙ୍କର ଚାରିପୁତ୍ର ଥିଲେ । ଏମାନେ ସତେ ଯେପରି ଚାରି ପୁରୁଷାର୍ଥ, ଚାରିବେଦ ଓ ଚାରିବର୍ଣ୍ଣ (ଚତୁରାଶ୍ରମ)ର ମୂର୍ତ୍ତିମାନ ବ୍ୟକ୍ତିତ୍ୱ ହୋଇ ଉତ୍ପନ୍ନ ହୋଇଥିଲେ । ସେମାନଙ୍କର ନାମ ଯଥାକ୍ରମେ ସହସ୍ରଜିତ୍, କ୍ରୋଷ୍ଟା, ନଳ ଓ ରିପୁ ଥିଲା । ଏମାନଙ୍କ ମଧ୍ୟରୁ ମୁଁ ସହସ୍ରଜିତ୍ ଓ କ୍ରୋଷ୍ଟାଙ୍କ ବଂଶ କଥା କହୁଅଛି ।

ସହସ୍ରଜିତ୍‌ଙ୍କ ପୁତ୍ରର ନାମ ଥିଲା ଶତଜିତ୍ । ଏହି ଶତଜିତ୍ ମହାରାଜଙ୍କର ତିନି ପୁତ୍ର ଥିଲେ । ପ୍ରଥମ ପୁତ୍ର ମହାହୟ, ଦ୍ୱିତୀୟ ବେଣୁହୟ ଓ ତୃତୀୟ ପୁତ୍ରର ନାମ ଥିଲା ହୈହୟ । ଏହି ସର୍ବ କନିଷ୍ଠ ତୃତୀୟ ପୁତ୍ର ହୈହୟ ଅତ୍ୟନ୍ତ ପରାକ୍ରମୀ ଓ ପ୍ରଭାବଶାଳୀ ଥିଲେ । ଏହାଙ୍କ ନାମରେ ହୈହୟବଂଶୀ କ୍ଷତ୍ରିୟ ଅତ୍ୟନ୍ତ ପ୍ରତାପଶାଳୀ କ୍ଷତ୍ରିୟ ରୂପେ ବିବେଚିତ ହେଲେ । ମହାରାଜ ହୈହୟଙ୍କ ପୁତ୍ରର ନାମ ଧର୍ମ, ତାଙ୍କ ପୁତ୍ରର ନାମ ନେତ୍ର । ନେତ୍ରଙ୍କର ପୁତ୍ରର ନାମ କୁନ୍ତୀ, କୁନ୍ତୀଙ୍କର ପୁତ୍ର ସୌହଞ୍ଜି ଓ ସୌହଞ୍ଜିଙ୍କର ପରମ ଯଶସ୍ୱୀ ପୁତ୍ର ହେଉଛନ୍ତି ମହାରାଜ ମହିଷ୍ମାନ୍ । ଯେ କି ନର୍ମଦା କୂଳରେ ନିଜ ନାମରେ ମହିଷ୍ମତିପୁରୀ ନିର୍ମାଣ କରିଥିଲେ ଓ ନିଜ ରାଜଧାନୀ ରୂପେ ସେଠାରେ ସୁଖରେ ରାଜ୍ୟଶାସନ କରୁଥିଲେ । ମହାରାଜ ମହିଷ୍ମାନ୍‌ଙ୍କ ପୁତ୍ରର ନାମ ଥିଲା ଭଦ୍ରସେନ ଓ ତାଙ୍କ ପୁତ୍ର ଧନକ । ଏହି ମହାରାଜ ଧନକଙ୍କର ପାଞ୍ଚ ପୁତ୍ର ଥିଲେ । ସେମାନଙ୍କ ନାମ ଦୁର୍ମଦ, କୃତବୀର୍ଯ୍ୟ, କୃତାଗ୍ନି, କୃତବର୍ମା ଓ

କୃତୌଜା । ଏହି ପାଞ୍ଚଜଣଙ୍କ ମଧ୍ୟରେ କୃତବୀର୍ଯ୍ୟ ବଳ ବୁଦ୍ଧି ଓ ପରାକ୍ରମରେ, ଯଶ ଓ ଖ୍ୟାତିରେ ସବଶ୍ରେଷ୍ଠ ଥିଲେ । ଏହାଙ୍କ ପୁତ୍ରର ନାମ ଥିଲା ସହସ୍ରାର୍ଜ୍ଜୁନ, ଯେ କି କୃତବୀର୍ଯ୍ୟଙ୍କ ପୁତ୍ର ହୋଇ ଥିବାରୁ କାର୍ତ୍ତିବୀର୍ଯ୍ୟ ନାମରେ ପ୍ରସିଦ୍ଧ ଥିଲେ । ଏହି କାର୍ତ୍ତିବୀର୍ଯ୍ୟ ସହସ୍ରାର୍ଜ୍ଜୁନ ଚକ୍ରବର୍ତ୍ତୀ ରାଜା ଥିଲେ । ସେତେବେଳେ ପୃଥିବୀରେ ତାଙ୍କ ସମକକ୍ଷ ବୋଲି କୌଣସି ରାଜା ନ ଥିଲେ । ସୂର୍ଯ୍ୟବଂଶ ତଥା ଚନ୍ଦ୍ରବଂଶର ସମସ୍ତ ରାଜାଙ୍କୁ ହରାଇ ସେ ସପ୍ତଦ୍ୱୀପବର୍ତ୍ତୀ ସମସ୍ତ ବସୁନ୍ଧରାକୁ ଏକାକୀ ଉପଭୋଗ କରିଥିଲେ । କୌଣସି ରାଜା ଯଜ୍ଞ, ଦାନ ତପ, ଯୋଗ, ବିଦ୍ୟା ଓ ସୌର୍ଯ୍ୟ ବୀର୍ଯ୍ୟାଦିରେ ସେତେବେଳେ ତାଙ୍କ ସମକକ୍ଷ ହୋଇପାରି ନ ଥିଲେ । ସେ ଯେଉଁଠି ଯୁଦ୍ଧ କରୁଥିଲେ, ସେଠାରେ ବିଜୟୀ ହେଉଥିଲେ । ସେ କେବେହେଲେ ବୃଦ୍ଧ ହୋଇ ନ ଥିଲେ ବା ତାଙ୍କର ବଳ ବିକ୍ରମ କେବେହେଲେ ହ୍ରାସ ନ ଥିଲା । ଏହାଙ୍କର ଧନ, ଐଶ୍ୱର୍ଯ୍ୟ ତ କେବେହେଲେ କମ୍ ନ ଥିଲା । ପଞ୍ଚାଅଶୀ ହଜାର ବର୍ଷ ପର୍ଯ୍ୟନ୍ତ ଏ ସମସ୍ତ ଇନ୍ଦ୍ରିୟ ସୁଖ ଅବ୍ୟାହତ ଭାବରେ ଭୋଗ କରିଥିଲେ । ସେତେବେଳେ ସେ ଏକମାତ୍ର ଚକ୍ରବର୍ତ୍ତୀ ରାଜା ଥିଲେ ।

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଯଦୁବଂଶୀୟ ରାଜାମାନଙ୍କର ତ ଯଯାତିଙ୍କ ଶାପରେ ଚକ୍ରବର୍ତ୍ତୀ ସିଂହାସନରେ ବସିବାର ଅଧିକାର ନ ଥିଲା, ପୁନଶ୍ଚ ଏ ସମଗ୍ର ପୃଥିବୀର ଏକଛତ୍ର ସମ୍ରାଟ ସେ କପରି ହୋଇ ପାରିଲେ ?"

ସୂତ କହିଲେ—"ମହାରାଜ ! ଶାପ-ଫାପ ବଳବାନଙ୍କର କିଛି କରି ପାରେନାହିଁ । ଯାହାଙ୍କ ଉପରେ ଭଗବାନଙ୍କର କୃପା ହୋଇଯାଏ, ତାଙ୍କର ସମସ୍ତ ଶାପ ଦୂର ହୋଇଯାଏ । ତାଙ୍କ କୁଳକୁ ମନୁଷ୍ୟ ହିଁ ଶାପ ଦେଇଥିଲେ । ସେ ଭଗବାନଙ୍କ ଅଂଶାବତାର ଅବଧୂତ ଭଗବାନ୍ ଦତ୍ତାତ୍ରେୟଙ୍କର ସେବାରେ ମନପ୍ରାଣ ଢାଳିଦେଲେ । ଅତ୍ୟଧିକ ସେବା-ଶୁଶ୍ରୂଷା କରି ସେ ଭଗବାନ୍ ଦତ୍ତାତ୍ରେୟଙ୍କୁ ପ୍ରସନ୍ନ କଲେ ଓ ତାଙ୍କଠାରୁ ଯୋଗବିଦ୍ୟା ଓ ସମସ୍ତ ଅଣିମାଦି ସିଦ୍ଧିଲାଭ କଲେ । ଦତ୍ତାତ୍ରେୟଙ୍କର କୃପାରୁ ହିଁ ସେ ଏକ ସହସ୍ରବାହୁ ଲାଭକଲେ । ଭଗବାନ୍ ଦତ୍ତାତ୍ରେୟ ତାଙ୍କୁ ଆଶୀର୍ବାଦ ଦେଇ କହିଥିଲେ—"ଭଗବାନଙ୍କ ବ୍ୟତୀତ ତୁମ୍ଭଙ୍କୁ ଅନ୍ୟ କୌଣସି କ୍ଷତ୍ରିୟ ଯୁଦ୍ଧରେ ପରାସ୍ତ କରି ପାରିବେ ନାହିଁ । ତୁମର ସବୁଠାରେ ବିଜୟ ହେବ ।" ଏହି କାରଣରୁ ସେ ଯେଉଁ ରାଜାଙ୍କ ସହିତ ଯୁଦ୍ଧ କରୁଥିଲେ ତାଙ୍କୁ ପରାସ୍ତ କରୁଥିଲେ । ତାଙ୍କ ସମ୍ମୁଖରେ ଠିଆ ହେବାକୁ କେହି ସାହସ କରୁ ନ ଥିଲେ । ଶେଷରେ ଭଗବାନ ପରଶୁରାମ ରୂପରେ ଅବତୀର୍ଣ୍ଣ ହୋଇ ତାଙ୍କୁ ବଧ କରିଥିଲେ । ଏହି କାର୍ତ୍ତିବୀର୍ଯ୍ୟ ସହସ୍ରାର୍ଜ୍ଜୁନଙ୍କୁ ମଧ୍ୟ ଭଗବାନଙ୍କର କଳାବତାର ବୋଲି ସ୍ୱୀକାର କରାଯାଏ । ପୁରାଣରେ ଏହାଙ୍କ ଉପାସନାବିଧି ରହିଛି ଓ ଏହାଙ୍କ ନାମରେ ଗାୟତ୍ରୀ ମଧ୍ୟ

ଜପ କରାଯାଏ । ଏହାଙ୍କ ପ୍ରସଙ୍ଗ ଭଗବାନ ପରଶୁରାମଙ୍କ ଚରିତ ପ୍ରସଙ୍ଗରେ କୁହାଯାଇଛି; ତେଣୁ ତାହା ପୁନଃ କହିବାର ଆବଶ୍ୟକତା ନାହିଁ । ସେ ସମୟରେ ପୃଥିବୀର ସମସ୍ତ କ୍ଷତ୍ରିୟ ଅହଙ୍କାର ମୋହ, ମଦ ମାତ୍ସର୍ଯ୍ୟରେ ମଜ୍ଜି ଯାଇଥିଲେ । ବିଦ୍ୱାନ୍ ବ୍ରାହ୍ମଣମାନଙ୍କୁ ଏମାନେ ଅପମାନିତ କରିବାରେ ଲାଗିଲେ, କାହାରିକୁ ଖାତିର ବି କଲେନାହିଁ । ଏହି ମହାରାଜ ସହସ୍ରାର୍ଜ୍ଜୁନଙ୍କର ଯୋଗବଳ ମଧ୍ୟ ଥିଲା । ସେ ଅଷ୍ଟସିଦ୍ଧି ଲାଭ କରିଥିଲେ । ଶରୀରରେ ତାଙ୍କର ଅମିତ ପରାକ୍ରମ ଥିଲା । ସେ ନିଜେ ସପ୍ତଦ୍ୱୀପା ପୃଥିବୀର ଚକ୍ରବର୍ତ୍ତୀ ସମ୍ରାଟ ତ ଥିଲେ । ଏହା ବ୍ୟତୀତ ତାଙ୍କର ମହାବଳଶାଳୀ ଏକ ସହସ୍ର ପୁତ୍ର ମଧ୍ୟ ଥିଲେ । ଏହିସବୁ କାରଣରୁ ମହାରାଜଙ୍କର ଦର୍ପ ଆବଶ୍ୟକତାଠାରୁ ଅଧିକ ବଢ଼ିଗଲା । ସେହି ଦର୍ପରେ ସେ ପରଶୁରାମଙ୍କର ପିତା ମହର୍ଷି ଯମଦଗ୍ନିଙ୍କର ଯଜ୍ଞୀୟ କାମଧେନୁ ହରଣ କରିନେଲେ । ଏଥିପାଇଁ ପରଶୁରାମ କ୍ରୋଧ କରି ତାଙ୍କୁ ମାରିଦେଲେ ଓ ତାଙ୍କର ପୁତ୍ରମାନଙ୍କୁ ମଧ୍ୟ ମାରି ଯମପୁରକୁ ପଠାଇଦେଲେ । ସହସ୍ର ପୁତ୍ରଙ୍କ ମଧ୍ୟରୁ କେବଳ ପାଞ୍ଚଜଣ ପଳାଇ ଯାଇ ଜୀବିତ ରହିଥିଲେ । ସେମାନଙ୍କର ନାମ ଜୟଧ୍ୱଜ, ଶୂରସେନ, ବୃଷଭ, ମଧୁ ଓ ଊର୍ଜ୍ଜିତ ଥିଲା । ଏହାଙ୍କଠାରୁ ପରେ ଯଦୁବଂଶ ବୃଦ୍ଧି ପାଇଲା ।

ଏହି ପାଞ୍ଚଜଣଙ୍କ ମଧ୍ୟରେ ସବୁଠାରୁ ବଡ଼ ମହାରାଜ ଜୟଧ୍ୱଜଙ୍କର ତାଳଜଂଘ ନାମକ ଅତ୍ୟନ୍ତ ପ୍ରଭାବଶାଳୀ ପୁତ୍ର ଥିଲେ । ତାଙ୍କର ଏକଶତ ପୁତ୍ର ଥିଲେ । ଏମାନଙ୍କୁ ତାଳଧ୍ୱଜୀୟ କ୍ଷତ୍ରିୟ କୁହାଯାଏ ।

ଯେଉଁ ସମୟରେ ତାଳଧ୍ୱଜୀୟ କ୍ଷତ୍ରିୟ ଥିଲେ, ସେହି ସମୟରେ ଅଯୋଧ୍ୟାରେ ସୂର୍ଯ୍ୟବଂଶୀୟ ମହାରାଜ ବାହୁକ ରାଜ୍ୟ ଶାସନ କରୁଥିଲେ । ଏମାନେ ଅବଧ (ଅଯୋଧ୍ୟା) ଉପରେ ଆକ୍ରମଣ କରି ଅବଧ ରାଜ୍ୟ ଜୟ କଲେ ଓ ତାହା ନିଜ ରାଜ୍ୟରେ ମିଶାଇ ଦେଲେ । ମହାରାଜ ବାହୁକ ନିଜ ରାଣୀଙ୍କ ସହିତ ବନକୁ ଯାଇ ଔର୍ବ ମୁନିଙ୍କ ଆଶ୍ରମରେ ରହିବାକୁ ଲାଗିଲେ । ସେ ରାଣୀ ଗର୍ଭବତୀ ଥିବା ଅବସ୍ଥାରେ ସେଠାରେ ଇହଲୀଳା ସମ୍ବରଣ କଲେ । ପରେ ରାଣୀଙ୍କ ଗର୍ଭରୁ ଚକ୍ରବର୍ତ୍ତୀ ମହାରାଜ ସଗର ଜନ୍ମଲାଭ କଲେ । ସକ୍ଷମ ହୋଇଯିବାରୁ ସେ ସୈନ୍ୟସାମନ୍ତ ସଂଗ୍ରହ କରି ତାଳଜଂଘୀୟ ରାଜାମାନଙ୍କ ରାଜ୍ୟ ଆକ୍ରମଣ କଲେ । ଏଥିରେ ବହୁତ ତାଳଜଙ୍ଘୀୟ ରାଜା ମରିଗଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ଯବନ, ଶକ, ହୈହୟ ଓ ବର୍ବର ଜାତିର ଲୋକମାନେ ଆସିଥିଲେ । ସେ ସମସ୍ତଙ୍କୁ ମହାରାଜ ସଗର ମଧ୍ୟ ପରାସ୍ତ କଲେ । ସେମାନେ ସଗରଙ୍କ ଭୟରେ ଭୟଭୀତ ହୋଇ ତାଙ୍କ ଗୁରୁ ଔର୍ବଙ୍କ ନିକଟକୁ ଗଲେ । ଗୁରୁ ଔର୍ବ ସଗରଙ୍କୁ ସେମାନଙ୍କ ପ୍ରାଣଦାନ ଦେବାକୁ କହିଲେ । ମହାରାଜ ସଗର ସେମାନଙ୍କୁ ତ ମାରିଲେ ନାହିଁ; କିନ୍ତୁ ସେ ସମୟର ପ୍ରଥା ଅନୁସାରେ

ସେମାନଙ୍କୁ ବେଦବାହ୍ୟ କରିଦେଲେ ଓ ବର୍ଣ୍ଣାଶ୍ରମ ଧର୍ମରୁ ପୃଥକ୍ କରିଦେଲେ । ସେମାନଙ୍କ ପାଇଁ ଏ ଏପରି ବିଚାର ଦେଶମାନ ଗଠନ କଲେ, ଯାହା କି ଦୂରରୁ ଜଣା ପଡ଼ିବ ଏସବୁ ଦେଶ ବେଦବାହ୍ୟ ଅନାର୍ଯ୍ୟ ଦେଶ । ତାଳଜଂଘଙ୍କ ଶହେ ପୁତ୍ରଙ୍କ ମଧ୍ୟରୁ ଯେ ସବୁଠାରୁ ବଡ଼ ଥିଲେ, ତାଙ୍କର ନାମ ଥିଲା ବୀତିହୋତ୍ର । ମହାରାଜ ସଗର ତାଙ୍କୁ ବେଦବାହ୍ୟ ନ କରି ତାଙ୍କର ପୈତୃକ ରାଜ୍ୟ ତାଙ୍କୁ ଫେରାଇ ଦେଇଥିଲେ ବୋଲି କୁହାଯାଏ । ସେହି ବୀତିହୋତ୍ରଙ୍କ ପୁତ୍ର ମହାଯଶସ୍ୱୀ ମହାରାଜ ମଧୁ । ଏହାଙ୍କ ଯୋଗୁଁ ଯଦୁବଂଶ ଯାଦବଙ୍କର ମାଧବ ବା ମଧୁବଂଶୀ ସଂଜ୍ଞା ହୋଇଥିଲା । ଏହି ମଧୁଙ୍କର ମଧ୍ୟ ଏକଶହ ପୁତ୍ର ହୋଇଥିଲେ । ଏମାନଙ୍କ ମଧ୍ୟରେ ବୃଷ୍ଣି ହେଉଛନ୍ତି ଜ୍ୟେଷ୍ଠ ପୁତ୍ର, ସେ ସର୍ବଶ୍ରେଷ୍ଠ ମଧ୍ୟ ଥିଲେ । ଏହି ବୃଷ୍ଣିଙ୍କ ନାମ ଅନୁସାରେ ଯାଦବଙ୍କୁ ବାର୍ଷ୍ଣେୟ ବା ବୃଷ୍ଣିବଂଶୀ ବୋଲି କୁହାଯାଏ । ଯଦୁ, ମଧୁ ଓ ବୃଷ୍ଣି, ଏହି ତିନିଜଣ ଏହି କୁଳର ପରମ କୀର୍ତ୍ତିମାନ୍ ଥିଲେ । ଏହାଙ୍କଠାରୁ ଉତ୍ପନ୍ନ ବଂଶର ଯାଦବମାନଙ୍କୁ ଯାଦବ, ମାଧବ ଓ ବାର୍ଷ୍ଣେୟ ବୋଲି କୁହାଯାଏ ।

ସୂତ କହିଲେ—"ମୁନିଗଣ ! ମୁଁ ଏହିପରି ଭାବରେ ମହାରାଜ ଯଦୁଙ୍କର ଜ୍ୟେଷ୍ଠ ପୁତ୍ର ସହସ୍ରଜିତ୍‌ଙ୍କ ବଂଶର ମୁଖ୍ୟ ମୁଖ୍ୟ ରାଜାମାନଙ୍କର ନାମ କହିଲି । ଏବେ ମୁଁ ମହାରାଜଙ୍କ ଦ୍ୱିତୀୟ ପୁତ୍ର କ୍ରୋଷ୍ଟାଙ୍କ ବଂଶ ସମ୍ବନ୍ଧରେ ବର୍ଣ୍ଣନା କରିବି । ତାହା ଆପଣମାନେ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ହୈହୟ ନୃପ ତେଁ ଭୟେ ଅଠବୀଂ ପୀଢ଼ୀ ଅର୍ଜୁନ ।
କାର୍ତ୍ତବୀର୍ଯ୍ୟ ଅତିବଲୀ ସହସ୍ର ଭୁଜ, ସିଦ୍ଧ ସର୍ବଗୁନ ॥
ଦତ୍ତକୃପା ତେଁ ସିଦ୍ଧି ସହସ୍ର ସୁତ ସବ ସୁଖ ପାୟେ ।
ପରଶୁରାମ ତେଁ ସୁତନ ସଙ୍ଗ ମରି ସ୍ୱର୍ଗ ସିଧାୟେ ॥
ସହସ୍ର ନମହୁଁ ତେଁ ପାଞ୍ଚ ସୁତ, ବଚେ ଜୟଧ୍ୱଜ, ମଧୁ, ବୃଷଭ ।
ଶୂରସେନ ଊର୍ଜିତ ନୃପତି, ସୁନହୁ, ଜୟଧ୍ୱଜ, କୁଲ ଋଷଭ ॥



# ମହାଯୋଗୀ ମହାଭୋଗୀ
# ମହାରାଜ ଶଶବିନ୍ଦୁ

ସ୍ୱାହିତୋ ରୁଷେଦ୍ଗୁର୍ବୈ ତସ୍ୟ ଚିତ୍ରରଥସ୍ତତଃ ।
ଶଶବିନ୍ଦୁର୍ମହାଯୋଗୀ ମହାଭୋଜୋ ମହାନଭୂତ୍ ।।

(ଶ୍ରୀ ଭା ୯ ସ୍କ, ୨୩ ଅ, ୩୨ ଶ୍ଳୋକ)

## ଛପ୍ପୟ

ତାଳଜଙ୍ଘ ଜନ ପୁତ୍ର ଭୟେ ଜନକେ ହୁ ଶତ ସୁତ ।
ବୀତହୋତ୍ର ହୀ ବଡେ ଶେଷ ଲଭ ମରେ ଶକ୍ତିଯୁତ ।।
ବୀତହୋତ୍ର କେ ପୁତ୍ର ଭୟେ ମଧୁ ବୃଷ୍ଣି ଭୟେ ଜନ ।
ମାଧବ ଅରୁ ବାଷ୍ଣେୟ ନାମତେଂ, ପାଲହିଂ ଦେଶଜନ ।।
କ୍ରୋଷ୍ଟା ଯଦୁ ଜ୍ୟେ ଦ୍ୱିତୀୟ ସୁତ, ବୃଜିନବାନ୍ ଜନକେ ତନୟ, ।
ବୃଜିନବାନ୍ କେ ବଂଶ କୁଁ, ସୁନହୁ ବିପ୍ରଗନ ହେ ସଦୟ ।

କଳିକାଳରୂପୀ ଦାବାନଳ ଯୋଗ ଜ୍ଞାନ ତଥା ସିଦ୍ଧିଗୁଡ଼ିକୁ ଭସ୍ମ କରି ଦେଇଅଛି । ଏଥିପାଇଁ କଳିଯୁଗୀ କ୍ଷୁଦ୍ରବୁଦ୍ଧି ବିଶିଷ୍ଟ ଲୋକମାନଙ୍କର ଯୋଗର ସିଦ୍ଧି ଉପରେ ସହସା ବିଶ୍ୱାସ ହୁଏ ନାହିଁ । ଅମୁକ ଋଷି ଦଶ ହଜାର ବର୍ଷ ପର୍ଯ୍ୟନ୍ତ ତପ କଲେ, ଅମୁକ ରାଜର୍ଷି ପଞ୍ଚାଅଶୀ ହଜାର ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଶାସନ କଲେ । ଏ ସବୁ କଥା ଚଣ୍ଡୁଖାଁର ମଣ୍ଡାଖିଆ ଗପ ଭଳି ସେମାନେ ମନେ କରନ୍ତି । କିନ୍ତୁ ଏ କଥା ଅସତ୍ୟ ନୁହେଁ । ଅକ୍ଷରେ ଅକ୍ଷରେ ସତ୍ୟ । ଆମ୍ଭମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସ ଆଜି କମି ଯାଉଛି । ମନୁଷ୍ୟ ଯାହା ଚାହେଁ, ତାହା କରିପାରେ । ତା'ଠାରେ ଯୋଗର ଅନନ୍ତ ଶକ୍ତି ବିଦ୍ୟମାନ । ତା'ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ, ସବୁକିଛି ସମ୍ଭବ । ଯଦି କିଛି ଅସମ୍ଭବ ହେଉ ଥାଆନ୍ତା, ତାହାହେଲେ ପଣ୍ଡିତମାନେ ଏହି

ବିଶ୍ୱାସୀ ମୂର୍ଖମାନଙ୍କ କଥାରେ ବିଶ୍ୱାସ କରି ରହନ୍ତେ । ଶ୍ରଦ୍ଧା ଓ ବିଶ୍ୱାସ ଆଗରେ କୌଣସି କଥା ଅସମ୍ଭବ ନୁହେଁ ।

ସୂତ କହିଲେ—"ମୁନିଗଣ ! ମୁଁ ଅତି ସଂକ୍ଷେପରେ ମହାରାଜ ଯଦୁଙ୍କର ପ୍ରଥମ ପୁତ୍ର ସହସ୍ରଜିତ୍ଙ୍କ ବଂଶର କିଛି ଅଂଶ ବର୍ଣ୍ଣନା କଲି । ଏବେ ଆପଣମାନେ ତାଙ୍କର ଦ୍ୱିତୀୟ ପୁତ୍ର ମହାରାଜ କ୍ରୋଷ୍ଟାଙ୍କ ବଂଶ ସମ୍ବନ୍ଧରେ ଶ୍ରବଣ କରନ୍ତୁ । ମହାରାଜ କ୍ରୋଷ୍ଟାଙ୍କ ପୁତ୍ରର ନାମ ଥିଲା ବୃଜିନବାନ୍ । ତାଙ୍କ ପୁତ୍ରର ନାମ ଥିଲା ଶ୍ୱାହି । ଶ୍ୱାହିଙ୍କର ପୁତ୍ର ରୁଶେକୁ, ତାଙ୍କ ପୁତ୍ର ଚିତ୍ରରଥ ଓ ମହାରାଜ ଚିତ୍ରରଥଙ୍କର ପୁତ୍ର ହେଉଛନ୍ତି ପରମ ଯୋଗୀ, ପରମ ସାମର୍ଥ୍ୟବାନ୍, ବିଷୟକୁ ଅବ୍ୟାହତ ଗତିରେ ଭୋଗ କରୁଥିବା, ଚକ୍ରବର୍ତ୍ତୀ ରାଜରାଜେଶ୍ୱର, ପରମ ଐଶ୍ୱର୍ଯ୍ୟଶାଳୀ ମହାରାଜ ଶଶବିନ୍ଦୁ । ଆପଣମାନେ ତାଙ୍କ ଐଶ୍ୱର୍ଯ୍ୟ ଓ ବିଷୟଭୋଗ ବିଷୟରେ ଶ୍ରବଣ କଲେ ଆଶ୍ଚର୍ଯ୍ୟ ନ ହୋଇ ରହିପାରିବେ ନାହିଁ । ପୃଥିବୀରେ କୌଣସି ମନୁଷ୍ୟ ଏତେ ଐଶ୍ୱର୍ଯ୍ୟଶାଳୀ ହୋଇ ନ ପାରେ କିମ୍ବା ଏତେ ଗୁଡ଼ିଏ ଭୋଗକୁ ଭୋଗି ନ ପାରେ ।"

ଶୌନକ ପଚାରିଲେ—"ହେ ସୂତ ! ମହାରାଜ ଶଶବିନ୍ଦୁ କେତେ ବଡ଼ ଐଶ୍ୱର୍ଯ୍ୟଶାଳୀ ଥିଲେ, ସେ ବିଷୟରେ ଆମ୍ଭମାନଙ୍କୁ କିଛି କହନ୍ତୁ ।"

ସୂତ କହିଲେ—"ମହାରାଜ ! ମୁଁ କ'ଣ ବା କହିବି । ଆପଣମାନେ ଏତିକି ବୁଝନ୍ତୁ ଯେ, ପୃଥିବୀରେ ଚଉଦ ମହାରତ୍ନ ଥିବାର କୁହାଯାଏ, ଅର୍ଥାତ୍ ଗାଈ ହାତୀ, ଘୋଡ଼ା, ରଥ, ସ୍ତ୍ରୀ, ବାଣ, କୋଷ, ମାଳା, ବସ୍ତ୍ର, ଶକ୍ତି, ପାଶ, ମଣି, ଛତ୍ର ଓ ବିମାନ ଏହି ସବୁକୁ ମହାରତ୍ନ କୁହାଯାଏ । ତାଙ୍କ ନିକଟରେ ଏହି ସବୁ ରତ୍ନ ଅଗଣିତ ଓ ଅସଂଖ୍ୟ ଥିଲା । ହାତୀଙ୍କର ଗଣନା କରିଯାଇ ପାରୁ ନ ଥିଲା । ସେହିପରି ଅଶ୍ୱ, ରଥ, ସଂଖ୍ୟା ମଧ୍ୟ ଅକଳନୀୟ ଥିଲା । ତାଙ୍କ ନିକଟରେ ସମସ୍ତ ଦ୍ରବ୍ୟ ବାସ ଥିଲା । ତାଙ୍କ ନିକଟରେ ଯେତେ ସୁବର୍ଣ୍ଣ ଥିଲା, ତାହା କଳନା କରିବା କାହାରି ପକ୍ଷରେ ସମ୍ଭବ ହେଉ ନଥିଲା । ତାଙ୍କର ମାଳା ଦେବତାମାନଙ୍କ ମାଳା ଭଳି ଦିବ୍ୟ ଥିଲା । ସେ କେବେହେଲେ ସେଥିପାଇଁ ଗର୍ବ ଅନୁଭବ କରୁ ନ ଥିଲେ କିମ୍ବା ନିଜକୁ ଗୌରବାନ୍ୱିତ ମନେ କରୁ ନ ଥିଲେ । ତାଙ୍କ ପାଖରେ ଏପରି ଦିବ୍ୟ ବସ୍ତ୍ର ଥିଲା, ଯାହା କି କେବେହେଲେ ମଳିନ ହେଉ ନ ଥିଲା କିମ୍ବା ଜୀର୍ଣ୍ଣ ହେଉ ନ ଥିଲା । ତାଙ୍କର ଅଲୌକିକ ଶକ୍ତି ମଧ୍ୟ ଥିଲା । ମଣିମାଣିକ୍ୟରେ ତ ଭଣ୍ଡାର ଘର ଭରପୂର ଥିଲା । ତାଙ୍କର ଛତ୍ର ଏପରି ଦିବ୍ୟ ଥିଲା ଯେ, ତାହା ପ୍ରତ୍ୟେକ ଋତୁପାଇଁ ଅନୁକୂଳ ହେଉଥିଲା । ତାଙ୍କର ଅସଂଖ୍ୟ ବିମାନ ଥିଲା ଓ ତାହା ସର୍ବଦା ଆକାଶରେ ଉଡ଼ୁଥିଲା । ଏହି ସମସ୍ତ ମହାରତ୍ନମାନଙ୍କ ମଧ୍ୟରେ ସ୍ତ୍ରୀ-ରତ୍ନକୁ ସର୍ବଶ୍ରେଷ୍ଠ ମହାରତ୍ନ ବୋଲି କୁହାଯାଏ । ତାଙ୍କର ସେହି

ମହାରାଜଙ୍କୁ ତଥା ରାଣୀ ଦଶ ହଜାର ଥିଲେ । ସେମାନେ ଏକରୁ ଅନ୍ୟେକ ଶ୍ରେଷ୍ଠ ରୂପବତୀ ଥିଲେ । ସୁନ୍ଦରତାରେ ସେମାନେ ସ୍ୱର୍ଗୀୟ ଲଲନାମାନଙ୍କୁ ମଧ୍ୟ ବଳି ଯାଉଥିଲେ ।

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଏହା ତ ଅତି ଆଶ୍ଚର୍ଯ୍ୟର ବିଷୟ ! ଜଣେ ପୁରୁଷ ଦଶ ସହସ୍ର ସ୍ତ୍ରୀଙ୍କର ପତି କପରି ହେବା ସମ୍ଭବ ?"

ସୂତ କହିଲେ—"ମହାରାଜ ! ମୁଁ ବାରମ୍ବାର କହି ଆସୁଛି ଯେ, ଏ ସୃଷ୍ଟିରେ ଅସମ୍ଭବ ବୋଲି କିଛି ନାହିଁ । ଆମ୍ଭମାନଙ୍କ ବୁଦ୍ଧିରେ ପରଦା ଆଚ୍ଛାଦିତ ହୋଇ ଯାଇଛି । ଆମେ ଆମ ଅନ୍ତଃକରଣକୁ ଏତେ ସଙ୍କୁଚିତ କରିଦେଇଛୁ ଯେ ନିଜ ସାମର୍ଥ୍ୟ ବାହାରେ ଥିବା ବିଷୟ ଚିନ୍ତା ବି କରିପାରୁ ନାହୁଁ । ଆମେ ଏହା ମଧ୍ୟ ଚିନ୍ତା କରି ପାରୁନାହୁଁ ଯେ, ଏହି ଅନନ୍ତ ବ୍ରହ୍ମାଣ୍ଡ ବିଶିଷ୍ଟ ବିଶ୍ୱରେ ଆମର ଗୋଟିଏ ବ୍ରହ୍ମାଣ୍ଡର ଏତେଟା ଅସ୍ତିତ୍ୱ ନାହିଁ, ଯାହାକି ଅନନ୍ତ ମହାସାଗରର ଏକ ବିନ୍ଦୁ ସଦୃଶ । ଯେତେବେଳେ ଏହି ଚତୁର୍ଦ୍ଦଶ ଭୁବନ ବିଶିଷ୍ଟ ବ୍ରହ୍ମାଣ୍ଡର ଏହିପରି ଅବସ୍ଥାନ, ତା' ମଧ୍ୟରେ ଏକ ମାନବର ଅସ୍ତିତ୍ୱ ବା କେତେ ? ଗୋଟିଏ କଥା ଅଛି ଯେ, ଏହି ବ୍ରହ୍ମାଣ୍ଡର ବ୍ରହ୍ମା ଥରେ ରୁଷ୍ଟ ହୋଇ କହିଥିଲେ—"ମୁଁ ଆଉ ସୃଷ୍ଟି କରିବି ନାହିଁ, ଦେଖିବି ବ୍ରହ୍ମାଣ୍ଡର କାର୍ଯ୍ୟ କପରି ଚାଲିବ ।"

ଏହି ଘଟଣାରୁ ଦେଖାଗଲା—ବହୁତ ବଡ଼ ବଡ଼ ପକ୍ଷୀ ଉଡ଼ି ଯାଉଛନ୍ତି । ରୁଷ୍ଟ ହୋଇଥିବା ବ୍ରହ୍ମା ସମ୍ମୁଖରେ ବସିଥିବା ଏକ ବୃଦ୍ଧ ମୁନିଙ୍କୁ ପଚାରିଲେ—"ମୁନିବର ! ଏତେ ଗୁଡ଼ିଏ ପକ୍ଷୀ କେଉଁଆଡ଼େ ଯାଉଛନ୍ତି ? ସେମାନେ କ'ଣ ଏତେ ଲମ୍ବ ହୋଇ ଉଡ଼ୁଛନ୍ତି ?"

ମୁନି କହିଲେ—"ବ୍ରହ୍ମାଜୀ ! ଏ ପକ୍ଷୀମାନେ ସମଗ୍ର ବିଶ୍ୱ ଭ୍ରମଣ କରି ଫେରୁଅଛନ୍ତି । ଏ ବ୍ରହ୍ମାଣ୍ଡଟି ଯେପରି, ସେହିପରି ଅସଂଖ୍ୟ ବ୍ରହ୍ମାଣ୍ଡ ରହିଛି । ସେହି ସବୁ ବ୍ରହ୍ମାଣ୍ଡର ପୃଥକ୍ ପୃଥକ୍ ବ୍ରହ୍ମା ଅଛନ୍ତି । କାହାର ଚାରିମୁଖ, କାହାର ଦଶମୁଖ, କାହାର ଶତମୁଖ ଓ କାହାର କାହାର ସହସ୍ର ମୁଖ । ସେହି ବ୍ରହ୍ମାମାନେ ସେହି ସବୁ ପକ୍ଷୀଙ୍କ ଉପରେ ବସିଛନ୍ତି । ଯେଉଁ ବ୍ରହ୍ମାଣ୍ଡର ବ୍ରହ୍ମା ରୁଷ୍ଟ ହୁଅନ୍ତି, ତାଙ୍କୁ ସେହି ବ୍ରହ୍ମାଙ୍କ ମଧ୍ୟରୁ ଅନ୍ତର କରି ବସାଇ ଦିଆଯାଏ ।"

ଏ ପର୍ଯ୍ୟନ୍ତ ବ୍ରହ୍ମା ନିଜକୁ କେବଳ ବ୍ରହ୍ମା ବୋଲି ଜାଣୁଥିଲେ । ଯେତେ-ବେଳେ ସେ ଅସଂଖ୍ୟ ବ୍ରହ୍ମାଙ୍କ କଥା ଶୁଣିଲେ, ସେତେବେଳେ ତାଙ୍କ ମୋହ ଦୂର ହୋଇଗଲା ଓ ସେ ପୁନର୍ବାର ସୃଷ୍ଟି କାର୍ଯ୍ୟରେ ଲାଗିଗଲେ ।

ଏହା ବାସ୍ତବ କଥା ଯେ, କୂପମଣ୍ଡୂକ କ୍ଷୁଦ୍ର କୂପ ଭିତରେ ପଡ଼ିରହି ଭାବୁଥାଏ ଯେ ସଂସାରଟା ଏତିକି ବଡ଼ । ଯେତେବେଳେ ସେ କୌଣସି ପ୍ରକାରେ କୂଅ ଦଉଡ଼ି ସାହାଯ୍ୟରେ ପଦାକୁ ବାହାରି ଆସେ, ସେତେବେଳେ ସେ ଆଶ୍ଚର୍ଯ୍ୟ ହୁଏ ଯେ, ଯେତିକି ଅଞ୍ଚଳକୁ ମୁଁ ବିଶ୍ୱ ବ୍ରହ୍ମାଣ୍ଡ ବୋଲି ମନେ କରୁଥିଲି, ତାହା ଅତ୍ୟନ୍ତ ବଡ଼ । ଏହା ଅସୀମ, ଏହାର କୌଣସି ସୀମା ସରହଦ ନାହିଁ । ଯୋଗ ଶକ୍ତିର କୌଣସି ସୀମା ନାହିଁ । ମହାମୁନି ସୌଭରି ଯୋଗ ପ୍ରଭାବରୁ ହିଁ ପଚାଶ ସ୍ତ୍ରୀ ବିବାହ କରିଥିଲେ ଓ ପଚାଶ ରୂପ ହୋଇ ପୃଥକ୍ ପୃଥକ୍ ପ୍ରତ୍ୟେକଙ୍କ ମହଲରେ ସର୍ବଦା ଉପସ୍ଥିତ ରହୁଥିଲେ । ସେହିପରି ମହାରାଜ ଶଶବିନ୍ଦୁ ଦଶ ହଜାର ରୂପ ହୋଇ ଦଶ ହଜାର ରାଣୀଙ୍କୁ ସନ୍ତୁଷ୍ଟ କରୁଥିଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ତେବେ ସେହି ମହାଯୋଗୀ ରାଜର୍ଷିଙ୍କର କେତେ ପୁତ୍ର ହୋଇଥିଲେ ?"

ସୂତ ହସି ହସି କହିଲେ—"ମହାରାଜ ! ପୁତ୍ରଙ୍କ କଥା କହୁ ଆଉ ପଚାରନ୍ତୁ ନାହିଁ, ଆପଣ ଶୁଣିଲେ ହସିବା କେବଳ ସାର ହେବ ଓ ସେ କଥାକୁ ଅସମ୍ଭବ ବୋଲି ମନେ କରିବେ । ଆପଣ ଯାହା କହିବେ, ଏହି କଳିଯୁଗୀୟ ଲୋକଙ୍କ ପକ୍ଷନେଇ ହିଁ କହିବେ । କିନ୍ତୁ ଭଗବନ୍ ! ମୁଁ ପୂର୍ବରୁ କହିଛି ଯେ, ଯୋଗ ନିକଟରେ କିଛି ଅସମ୍ଭବ ନୁହେଁ । ଯୋଗ ପ୍ରଭାବରୁ ହିଁ ବିଶ୍ୱାମିତ୍ର ଋଷି ନୂତନ ସୃଷ୍ଟି ସର୍ଜନା କରିଥିଲେ । ମହାରାଜ ଶଶବିନ୍ଦୁଙ୍କର ଦଶ ହଜାର ରାଣୀଙ୍କଠାରୁ ପ୍ରତ୍ୟେକଙ୍କର ଏକ ଏକ ଲକ୍ଷ ପୁତ୍ର ହୋଇଥିଲେ; ଅର୍ଥାତ୍ ମହାରାଜଙ୍କର ସବୁମୋଟ ଦଶକୋଟି ପୁତ୍ର ହୋଇଥିଲେ ।"

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଏବେ ତ ଆପଣଙ୍କ ଆଗରେ ଏ କଥା ମାନି ନେବାକୁ ହେବ । କିନ୍ତୁ ଏହା ମାନବୀୟ ବୁଦ୍ଧିରେ ଗ୍ରହଣ ହେବା ସମ୍ଭବ ନୁହେଁ । ଜଣେ ଲୋକର ଦଶକୋଟି ପୁତ୍ର ! ମନେକରନ୍ତୁ ଯୋଗ ପ୍ରଭାବରେ କୌଣସି ପ୍ରକାରେ ଯଦି ଅଣ୍ଡାବଚ୍ଚା ରୂପରେ ଜନ୍ମ ହୁଅନ୍ତି, ତେବେ ସେମାନେ ରହିବେ କେଉଁଠି ? ଆମ ଭାରତବର୍ଷ ଯଦିଓ ଏକ ବିଶାଳ ଦେଶ, ତଥାପି ଏଥିରେ ସମସ୍ତ ସ୍ତ୍ରୀ-ପିଲା, ବୁଢ଼ାବୁଢ଼ୀ ହୋଇ ୪୦ କୋଟି ଲୋକ ଥିଲେ । ଆମେ ମଧ୍ୟ ଅନୁଭବ କରୁଥାଉଁ ଯେ ଜନସଂଖ୍ୟା ଆହୁରି ଅଧିକ ବଢ଼ିବାରେ ଲାଗିଛନ୍ତି । ଗତ ଅର୍ଦ୍ଧ ଶତାବ୍ଦୀରେ ଏହା ଦ୍ୱିଗୁଣିତ ହୋଇ ଯାଇଛନ୍ତି । ଯେତେବେଳେ ଏତେ ବଡ଼ ଦେଶରେ ଏତେ ଲୋକ ନ ଧରିବେ, ତେବେ ଜଣେ ଲୋକର ଦଶକୋଟି ଲେଖାଏଁ ପୁତ୍ର ହେଲେ କେଉଁଠାରେ ରହିବେ ?"

ସୂତ କହିଲେ—"ଭଗବନ୍ ! ଏ ସବୁ ବିଚାର ଜଡ଼ବାଦୀମାନଙ୍କର ବିଚାର, ଯେଉଁମାନଙ୍କର ସିଦ୍ଧାନ୍ତ ଯେ, ପଞ୍ଚଭୂତର ସଂଯୋଗରୁ ହିଁ ସୃଷ୍ଟି ସ୍ୱତଃ ହୋଇ ଚାଲିଛି, ଯେଉଁ ସୃଷ୍ଟିରେ କ ଚୈତନ୍ୟର ଆବଶ୍ୟକତା ଅନୁଭବ ନ କରି ସେମାନେ ଗଙ୍ଗା ଆଦି ପବିତ୍ର ନଦୀକୁ ଜଡ଼ ବୋଲି ବିଚାର କରୁଛନ୍ତି । କିନ୍ତୁ ସେମାନେ ପୃଥିବୀକୁ ମାତା ବୋଲି ମାନୁଛନ୍ତି, ଚୈତନ୍ୟଦେବୀ ବୋଲି ବିଶ୍ୱାସ କରି ତାଙ୍କର ଉପାସନା କରୁଛନ୍ତି । ସେମାନଙ୍କ ପାଇଁ ପୃଥିବୀ ଯେତେ ବଡ଼ ହୋଇଥାଉ ବା ସାନ ହୋଇଥାଉ, ସେଥିରେ ରହିବା ପାଇଁ ସ୍ଥାନ କେବେହେଲେ ହେବନାହିଁ । ଯାହାର ଯେପରି ଭାବନା, ତାକୁ ସେହି ପ୍ରକାର ଫଳ ମିଳିଥାଏ । ପ୍ରଚକ୍ଷୁରେ ଯେପରି ରଙ୍ଗର କାଚ ଲଗାଇ ଦେଖିବ, ପ୍ରତ୍ୟେକ ବସ୍ତୁ ସେହିପରି ରଙ୍ଗ ଦେଖାଯିବ । ଯେଉଁମାନେ ଧନରାଶି ଏହି ହିସାବ କରୁଥାଆନ୍ତି ଯେ ଜମି କେତେ ମାଣ ଅଛି, ତହିଁରେ କେତେ ଶସ୍ୟ ଉତ୍ପନ୍ନ ହେବ, କେତେ ଲୋକ ତହିଁରେ ଜୀବନଧାରଣ କରି ପାରିବେ, ସେମାନଙ୍କୁ ସେହି ଭାବନା ଅନୁସାରେ ଫଳ ମିଳେ । ଯୋଗ ପ୍ରଭାବରେ ମହାରାଜ ଶଶବନ୍ଦୁ ଯେତେ ଚାହୁଁଥିଲେ ପୃଥିବୀକୁ ସେତେ ବଢ଼ାଇ ପାରୁଥିଲେ । ଯେତେ ଚାହୁଁଥିଲେ ସେତେ ସଙ୍କୁଚିତ କରିପାରୁଥିଲେ ।"

ଶୌନକ କହିଲେ—"ଯଦି ଶ୍ରଦ୍ଧା ଉପରେ ସବୁ ନିର୍ଭରେ କରେ, ତେବେ ହେ ସୂତ ! "ଆପଣଙ୍କ କଥା ମାନି ନେବାକୁ ପଡ଼ିବ, କିନ୍ତୁ ରାଜା ତ ଯୋଗୀ ଥିଲେ । ତାଙ୍କ ଦଶ କୋଟି ପୁତ୍ର ତ ଯୋଗୀ ନ ଥିଲେ । ତେବେ ସେମାନଙ୍କ ବଂଶଜ-ମାନେ କେଉଁଠି ରହିଲେ ?"

ସୂତ କହିଲେ—"ହଁ ଆଜ୍ଞା ! ସେମାନଙ୍କର ବଂଶ ବଢ଼ି ନଥିଲା । ଯୁଦ୍ଧରେ ସେମାନଙ୍କ ମଧ୍ୟରୁ କେତେକ ମୃତ୍ୟୁବରଣ କରିଥିଲେ ଓ ଆଉ କେତେକ ନିଜ ନିଜ ମଧ୍ୟରେ ଲଢ଼େଇ କରି ସ୍ୱତଃ ମୃତ୍ୟୁ ବରଣ କରିଥିଲେ । ଯେପରି କି ଭଗବାନ୍ ଶ୍ରୀକୃଷ୍ଣଙ୍କର ପୁତ୍ର ପୌତ୍ରମାନେ ପ୍ରଭାସ ତୀର୍ଥରେ ପରସ୍ପର ମଧ୍ୟରେ ଲଢ଼େଇ କରି ମୃତ୍ୟୁ ବରଣ କରିଥିଲେ । ସେହି ଦଶକୋଟି ପୁତ୍ରଙ୍କ ମଧ୍ୟରୁ ମାତ୍ର ପ୍ରଧାନ ଛଅ ଜଣ ପୁତ୍ରଙ୍କର ବଂଶ ବଢ଼ି ଚାଲିଲା ।"

ଶୌନକ କହିଲେ—"ହେ ସୂତ ! ଏବେ ଆପଣ ଆମ୍ଭମାନଙ୍କୁ ତାଙ୍କର ବଂଶ ବିସ୍ତୃତରେ କହନ୍ତୁ, ଯାହାଙ୍କ ବଂଶରେ କି ଭଗବାନ ବାସୁଦେବ ଜନ୍ମଗ୍ରହଣ କରିଥିଲେ ।"

ସୂତ କହିଲେ—"ମହାରାଜ ! ତାହା ହିଁ ତ ମୁଁ ଶୁଣାଉଛି । ଭଗବାନଙ୍କୁ ଯଦୁ ନନ୍ଦନ, ଯାଦବ, ଯାଦବେନ୍ଦ୍ର, ଯଦୁବଂଶ ବିଭୂଷଣ ଓ ଯାଦବନାଥ ବୋଲି କୁହା

ଯାଏ । ତାଙ୍କୁ ମାଧବ, ବୃଷ୍ଣିବଂଶାବତଂସ, ବାର୍ଷ୍ଣେୟ ଓ ବୃଷ୍ଣିକୁଳ କମଳ ମଧ୍ୟ କୁହାଯାଏ । ଏଣୁ ଅତ୍ୟନ୍ତ ସଂକ୍ଷେପରେ ମୁଁ ତାଙ୍କ ବଂଶର ଲୋକମାନଙ୍କ ନାମ ମଧ୍ୟ କହିବ । ହଁ, ତେବେ ମହାରାଜ ଶଶବିନ୍ଦୁଙ୍କ ଜ୍ୟେଷ୍ଠ ପୁତ୍ର ପୃଥୁଶ୍ରବାଙ୍କ ବଂଶ ବର୍ଣ୍ଣନ କରୁଛି । ପୃଥୁଶ୍ରବାଙ୍କର ପୁତ୍ରର ନାମ ଧର୍ମ ଓ ଧର୍ମଙ୍କ ପୁତ୍ରର ନାମ ଉଶନା ଥିଲା । ଏହି ଉଶନା ଏକଶହ ଅଶ୍ୱମେଧ ଯଜ୍ଞ କରିଥିଲେ। ଉଶନାଙ୍କର ପୁତ୍ର ରୁଚକ ଓ ରୁଚକଙ୍କର ପୁରୁଜିତ୍, ରୁକ୍ମ, ରୁକ୍‌ମେଷୁ, ପୃଥୁ ଓ ଜ୍ୟାମଘ ଏହି ପାଞ୍ଚପୁତ୍ର ଥିଲେ । ଏମାନଙ୍କ ମଧ୍ୟରେ କନିଷ୍ଠତମ ଜ୍ୟାମଘ ନିଜ ସ୍ତ୍ରୀର କମୁଡ଼ା (ବଂଶ) ଥିଲେ ।”

ଶୌନକ କହିଲେ—“ହେ ସୂତ ! କମୁଡ଼ା କାହାକୁ କୁହାଯାଏ ?”

ସୂତ କହିଲେ—“ମହାରାଜ ! ମୁଁ ପୂର୍ବରୁ ଏହା କହିଛି । ଆପଣ ବୋଧହୁଏ ଭୁଲି ଯାଇଛନ୍ତି । କୁହୁକ ଦେଖାଉଥିବା ଯାଦୁକର ସଙ୍ଗରେ ଗୋଟିଏ ପିଲା ରଖିଥାଏ । ନିଜ ଇଚ୍ଛା ଅନୁସାରେ ତାକୁ ସେ ବଶ କରି ଯେପରି ଖେଳ ଦେଖାଇବାକୁ ଚାହେଁ, ସେପରି ଦେଖାଏ ଓ ତାହା ମୁଖରେ ଯାହା କୁହାଇବାକୁ ଚାହେଁ ତାହା କୁହାଏ । ସେହିପରି ସେ ନିଜ ସ୍ତ୍ରୀ ବଶରେ ରହିଥିଲେ । ସ୍ତ୍ରୀ ଯେତେବେଳେ ଉଠିବାକୁ କହୁଥିଲା ଉଠୁଥିଲେ ଓ ଯେତେବେଳେ ବସିବାକୁ କହୁଥିଲା ବସୁଥିଲେ । ସାର କଥା ହେଲା ସ୍ତ୍ରୀର ସଙ୍କେତ ଅନୁସାରେ ସେ ନାଚୁଥିଲେ । ଏବେ ତାଙ୍କର ଚରିତ ଶୁଣନ୍ତୁ ।”

## ଛପ୍‌ପୟ

ଚୌଥୀ ପୀଢ଼ୀ ମାଁହି ଭୟେ ଶଶବିନ୍ଦୁ ଯୋଗିବର ।
ବେଗ, ଯୋଗ, ଐଶ୍ୱର୍ଯ୍ୟ ବସହିଂ ଜିନମହଁ ଗୁନ ସୁଖକର ।
ଦଶ ସହସ୍ର ତନ ନାରି କୋଟି ଦଶ ସୁତ ଉପଜାୟେ ।
ଜିନକୋ ବୈଭବ ଦେଖି ସ୍ୱର୍ଗପତି ଇନ୍ଦ୍ର ଲଜାୟେ ।।
ପୃଥୁଶ୍ରବା ତିନକେ ତନୟ, ‘ଧର୍ମ’, ପୁତ୍ର ତିନ ଶ୍ରେଷ୍ଠତର ।
ଉଶନା, ଉଶନା କେ ତନୟ, ରୁଚକ ପଞ୍ଚ ତିନ ସୁତ ସୁଧର ।।



# ଶୈବ୍ୟାପତି ଜ୍ୟାମଘ

ପୁରୁଜିଦ୍‌ରୁକ୍ମେଷୁଥୁରୁକ୍ମଜ୍ୟାମଘସଂଜ୍ଞିତାଃ ।
ଜ୍ୟାମଘସ୍ତ୍ୱପ୍ରଜୋଽପ୍ୟନ୍ୟାଂ ଭାର୍ଯ୍ୟାଂ ଶୈବ୍ୟାପତିର୍ଭୟାତ୍ ।

(ଶ୍ରୀ ଭା ୯ ସ୍କ ୨୩ ଅଧ୍ୟାୟ ୩୫ ଶ୍ଳୋକ)

## ଛପ୍‌ପୟ

ପୁରୁଜିତ, ପୃଥୁ, ରୁକ୍ମେଷୁ, ରୁକ୍ମ ଜ୍ୟାମଘତ୍ତୁ ରୁଚକଙ୍କେ ।
ଜ୍ୟାମଘ ଛୋଟେ ନୃପତି ନ ସନ୍ତତି ହୋଇ ତନକେ ॥
ଶୈବ୍ୟା ନୃପ କୀ ନାର ଭୂପ ନିଜ ବଶ କର ଲୀନ୍ହୋ ।
ସନ୍ତତି ଇଚ୍ଛା ରହୀ ବ୍ୟାହ ଡ଼ର ଔର ନ କୀନ୍ହୋ ॥
ସୀମା:ବର୍ତ୍ତୀ ଭୂପ କୀ, କନ୍ୟା ହର ଲାୟେ ନୃପତି ।
ରଥାସୀନ ଯୁବତୀ ଲଖୀ, ବୋଲୀ ଶୈବ୍ୟା କୁପିତ ଅତି ॥

ଏହି ଗୃହସ୍ଥି ରୂପ ରଥର ପତି ପତ୍ନୀ ହେଉଛନ୍ତି ଦୁଇ ପହିଆ । ଉଭୟେ ନିଜ ନିଜ କକ୍ଷରେ ଯଦି ସୁନ୍ଦର ହୁଅନ୍ତି, ତେବେ ସଂସାର-ରଥଟି ଘର୍ ଘର୍ ଶବ୍ଦ କରି ଆନନ୍ଦ ପୂର୍ବକ ଚାଲେ । କିନ୍ତୁ ଯଦି ଦୁହେଁ ନିଜ ନିଜର କର୍ତ୍ତବ୍ୟ ଭୁଲି ବିପରୀତ ଆଚରଣ କରନ୍ତି, ତେବେ ରଥ ଅଟକି ଯାଏ । ଚାଲୁଥିଲେ ମଧ୍ୟ ଅତ୍ୟନ୍ତ କଷ୍ଟରେ ଚାଲେ । ପତ୍ନୀ ହେଉଛି ଘରର ଗୃହିଣୀ ଓ ପତି ବାହାରର । ପତ୍ନୀର କର୍ମକ୍ଷେତ୍ର ଛୋଟ, କିନ୍ତୁ ମହତ୍ତ୍ୱପୂର୍ଣ୍ଣ । ପତିଙ୍କ କ୍ଷେତ୍ର ବିସ୍ତୃତ, କିନ୍ତୁ ସେଥିରେ ରାଗ, ଦ୍ୱେଷ, ଈର୍ଷ୍ୟା, ପ୍ରତିଦ୍ୱନ୍ଦ୍ୱିତା, ଚିନ୍ତା ଆଦି ଥାଏ । ସ୍ତ୍ରୀ ଗୃହର ଗୃହିଣୀ, ସେ ପୁରୁଷଙ୍କୁ ପତନରୁ ରକ୍ଷା କରନ୍ତି ବୋଲି ତାଙ୍କୁ ପତ୍ନୀ କୁହାଯାଏ । ପୁରୁଷଙ୍କର ପ୍ରତ୍ୟେକ କର୍ମରେ ସାହାଯ୍ୟ କରୁଥିବାରୁ ତାଙ୍କୁ ଅର୍ଦ୍ଧାଙ୍ଗିନୀ କୁହାଯାଏ । ପତ୍ନୀର ତଥା ତାଙ୍କଠାରୁ

ଉତ୍ପନ୍ନ ସନ୍ତାନ ସନ୍ତତିଙ୍କର ପାଳନ କରୁ ଥିବାରୁ ପୁରୁଷଙ୍କୁ ପତି ବୋଲି କୁହାଯାଏ । ଭରଣ ପୋଷଣ କରୁଥିବାରୁ ତାଙ୍କୁ ଭର୍ତ୍ତା କୁହାଯାଏ । ସତ୍‌ପତ୍ନୀ ପ୍ରେମ ପୂର୍ବକ ବ୍ୟବହାର କରି ପତିଙ୍କୁ ନିଜ ବଶରେ ରଖି ପାରନ୍ତି । ପତି, ପତ୍ନୀଙ୍କର ପ୍ରେମ ପାଶରେ ବନ୍ଧା ହୋଇ ତାଙ୍କର ବିରୁଦ୍ଧ ଆଚରଣ କରନ୍ତି ନାହିଁ । ପ୍ରେମ ବନ୍ଧନରେ ଅତ୍ୟନ୍ତ ସୁଖ ଅଛି । ଯେଉଁ ପତ୍ନୀ ପ୍ରେମ ନ କରି ଅଭିମାନ ଭରି ହୃଦୟରେ ପତିଙ୍କୁ ଶାସନ କରନ୍ତି, ପତିଙ୍କୁ ନିଜର କ୍ରୀଡ଼ାମୃଗ କରି ରଖନ୍ତି, ନିଜ ଇଚ୍ଛାନୁସାରେ ନଚାନ୍ତି ଓ ସେହି ପୁରୁଷ ମଧ୍ୟ ଏପରି ନପୁଂସକ ଯେ, ନିଜ ସ୍ତ୍ରୀ ନିକଟରେ ପୋଷା ବିରାଡ଼ିପରି ରହେ । ସ୍ତ୍ରୀର କ୍ରୋଧକୁ ଦେଖି ଡରରେ ଥରି ଉଠେ, ନିଜର ପୁରୁଷତ୍ୱର ଅଧିକାରକୁ ସମ୍ପୂର୍ଣ୍ଣରୂପେ ହରାଇ ବସେ, ତେବେ ସେହି ପତି ପତ୍ନୀ ଉଭୟଙ୍କର ପତନ ହୋଇଥାଏ । ଏପରି ପୁରୁଷଙ୍କୁ ସ୍ତ୍ରୀଜିତ୍ କହନ୍ତି । ଶାସ୍ତ୍ରକାର ସ୍ତ୍ରୀଜିତ୍ ପୁରୁଷଙ୍କୁ ଜ୍ଞାନ ଆଦି ପ୍ରଦାନ କରିବା ପାଇଁ ଅନୁପଯୁକ୍ତ ତଥା ଜ୍ଞାନ ଲାଭ କରିବାର ଅନଧିକାରୀ ବୋଲି କହିଛନ୍ତି । ଏପରି ପୁରୁଷଙ୍କ ସହିତ ସମ୍ଭାଷଣ କରିବା ଉଚିତ୍ ନୁହେଁ । ଏପରି ସ୍ତ୍ରୀଙ୍କ ପାଇଁ ତ କିଛି କହିବାର ନାହିଁ । ସେମାନେ ନିଜର ଇହଲୋକ ଓ ପରଲୋକ ଉଭୟ ଲୋକକୁ ନଷ୍ଟ ଭ୍ରଷ୍ଟ କରି ଥାଆନ୍ତି । ଯେଉଁ ସ୍ତ୍ରୀର ପତି (ପ୍ରେମରେ ନୁହେଁ) ଭୟରେ ସ୍ତ୍ରୀକୁ ଦେଖି ଥରହର ହୋଇ କମ୍ପିବାକୁ ଲାଗେ, ଯେଉଁ ସ୍ତ୍ରୀ ସର୍ବଦା ଉଚ୍ଚ ଆସନରେ ବସି ପତିଙ୍କୁ ନୌକର ଭଳି ଉଚିତ୍ ଅନୁଚିତ୍ ଆଦେଶ ଦିଏ, ପ୍ରଥମତଃ ତାର ସନ୍ତାନ ସେ ହରାଇ ଥାଏ, ଯଦିବା ସନ୍ତାନ ଥାଏ, ତେବେ ତାର କନ୍ୟା ହୁଅନ୍ତି । ଯଦି କଦାଚିତ୍ ପୁତ୍ର ହୁଅନ୍ତି, ତେବେ ସେ ପାଗଳ, ମୂର୍ଖ, ବ୍ୟଭିଚାରୀ ବା ନପୁଂସକ ହୁଅନ୍ତି । ସାର କଥା ଏହି ଯେ, ସ୍ତ୍ରୀଜିତ୍ ପୁରୁଷ ସନ୍ତାନ ସନ୍ତତି ସୁଖ ଭୋଗ କରି ପାରେ ନାହିଁ । ତାହାର ଜୀବନ ସର୍ବଦା ଭୟଗ୍ରସ୍ତ ହୋଇ ଥାଏ । ଏପରି ସ୍ତ୍ରୀ ଲୋକମାନେ ଇହଲୋକରେ ଦୁଃଖୀ ହୁଅନ୍ତି ଓ ମୃତ୍ୟୁ ପରେ ନରକ ଗମନ କରନ୍ତି ।

ସୂତ କହିଲେ—"ମୁନିଗଣ ! ଏବେ ମୁଁ ମହାରାଜ ରୁଚକଙ୍କ କନିଷ୍ଠ ପୁତ୍ର ଜ୍ୟାମଘଙ୍କ ଚରିତ କହୁଅଛି, ଯେ କି ନିଜ ସ୍ତ୍ରୀର ଜମୁଡ଼ା (ବୋଲକରା) ଥିଲେ । ରାଜା ଜ୍ୟାମଘଙ୍କର ରାଣୀଙ୍କ ନାମ ଶୈବ୍ୟାଥିଲା । ସେ ଅତ୍ୟନ୍ତ ରାଗୀ ଓ ମୁଖରା ଥିଲେ । ସେ ନିଜର ପତିଙ୍କୁ ଆଦୌ ପସନ୍ଦ ବା ଖାତିର କରୁ ନ ଥିଲେ । ନୌକର ଚାକରଙ୍କ ପରି ସର୍ବଦା ବ୍ୟବହାର କରୁଥିଲେ । ରାଜା ଠିଆ ହୋଇଥିବା ସମୟରେ ସେ ଆସନ ଉପରେ ବସି ଥାଆନ୍ତି ଓ ସେଠାରେ ବସି ଆଦେଶ ଦିଅନ୍ତି ଏବଂ କହନ୍ତି—କିହୋ ! ତୁମେ ସେ କାମଟା କାହିଁକି କରିନାହଁ ?"

ରାଜା ମଧ୍ୟ ବୃଦ୍ଧ ଥିଲେ । ସେ ଡରିଥରି କହୁଥିଲେ—"ମହାରାଣୀ ସାହେବ ! ମୋର ଅପରାଧ ହୋଇଛି ।"

ଏଥିରେ ସେ ରହିଯାଇ କହନ୍ତି—ବାସ୍ ! ତୁମେ ଏହି ଦୁଇପଦ କହିଦେଇ ରହିଗଲ; ତେବେ ମୁଁ ପଗ୍ଚରୁଛି ତୁମେ କାହିଁକି ଅପରାଧ କଲ ? କାହିଁକି ତାହା ନ କଲ ? ତୁମେ କ'ଣ ଅନ୍ନ ଖାଉନାହିଁ ? ମୁଁ ଯେଉଁ କାମ ବତାଉଛି, ତାକୁ ତୁମେ ଟାଳଟୁଳ କରି ରହି ଯାଉଛ । "ଯାଅ ଆଜି ଅମୁକ ମନ୍ତ୍ରୀକୁ ବାହାର କରିଦେଇ ଅମୁକକୁ ରଖ ।"

ମାତ୍ର ଧରିକୁ ତ ରାଜାଙ୍କର ପ୍ରାଣଭୟ । ରାଣୀ ଯାହା କହନ୍ତି ତାକୁ ସେ ବିନା ଆପତ୍ତିରେ ପାଳନ କରନ୍ତି । ଏପରି ସ୍ତ୍ରୀଙ୍କଠାରୁ ସନ୍ତାନ ହେବା ଆଶା କରିବା ବୃଥା । ଏଥିପାଇଁ ରାଣୀଙ୍କର ସନ୍ତାନ ସନ୍ତତି ନ ଥିଲେ । ରାଜା ବହୁତ ଆଶା କରିଥିଲେ ଯେ ମୋର ନିଶ୍ଚୟ ଏକ ପୁତ୍ରସନ୍ତାନ ରାଣୀଙ୍କଠାରୁ ହେବ । ଏହି କାମନାରେ ସେ ବହୁତ ଜପ ତପ ଓ ଯଜ୍ଞାନୁଷ୍ଠାନ ଆଦି କରିଥିଲେ । ସନ୍ତାନ କାମନାରେ ପିତୃଗଣଙ୍କୁ ଓ ବିଶ୍ୱେଦେବଙ୍କୁ ଆରାଧନା ମଧ୍ୟ କରିଥିଲେ; କିନ୍ତୁ ସମସ୍ତ ବ୍ୟର୍ଥ ହୋଇଥିଲା । ଯେପରି କେଶରୁ ତେଲ ବାହାର କରିବା ଅସମ୍ଭବ ସେହିପରି ବନ୍ଧ୍ୟା ସ୍ତ୍ରୀଙ୍କଠାରୁ ସନ୍ତାନ ଉତ୍ପନ୍ନ ହେବା ମଧ୍ୟ ସମ୍ଭବ ନୁହେଁ । ରାଜା ଚିନ୍ତା କଲେ—"ଯଦି ମୁଁ ଆଉଥରେ ବିବାହ କରେ, ତେବେ ସମ୍ଭବତଃ ମୋର ସନ୍ତାନ ହୋଇ ପାରନ୍ତି କିନ୍ତୁ ଆଉଥରେ ମୁଁ କିପରି ବିବାହ କରିବି ? ଯଦି ବିବାହ କରେ, ତେବେ ଏ ତ ମୋତେ ଘରୁ ବାହାର କରିଦେବ ।" ଏହିସବୁ କଥା ଚିନ୍ତା କରି ତାହା ତାଙ୍କ ରାଣୀ ଶୈବ୍ୟାଙ୍କ ଆଗରେ ପ୍ରକାଶ କରିବାକୁ ତାଙ୍କର ସାହସ ନ ଥିଲା । ଶୈବ୍ୟା କ'ଣ କେବେ ଚାହୁଁଥିଲେ ଯେ ମୋର ଗୋଟିଏ ସଉତୁଣୀ ଆସି ମୋର କଣ୍ଟକ ହେଉ ! ଏଥିପାଇଁ ସେ ଭାରି ସତର୍କ ଥିଲେ । ରାଜାଙ୍କର ଆସିବାରେ ଯଦି କୌଣସି ଦିନ ଟିକିଏ ବିଳମ୍ବ ହୋଇଯାଏ, ତେବେ ସେ ତାଙ୍କୁ ଏହାର କୈଫିୟତ ମାଗନ୍ତି । ସେ ଏହି କଥାକୁ ସର୍ବଦା ସାବଧାନ ଥାଆନ୍ତି ଯେ, ରାଜା ଯେପରି କୌଣସି ଯୁବତୀର ମୁଖ ଦର୍ଶନ କରି ନ ପାରନ୍ତି କିମ୍ବା ବାର୍ତ୍ତାଳାପ କରି ନ ପାରନ୍ତି । ଏଣେ ରାଜାଙ୍କ ମନରେ ତ ଆଉ ଗୋଟିଏ ବିବାହ କରିବାକୁ ଇଚ୍ଛା ହେଉଥାଏ, କିନ୍ତୁ ରାଣୀଙ୍କ ଅନୁମତି ବିନା ତ ସେ ପାଣି ଢୋପାଏ ମଧ୍ୟ ପିଇ ପାରନ୍ତି ନାହିଁ । ତେଣୁ ତାଙ୍କ ମନକଥା ମନରେ ହିଁ ରହିଗଲା ।

ରାଜାଙ୍କ ସମୀପବର୍ତ୍ତୀ ଭୋଜ ନାମକ ଅନ୍ୟ ଏକ ରାଜା ଥିଲେ । କୌଣସି କାରଣରୁ ରାଜାଙ୍କ ସହିତ ତାଙ୍କର ଶତ୍ରୁତା ହୋଇଗଲା । ରାଜା ତାଙ୍କ ରାଜ୍ୟ ଉପରେ ଆକ୍ରମଣ କଲେ । ରାଜା ଅତ୍ୟନ୍ତ ବଳବାନ ଥିଲେ । ତାଙ୍କର ସୈନ୍ୟଶକ୍ତି ମଧ୍ୟ ସୁସଂଗଠିତ ଥିଲା । ରାଜା ତାଙ୍କ ନିକଟବର୍ତ୍ତୀ ପ୍ରତିଦ୍ୱନ୍ଦ୍ୱୀ ରାଜାଙ୍କୁ ପରାସ୍ତ କଲେ । ପୁନଶ୍ଚ ସେ ଯେତେବେଳେ ପରାଜିତ ଶତ୍ରୁଙ୍କ ଭବନକୁ ଧନରତ୍ନ ବନ୍ଧି ଆଣିବାକୁ ଗଲେ,

ସେତେବେଳେ ସେ ସେଠାରେ ଏକ ଅତ୍ୟନ୍ତ ସୁନ୍ଦରୀ ରାଜକୁମାରୀଙ୍କୁ ଦେଖିଲେ । ସେ ସେହି ରାଜାଙ୍କର ଅତି ସୁକୁମାରୀ ଆଦରଣୀୟା କନ୍ୟା ଥିଲି ଓ ବିବାହ ଯୋଗ୍ୟା ହୋଇଥିଲା । ରାଜା ତାଙ୍କର ଏପରି ଅଲୌକିକ ରୂପ ଲାବଣ୍ୟ ଦେଖି ମୁଗ୍ଧ ହୋଇଗଲେ ଓ ସେହି କନ୍ୟାରତ୍ନକୁ ନିଜ ରଥରେ ବସାଇ ବିଜୟ ଦୁନ୍ଦୁଭି ବଜାଇ ନିଜ ନଗରକୁ ଚାଲି ଆସିଲେ ।

ରାଣୀ ଶୈବ୍ୟା ଯେତେବେଳେ ଶୁଣିଲେ, ତାଙ୍କ ପତି ଶତ୍ରୁଙ୍କୁ ହରାଇ ବିଜୟବାନା ଉଡ଼ାଇ ଫେରି ଆସୁଛନ୍ତି, ସେତେବେଳେ ସେ ସଖୀମାନଙ୍କ ସହିତ ଦ୍ୱାର ଦେଶରେ ଆସି ପହଞ୍ଚିଲେ । ରାଜାଙ୍କ ସହିତ ରଥରେ ଏକ ଅତି ସୁନ୍ଦରୀ ନବଯୌବନା ସୁକୁମାରୀ ରାଜକୁମାରୀଙ୍କୁ ଦେଖି ସେ ତ ରାଗରେ ଅଗ୍ନିଶର୍ମା ହୋଇ ଉଠିଲେ । ତେଣୁ ରାଜାଙ୍କର ସ୍ୱାଗତ ସତ୍କାର କରନ୍ତେ ବା କିପରି ? ସେ ଅସଂଯତ ହୋଇ କ୍ରୁଦ୍ଧିତ ସ୍ୱରରେ କହିଲେ—"ରେ କପଟୀ ! ଯାହା ମୋ ଯୋଗ୍ୟ ସ୍ଥାନ, ତୁ ସେଠାରେ କାହାକୁ ବସାଇଛୁ । ମୋ ସହିତ ଦ୍ୱନ୍ଦ୍ୱ କରିବା ପାଇଁ ତୁ ମୋ ସଉତୁଣୀକୁ କେଉଁଠାରୁ ନେଇ ଆସିଛୁ ?"

ବିଜୟ ଉଲ୍ଲାସରେ ରାଜା ଉତ୍ଫୁଲ୍ଲ ନ ହୋଇ ନୀରବରେ ରହି ରାଣୀଙ୍କର ପ୍ରଶଂସା ଶୁଣିବା ପାଇଁ ଉତ୍କଣ୍ଠିତ ଥିଲେ । ସେ ଯେତେବେଳେ ଦେଖିଲେ ଯେ ରାଣୀ ତାଙ୍କୁ ସ୍ୱାଗତ ଓ ପ୍ରଶଂସା କରିବା ପରିବର୍ତ୍ତେ ଗାଳିବର୍ଷଣ କରୁଛନ୍ତି, ସେତେବେଳେ ସେ ତଟସ୍ଥ ହୋଇଗଲେ । ସେ ଶହ ଶହ ସୈନ୍ୟଙ୍କର ଶିରଚ୍ଛେଦ କରି ଫେରିଥିବା ବେଳେ ଏକଶିର ବିଶିଷ୍ଟ ନାରୀକୁ ଦେଖି ଭୟରେ ଥରିବାକୁ ଲାଗିଲେ । ସେ ରଥର ସମ୍ମୁଖରେ ଠିଆ ହୋଇଯାଇ ରାଜାଙ୍କ ଛାତି ଉପରେ ଚଢ଼ି ଯିବାକୁ ପ୍ରସ୍ତୁତ ହୋଇ ଯାଇଥିଲେ । ମୃତ୍ୟୁ ଭୟରେ ରାଜାଙ୍କ ମୁଖରୁ ସହସା ବାହାରି ପଡ଼ିଲା—"ରାଣୀ ! ଏ ତୁମର ସଉତୁଣୀ ନୁହେଁ, ପୁତ୍ରବଧୂ ।"

ଏହା ଶୁଣି ରାଣୀ ଆହୁରି କ୍ରୋଧରେ ଜର୍ଜ୍ଜରିତ ହୋଇ ଉଠିଲେ । ସେ କହିଲେ—"ତୁମ ଭଳି ନିର୍ଲଜ ଓ ମିଥ୍ୟାବାଦୀ ବ୍ୟକ୍ତି ମୁଁ କୌଣସିଠାରେ ଦେଖି ନାହିଁ । ମୋର ଯଦି ପୁତ୍ର ଥାଆନ୍ତା, ତେବେ ପୁତ୍ର ବଧୂର ପ୍ରଶ୍ନ ଉଠନ୍ତା । ମୁଁ ତ ବନ୍ଧ୍ୟା । ଏହା ସମ୍ଭବ ହୋଇପାରେ ଯେ ରାଜାମାନଙ୍କର ବହୁତ ପତ୍ନୀ ଥାଆନ୍ତି । ଗୋଟିଏ ପତ୍ନୀର ଯେଉଁ ପୁତ୍ର ଥାଏ, ତାହାର ସ୍ତ୍ରୀକୁ ସବୁ ରାଣୀଙ୍କର ପୁତ୍ରବଧୂ ବୋଲି କୁହାଯାଏ । କିନ୍ତୁ ମୋର ତ କୌଣସି ସଉତୁଣୀ ନାହାନ୍ତି ? ତାହାହେଲେ ସେ ମୋର ପୁତ୍ରବଧୂ କିପରି ହେଲା ?"

ରାଜା ଏଥିରେ ଆହୁରି ଭୟ କରିଗଲେ । କିନ୍ତୁ ଦେବତାମାନେ ଏ ପରିସ୍ଥିତିକୁ ସମ୍ଭାଳି ନେଲେ । ଶାରଦା ତାଙ୍କ ଜିହ୍ୱା ଉପରେ ବସିଗଲେ । ସେ

ସଙ୍ଗେ ସଙ୍ଗେ କହ୍ନ ପକାଇଲେ—"ମହାରାଣୀ ! ଆପଣଙ୍କର ତେଣୁ ପୁତ୍ର ହେବ, ଏ ତାହାର ପତ୍ନୀ ହେବ ।"

ସତେ ଯେପରି ଦେବତା ଓ ପିତୃଗଣ ରାଜାଙ୍କ କଥାକୁ ଅନୁମୋଦନ କଲେ । ରାଣୀଙ୍କର କ୍ରୋଧ ଅମିଗଲା । ସେହି କନ୍ୟାକୁ ସେ ଅତି ଆଦରରେ ଏକ ପୃଥକ୍ ମହଲରେ ଯତ୍ନରେ ନେଇ ରଖିଲେ । ତା' ଉପରେ ରାଣୀ ଏପରି କଡ଼ା ନଜର ରଖିଲେ ଯେ, ସେ ବିଷୟରେ ଅଧିକ କହିବା ବାହୁଲ୍ୟ ହେବ । ରାଜା ମଧ୍ୟ ସେ ମହଲ ଭିତରକୁ ଯାଇ ପାରିଲେ ନାହିଁ । ବିଚାରୀ ରାଜକୁମାରୀ 'ଭୋଜ୍ୟା' ବିନା ଅପରାଧରେ ବନ୍ଦିନୀଙ୍କ ଭଳି ସେଠାରେ ରହିଲା । କାରାଗାରରେ ବନ୍ଦୀଙ୍କ ଭଳି ତାର ଭିତରେ ହିଁ ତାକୁ ଦିନ କାଟିବାକୁ ପଡ଼ିଲା ।

କାହା ଭାଗ୍ୟରେ କ'ଣ ଅଛି, ତାହା ପୂର୍ବରୁ କେହି କହି ପାରନ୍ତି ନାହିଁ । କେବେ ଭାଗ୍ୟର ଉଦୟ ହୁଏ ବା କେବେ ଅସ୍ତ ହୁଏ ତାହା ମଧ୍ୟ କେହି କହି ପାରିବେ ନାହିଁ । ଆମ୍ଭେମାନେ ଯେଉଁ କଥାକୁ ସମ୍ଭବ ବୋଲି ମନେକରୁଁ, ତାହା ଅସମ୍ଭବ ହୋଇଯାଏ ଓ ଯାହା ସର୍ବଥା ଅସମ୍ଭବ ବୋଲି ମନେ ହୁଏ, ତାହା ସମ୍ଭବ ହୋଇଥାଏ । କିଛିଦିନ ପୂର୍ବେ ଯେଉଁ ଶୈବ୍ୟାଙ୍କୁ ସମସ୍ତେ 'ଜନ୍ମବନ୍ଧ୍ୟା' ବୋଲି କହୁଥିଲେ, ଯେ କି ସନ୍ତାନ ଲାଭର ଆଶା ସମ୍ପୂର୍ଣ୍ଣରୂପେ ଛାଡ଼ି ଦେଇଥିଲେ, ସେ ଗର୍ଭବତୀ ହେଲେ । ରାଜ୍ୟସାରା ଆନନ୍ଦ ଖେଳିଗଲା । ଦଶମାସରେ ତାଙ୍କର ଏକ ପୁତ୍ର ଜାତ ହେଲା ଓ ତାହାର ନାମ ବିଦର୍ଭ ରଖାଗଲା । ପରେ ଏହି ବିଦର୍ଭ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଥିଲେ । ସେ 'ବିଦର୍ଭ' ରାଜ୍ୟ ସ୍ଥାପନ କରିଥିଲେ ।

ପୁତ୍ର ହେବାରୁ ଶୈବ୍ୟାଙ୍କର ବନ୍ଧ୍ୟାଦୋଷ କଟିଗଲା । ପ୍ରତ୍ୟେକଙ୍କର ଭାଗ୍ୟ ପୃଥକ୍ ପୃଥକ୍ । ଯେ ଭାଗ୍ୟବାନ୍, ତାଙ୍କ ଭାଗ୍ୟ ସର୍ବଦା ଉଜ୍ଜ୍ୱଳ । ଶୈବ୍ୟାଙ୍କ ଭାଗ୍ୟରେ ତ ପୁତ୍ର ମୁଖ ଦର୍ଶନର ସୌଭାଗ୍ୟ ନ ଥିଲା, କିନ୍ତୁ ରାଜକୁମାରୀ ଭୋଜ୍ୟାର ସୌଭାଗ୍ୟ ଯୋଗୁଁ ରାଣୀଙ୍କର ପୁତ୍ର ହେଲା । ଏବେ ଭୋଜ୍ୟା ଆଶା କଲା—"ମୋତେ ଆଉ ଆଜୀବନ କୁମାରୀ ବ୍ରତ ପାଳନ କରିବାକୁ ପଡ଼ିବ ନାହିଁ । ମୋର ପତି ଆଜି ଜନ୍ମଲାଭ କଲେ । ତାଙ୍କୁ ଷୋଳ ବର୍ଷ ହୋଇଗଲେ ସେ ବିବାହ ଯୋଗ୍ୟ ହୋଇଯିବେ । ପ୍ରତ୍ୟେକ ପ୍ରାଣୀ ଆଶାରେ ହିଁ ବଞ୍ଚି ରହନ୍ତି । ଯଦି ଆଶା ନ ଥାନ୍ତା, ତାହାହେଲେ ଏତେ କଷ୍ଟ ସହି ପ୍ରାଣୀ କାହିଁକି ଅବା ପ୍ରାଣ ଧାରଣ କରି ରହନ୍ତା ?"

କ୍ରମେ ଶୈବ୍ୟାଙ୍କର ପୁତ୍ର ବିଦର୍ଭ ବଡ଼ ହେବାକୁ ଲାଗିଲେ । ଭୋଜ୍ୟାର ଆଶାଲତା ଦୋଳାୟମାନ ହେବାକୁ ଲାଗିଲା । ଦିନ ପରେ ଦିନ ବିତି ଷୋଳବର୍ଷ ହୋଇଗଲା । ଯେତେବେଳେ କୁମାର ବିବାହଯୋଗ୍ୟ ହେଲା, ତା' ପାଇଁ ଅଭି

ପୁତ୍ରବଧୂ ଖୋଜିବାକୁ ପଡ଼ିଲା ନାହିଁ । ବୋଧହୁଏ ତ ପୁତ୍ର ଜନ୍ମ ହେବା ପୂର୍ବରୁ ଆସି ସମସ୍ତ ଗଣିବାରେ ଲାଗିଥିଲା, ଅନ୍ୟ କୌଣସି ସ୍ୱାଧୀନ ରାଜା ହୋଇଥିଲେ ସେ ଦ୍ୱିଗୁଣ ବୟସ ଓ ଏପରି ଅବସ୍ଥାର ବୋଧହୁଏ ସଦ୍ୟଜାତ ନିଜ କୁମାରକୁ କାହିଁକି ଅବା ବିବାହ ଦେବାକୁ ବୁଝି ଥାଆନ୍ତେ ? କିନ୍ତୁ ଯେଉଁଠି ନିଜର ଏକମାତ୍ର ସ୍ତ୍ରୀର ଆଧିପତ୍ୟ ସେଠାରେ ପୁରୁଷ କଥା ପଚାରେ କିଏ ? ସେ କ୍ଷେତ୍ରରେ ତ ସବୁକଥା ସ୍ତ୍ରୀଙ୍କର ଇଚ୍ଛାଧୀନ । ଶୈବ୍ୟା ସେହି ଭୋଜ୍ୟା ସଙ୍ଗେ ନିଜ ପୁତ୍ରର ବିବାହ କରିଦେଲେ । ଭୋଜ୍ୟ କୁ ସେତେବେଳେ ୩୨ ବର୍ଷ ବୟସ ଓ ବିଦର୍ଭଙ୍କୁ ମାତ୍ର ୧୭ ବର୍ଷ । କିନ୍ତୁ ବିବାହ ହୋଇଗଲା । ମହାରାଜ ବିଦର୍ଭଙ୍କ ଔରସରୁ ଭୋଜ୍ୟାଙ୍କଠାରୁ ପରେ ତିନି ପୁତ୍ର ଜାତ ହୋଇଥିଲେ । ସେମାନଙ୍କର ନାମ ଥିଲା—କୁଶ, କ୍ରଥ ଓ ରୋମପାଦ ।

ସୂତ କହିଲେ—"ମୁନିଗଣ ! ଏବେ ମୁଁ ଏହାଙ୍କ ବଂଶ ପରିଚୟ ସଂକ୍ଷେପରେ ଆପଣମାନଙ୍କୁ ଦେବି ଓ ବୃଷ୍ଣି ବଂଶୀୟ ଅନ୍ୟାନ୍ୟ ରାଜାଙ୍କର ଚରିତ ମଧ୍ୟ ବର୍ଣ୍ଣନା କରିବି ।"

## ଛପ୍ପୟ

କ୍ରୁଦ୍ଧକ ! କହଁା ତେଂ ସୌତ ପକରି ରଥ ପୈ ବୈଠାଇ ।
ଡରିକେଂ ବୋଲେ ଭୂପ-ପତୋହୂ ରାନୀ ! ଆଇ ॥
ବୋଲି ରାନୀ-ବନ୍ଧ୍ୟା ହୌଂ କ୍ୟୋଂ ବାତ ବନାଓ ।
କୈସେ ମେରୀ ହୋଇ ପତୋହୂ ମର୍ମ ବତାଓ ॥
ବୋଲେ ନୃପ-ରାନୀ ତନୟ, ବନେ ବଧୂ ବର ସୁର ଦୟୋ ।
ଗର୍ଭବତୀ ଶୈବ୍ୟା ଭଈ, ସୁତ ବିଦର୍ଭ ପୈଦା କୟୋ ॥



# ବୃଷ୍ଣିବଂଶୀୟ ବୀର

ବୃଷ୍ଣେଃ ସୁମିତ୍ରଃ ପୁତ୍ରୋଽଭୂଦ୍ ଯୁଧାଜିଚ୍ଚ ପରନ୍ତପ ।
ଶିନିସ୍ତସ୍ୟାନମିତ୍ରଶ୍ଚ     ନିମ୍ନୋଽଭୂଦନମିତ୍ରତଃ ॥

(ଶ୍ରୀ ଭା ୯ ସ୍କ, ୨୪ ଅ, ୧୨ ଶ୍ଳୋ)

## ଛପ୍ପୟ

କ୍ରୁଶ, କ୍ରଥ ନୃପବର ରୋମପାଦ ତୀନୋଂ ବିଦର୍ଭ ସୁତ ।
କ୍ରଥ କୀ ପୀଢ଼ୀ ବୀସ୍ ମାହିଂ ପ୍ରକଟେ ନୃପ ସାତ୍ୱତ ॥
ସାତ୍ୱତ କେ ଭଜମାନ, ଦ୍ୱବ୍ୟ, ଭଜି, ବୃଷ୍ଣି ହୁ ଅନ୍ଧକ ।
ଦେବାବୃଧ ଅରୁ ମହାଭୋଜ ସାତୋଂ ସୁତ ଧାର୍ମିକ ।
ଷଷ୍ଟପୁତ୍ର ଭଜମାନ କେ, ଦେବାବୃଧ କେ ବଭ୍ରୁ ସୁତ ।
ପିତା ପୁତ୍ର ଦୋଉ ପରମ, ଜ୍ଞାନୀ ତାରକ ଯୋଗ ଯୁତ ।

ମୁକ୍ତ ହେଉଥିବା ଲୋକ ଦୁଇ ପ୍ରକାରର ଅଟନ୍ତି । ପ୍ରଥମତଃ ଯେଉଁମାନେ ସ୍ୱୟଂ ଏକାକୀ ତରି ଯାଆନ୍ତି ଓ ଦ୍ୱିତୀୟ ମୁକ୍ତ ପୁରୁଷ ସେହିମାନେ, ଯେଉଁମାନେ ସ୍ୱୟଂ ମୁକ୍ତ ହେବା ସଙ୍ଗେ ସଙ୍ଗେ ଅନେକଙ୍କୁ ନେଇ ମୁକ୍ତ ହୁଅନ୍ତି । ଯେପରି ସର୍ପ, ସିଂହ ସ୍ୱୟଂ ନିଜ ନିଜ ବାହୁବଳ ଓ ଶକ୍ତିରେ ନଦୀ ପାର ହୋଇ ଯାଆନ୍ତି; କିନ୍ତୁ ନୌକା ବାହୁଥିବା ନାବିକ ନିଜେ ତ ଆରପାରିକୁ ଯାଏ, ତାହା ସଙ୍ଗେ ସଙ୍ଗେ ଅନ୍ୟ ଲୋକ-ମାନଙ୍କୁ ମଧ୍ୟ ଏ ପାରିରୁ ଆରପାରିକୁ ନେଇ ଯାଏ, ଯେଉଁମାନେ କି ଆଦୌ ପାରିହେବା ଜାଣନ୍ତି ନାହିଁ । ସୃଷ୍ଟିରେ ଏ ଉଭୟଙ୍କର ଆବଶ୍ୟକତା ରହିଛି । ଉଭୟେ ହିଁ ଶ୍ରେଷ୍ଠ । ଅଭିମାନ ବଶ ହୃଦୟ ହୋଇ କାହାରିକୁ ନିନ୍ଦା କରିବା ଉଚିତ୍ ନୁହେଁ । କୌଣସି ଭକ୍ତ କେତେକ ଟଙ୍କା ନେଇ ସଂସାରପ୍ରତି ଅନାସକ୍ତ ଜଣେ ମହାତ୍ମାଙ୍କ ନିକଟକୁ ଯାଇ କହିଲେ—"ମହାରାଜ ! ଏ ଟଙ୍କା ନେଇ କୌଣସି ଧର୍ମ କାର୍ଯ୍ୟରେ

ଲଗାଇ ଦିଅନ୍ତୁ ।” ମହାତ୍ମା କହିଲେ—“ଭାଇ ! ମୁଁ ତ ତୁମର ଚାକର ନୁହେଁ ଯେ ତୁମର ବେଠି ଖଟିବି ? ମୋର କ’ଣ ଦରକାର ଯେ, ମୁଁ ଅଯଥାରେ ବ୍ୟର୍ଥର ଝଞ୍ଜଟ ଝଞ୍ଜଟ ନେଇବି ? ଏ ଟଙ୍କାକୁ ଶୀଘ୍ର ଏଠାରୁ ଉଠାଇ ନିଅ ।”

ଭକ୍ତ ଏକ ପରୀକ୍ଷାକାରୀ ଭକ୍ତ ଥିଲେ । ସେ ମହାତ୍ମାମାନଙ୍କୁ ପରୀକ୍ଷା କରୁଥିଲେ । ତେଣୁ ସେଠାରୁ ସେ ଟଙ୍କା ନେଇ ଅନ୍ୟ ଏକ ସାଧୁଙ୍କ ନିକଟକୁ ଗଲେ । ତାଙ୍କ ନିକଟରେ ଆହୁରି ସାଧୁ ମହାତ୍ମା ମଧ୍ୟ ଥିଲେ, ସେମାନେ ଅତିଥି ଅଭ୍ୟାଗତଙ୍କର ସ୍ୱାଗତ ସତ୍କାର କରୁଥିଲେ । ଦୁଃଖୀ ଲୋକଙ୍କର ଦୁଃଖ ପ୍ରତି ମଧ୍ୟ ଯଥାଶକ୍ତି ଧ୍ୟାନ ଦେଉଥିଲେ । ଏବେ ସେହି ଭକ୍ତ ତାଙ୍କ ନିକଟକୁ ଆସି କହିଲା—“ମହାରାଜ ! ଏହି ଟଙ୍କାକୁ ନେଇ କୌଣସି କାମରେ ଲଗାଇ ଦିଅନ୍ତୁ ।” ମହାତ୍ମା ପଚାରିଲେ—“ଏହା କେତେ ଟଙ୍କା ?” ସେ କହିଲେ—“ଏ ପାଞ୍ଚ ହଜାର ଟଙ୍କା ।” ମହାତ୍ମା କହିଲେ—“ଚାରି ହଜାର ଟଙ୍କାରେ ବିଦ୍ୟାର୍ଥୀଙ୍କ ପାଇଁ ଏକ ଭବନ ନିର୍ମାଣ କରାଇ ଦିଅ ଓ ଏକ ହଜାର ଟଙ୍କାରେ ଅନ୍ନ ନେଇ ସେମାନଙ୍କ ପାଇଁ ରଖିଦିଅ ।” ଆଉ ଏବେ ଉପାୟ କ’ଣ ? ଭକ୍ତ ଜଣକ ସେହି ଟଙ୍କା କାର୍ଯ୍ୟରେ ଲଗାଇ ଦେଲେ ଓ କହିଲେ—“ମହାରାଜ ! ମୁଁ ସେ ସନ୍ଥଙ୍କ ନିକଟକୁ ଯାଇଥିଲି, ସେ ତ ଟଙ୍କାକୁ ଦେଖି ଦେଖି ମୋ ଉପରେ ଚିଡ଼ି ଉଠିଲେ । ସେ ମୋତେ ବହୁତ ଗାଳିମନ୍ଦ କଲେ ମହାରାଜ ! ମୋତେ ତ ସେ ମହାତ୍ମା ମାଗି ନ ଥିଲେ, ଲୋକମାନେ ତାଙ୍କର ପ୍ରଶଂସା କରିବାରେ କିଛି ମୂଲ୍ୟ ନାହିଁ ।”

ମହାତ୍ମା କହିଲେ—“ନା, ଭାଇ ! ଏପରି କୁହ ନାହିଁ । ସେହି ତ୍ୟାଗୀ ମହାତ୍ମାମାନଙ୍କଠାରୁ ଆମକୁ ଏହି ପ୍ରକାର ଶକ୍ତି ହିଁ ମିଳିଥାଏ, ସେମାନେ ତ୍ୟାଗର ଆଦର୍ଶରେ ଆମ୍ଭମାନଙ୍କୁ ଅନୁପ୍ରାଣିତ କରିଥାଆନ୍ତି ।”

ଏହାପରେ ସେହି ଭକ୍ତ ପୂର୍ବୋକ୍ତ ଅନାସକ୍ତ ତ୍ୟାଗୀ ସାଧୁଙ୍କ ନିକଟକୁ ଯାଇ କହିଲେ—“ଭଗବନ୍ ! ଆପଣ ତ ସେହି ଟଙ୍କାକୁ ତୁଚ୍ଛଜ୍ଞାନ କରି ଠେଲି ଦେଲେ, କିନ୍ତୁ ଅନ୍ୟ ମହାତ୍ମାଙ୍କୁ ଦେବାକ୍ଷଣି ସେ ତ ସବୁ ଟଙ୍କା ନେଲେ । ଏ କଥାରୁ ମୁଁ କିଛି ବୁଝିପାରୁ ନାହିଁ ।”

ଏ କଥା ଶୁଣି ସେ ହସି ଉଠି କହିଲେ—“ଭାଇ ! ଦେଖ ତୁମେ ତାଙ୍କର ନିନ୍ଦା କରିବା ଉଚିତ୍ ନୁହେଁ । ମୁଁ ସର୍ପ ଭଳି, ଏକା ରହେଁ, ଏକା ପାର ହୋଇପାରେ । କିନ୍ତୁ ସେ ମହାତ୍ମା, ତରଣ ତାରଣ ଅଟନ୍ତି । ସେ ନିଜେ ତ ତରି ଯାଆନ୍ତି, ଅସଂଖ୍ୟ ଲୋକଙ୍କୁ ମଧ୍ୟ ଉଦ୍ଧାର କରନ୍ତି । ଭଗବାନ ଏହି କାର୍ଯ୍ୟ କରିବା ପାଇଁ ତାଙ୍କୁ ପଠାଇଛନ୍ତି । ସେ ମୋ’ଠାରୁ ଶ୍ରେଷ୍ଠ ଅଟନ୍ତି ।”

ଏହି ପ୍ରସଙ୍ଗ କହିବାର ତାତ୍ପର୍ଯ୍ୟ ଏହି ଯେ, ଯେ ନିଜେ ସାଧନ କରି ଏହି ଅସାର ସଂସାରରୁ ସ୍ୱୟଂ ସାଧନା ଦ୍ୱାରା ତରିଯାଆନ୍ତି, ସେ ସର୍ବଶ୍ରେଷ୍ଠ ପୁରୁଷ ଅଟନ୍ତି । ସେ ନିଜର ମାନବ ଜୀବନକୁ ସାର୍ଥକ କରି ପାରନ୍ତି । କିନ୍ତୁ ତାଙ୍କଠାରୁ ବି ସେହିମାନେ ଶ୍ରେଷ୍ଠ; ଯେଉଁମାନେ ଅନେକ ବ୍ୟକ୍ତିଙ୍କୁ ସଙ୍ଗରେ ନେଇ ଏ ସଂସାରରୁ ଉଦ୍ଧାର ହୋଇ ଯାଆନ୍ତି ।

ସୂତ କହିଲେ—"ମୁନିଗଣ ! ମୁଁ ଶୈବ୍ୟାପତି ମହାରାଜ ଜ୍ୟାମଘଙ୍କ କଥା ଆପଣମାନଙ୍କୁ ଶୁଣାଇଲି । ତାଙ୍କ ପୁତ୍ର ବିଦର୍ଭଙ୍କଠାରୁ କୁଶ, କ୍ରଥ ଓ ରୋମପାଦ ଏହି ତିନି ପୁତ୍ର ହୋଇଥିଲେ । ରୋମପାଦଙ୍କ ବଂଶରେ କ୍ରମଶଃ ଏହି ସବୁ ରାଜା ହୋଇଥିଲେ, ଯଥା—ରୋମପାଦ, ବଭ୍ରୁ, କୃତି, ଉଶିକ ଓ ଚେଦି । ଚେଦିଙ୍କଠାରୁ ହିଁ ଚୈଦ୍ୟାଦି ନୃପତିଗଣ ଜାତ ହୋଇଥିଲେ ଓ ସେମାନଙ୍କ ବଂଶ ବହୁତ ବିସ୍ତାର ହୋଇଥିଲା ।

ବିଦର୍ଭଙ୍କ ପୁତ୍ର କ୍ରଥଙ୍କ ବଂଶରେ କ୍ରମଶଃ ଏହି ରାଜାମାନେ ଥିଲେ—କ୍ରଥ, କୁନ୍ତୀ, ଧୃଷ୍ଟି, ନିବୃତି, ଦଶାର୍ହ, ବ୍ୟୋମ, ଜୀମୂତ, ବିକୃତି, ଭୀମରଥ, ନବରଥ, ଦଶରଥ, ଶକୁନି, କରମ୍ଭି, ଦେବରାତ, ଦେବକ୍ଷତ୍ର, ମଧୁ, କୁରୁବଂଶ, ଅନୁ, ପୁରୁହୋତ୍ର, ଆୟୁ ଓ ଆୟୁଙ୍କଠାରୁ ସାତ୍ୱତ ଜନ୍ମଲାଭ କରିଥିଲେ । ଏହି ସାତ୍ୱତ ଧର୍ମାତ୍ମା, ଯଶସ୍ୱୀ ଓ ଖୁବ୍ ପ୍ରଭାବଶାଳୀ ଥିଲେ । ତାଙ୍କ ସନ୍ତାନେ ଏହି ବଂଶକୁ ସାତ୍ୱତ ବଂଶ କୁହାଯାଏ । ଶ୍ରୀକୃଷ୍ଣ ଭଗବାନଙ୍କର ନାମ ସାତ୍ୱତାଂ ପତି ତାଙ୍କର ପାଇଁ ପ୍ରସିଦ୍ଧ ।

ମହାରାଜ ସାତ୍ୱତଙ୍କର ସାତପୁତ୍ର ଥିଲେ । ସେମାନଙ୍କର ନାମ ଥିଲା—ଭଜମାନ, ଭଜି, ଦିବ୍ୟ, ବୃଷ୍ଣି, ଦେବାବୃଧ, ଅନ୍ଧକ ଓ ମହାଭୋଜ । ଜ୍ୟେଷ୍ଠପୁତ୍ର ଭଜମାନଙ୍କର ଦୁଇ ରାଣୀ ଥିଲେ ଓ ସେମାନଙ୍କର ତିନି ତିନି ପୁତ୍ର ହୋଇଥିଲେ । ସେମାନଙ୍କର ନାମ ଥିଲା—ନିମ୍ଲୋଚ, କିଙ୍କିଣ, ଧୃଷ୍ଟି, ଶତାଜିତ୍, ସହସ୍ରାଜିତ୍, ଓ ଅୟୁତାଜିତ୍ ।

ସାତ୍ୱତ ସୁତ 'ଦେବାବୃଧ' ତରଣ ତାରଣ ଥିଲେ । ତାଙ୍କ ପୁତ୍ର ବଭ୍ରୁ ମଧ୍ୟ ପିତାଙ୍କ ଭଳି ମହାଯୋଗୀ, ପରମଜ୍ଞାନୀ ଓ ଆଚାର୍ଯ୍ୟ ଥିଲେ । ଏହି ପିତାପୁତ୍ର ଉଭୟଙ୍କ ସମ୍ବନ୍ଧରେ ଏକ ପୌରାଣିକ ସୂକ୍ତ ପ୍ରସିଦ୍ଧ । ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ କି ବହୁତ ଗୁଡ଼ାଏ କହନ୍ତି କିନ୍ତୁ କୌଣସିଟି କଥା କାର୍ଯ୍ୟରେ ପରିଣତ କରନ୍ତି ନାହିଁ । ଦୂରରୁ ପର୍ବତ ସୁନ୍ଦର ଦେଖାଯାଏ, କିନ୍ତୁ ତା ନିକଟକୁ ଗଲେ, ଝାଡ଼, ଜଙ୍ଗଲ, କଙ୍କରତ ଭୂମି, ଖାଲ, ଢିପ, ତଖ, ଗହ୍ୱର ଦେଖାଯାଏ । ଦୂରରୁ ବାଜୁଥିବା ଢୋଲବାଦ୍ୟକୁ ଶୁଣନ୍ତୁ, ତାହା ଏପରି ପ୍ରତୀତ ହୁଏ, ଯେ ସତେ ଯେପରି ତାହା ଅତି

ଗମ୍ଭୀର, କିନ୍ତୁ ତା' ନିକଟକୁ ଯାଇ ତା' ଭିତର ଅବସ୍ଥା ଅନୁଧ୍ୟାନ କରନ୍ତୁ, ଦେଖିବେ ତାହା କେବଳ ପୋଲ । ଏହି ପ୍ରକାର ବହୁତ ଲୋକଙ୍କର ପ୍ରଶଂସା ଦୂରରୁ ଶୁଣିବାକୁ ମିଳୁଥିଲେ ମଧ୍ୟ ନିକଟକୁ ଯାଇ ଅନୁଧ୍ୟାନ କଲେ ଜଣାଯାଏ ଯେ ସେମାନଙ୍କର ବ୍ୟକ୍ତିଗତ ଜୀବନ ଉନ୍ନତ ନୁହେଁ । ବଡ଼ ବଡ଼ ଲେଖକଙ୍କର କୃତୀକୁ ପାଠକରି ଆମ୍ଭେମାନେ ଅନୁମାନ କରୁ ଯେ, ସେମାନେ କୌଣସି ଉଚ୍ଚ କୋଟିର ମହାପୁରୁଷ ହୋଇଥିବେ । ଯେତେବେଳେ ସେମାନଙ୍କ ନିକଟକୁ ଯାଇ ଦେଖିବା, ତେବେ ପ୍ରତୀତ ହେବ ଯେ ସେମାନେ ଯାହାସବୁ ଲେଖନ୍ତି, ତାହା ନିଜ ଜୀବନରେ କାର୍ଯ୍ୟକାରୀ କରି ପାରନ୍ତି ନାହିଁ । ସେମାନଙ୍କୁ ଏହିପରି ଜାଣିବା ଉଚିତ୍ ଯେ, ସେମାନେ ହେଉଛନ୍ତି ଏକ ନିର୍ଜୀବ ଯନ୍ତ୍ର (କମ୍ପ୍ୟୁଟର) ସଦୃଶ । ଏପରି କେତେକ ଲୋକ ଅଛନ୍ତି, ସେମାନେ ଯାହା କହନ୍ତି, ତାହା କରନ୍ତି । ସେମାନଙ୍କ ଭିତରେ ଯେପରି ନିର୍ମଳ, ବାହାର ମଧ୍ୟ ସେହିପରି । ଦୂରରୁ ଯେପରି ଲୋକ ବୋଲି ସେମାନଙ୍କ କଥା ଶୁଣା ଯାଇଥାଏ, ନିକଟକୁ ଯାଇ ଦେଖିଲେ, ସେ ଠିକ୍ ସେହିପରି ହୋଇ ଥାଆନ୍ତି । ସେହିମାନଙ୍କୁ ହିଁ ମହାପୁରୁଷ ବୋଲି କୁହାଯାଏ । ସେମାନେ ହିଁ ପୂଜନୀୟ, ବନ୍ଦନୀୟ ଓ ଆଦରଣୀୟ ଅଟନ୍ତି । ଦେବାବୃଧ ଓ ବଭ୍ରୁ—ଏ ପିତା ପୁତ୍ର ଉଭୟେ ଏହି ପ୍ରକାର ମହାପୁରୁଷ ଥିଲେ । ତେଣୁ ଏମାନଙ୍କ ବିଷୟରେ ଏହି ପୌରାଣିକୀ ସୂକ୍ତି ପ୍ରସିଦ୍ଧ ଥିଲା ଯେ ଆମ୍ଭେମାନେ ତାଙ୍କୁ ଦୂରରୁ ଯେପରି ଶୁଣୁଥିଲୁ ନିକଟକୁ ଆସି ମଧ୍ୟ ସେହିପରି ଦେଖିଲୁ । ବଭ୍ରୁ ଉତ୍ତମ ପୁରୁଷ ଥିଲେ ଓ ତାଙ୍କ ପିତା ଦେବାବୃଧ ଥିଲେ ଦେବତାଙ୍କ ଭଳି । ଏହି ପିତା ପୁତ୍ର ଦୁହିଁଙ୍କର ଉପଦେଶ ପାଇ ଚଉଦ ହଜାର ପଞ୍ଚଷଠୀ ପୁରୁଷ ପର୍ଯ୍ୟନ୍ତ ବଂଶଧରମାନେ ପରମପଦ ପ୍ରାପ୍ତ ହୋଇଥିଲେ । ସେମାନେ ଅମୃତତ୍ୱ ଲାଭ କରିଥିଲେ । ଏହି ପ୍ରକାରେ ସାତ୍ୱତଙ୍କ ପୁତ୍ର ଦେବାବୃଧ ନିଜର ସୁତ ବଭ୍ରୁ ସହିତ ଅଜର ଅମର ହୋଇଗଲେ ।

ମହାରାଜ ସାତ୍ୱତଙ୍କ ପୁତ୍ରମାନଙ୍କ ମଧ୍ୟରେ ଜଣେ ମହାଭୋଜ ନାମକ ରାଜା ଥିଲେ । ତାଙ୍କଠାରୁ ଭୋଜବଂଶୀ ଯାଦବମାନେ ଉତ୍ପନ୍ନ ହୋଇଥିଲେ । ଏବେ ସାତ୍ୱତଙ୍କ ପୁତ୍ର ବୃଷ୍ଣିଙ୍କ ବଂଶ ଧ୍ୟାନରେ ଶୁଣନ୍ତୁ ।

ବୃଷ୍ଣିଙ୍କର ସୁମିତ୍ର ଓ ଯୁଧାଜିତ୍ ନାମକ ଦୁଇ ପୁତ୍ର ଥିଲେ । ଏ ଦୁହିଁଙ୍କ ମଧ୍ୟରୁ କେବଳ ଯୁଧାଜିତଙ୍କର ଶିନି ଓ ଅନମିତ୍ର ନାମରେ ଦୁଇ ପୁତ୍ର ହୋଇଥିଲେ । ଅନମିତ୍ରଙ୍କ ପୁତ୍ରର ନାମ ଥିଲା ନିମ୍ନ । ନିମ୍ନଙ୍କର ମଧ୍ୟ ଦୁଇ ପୁତ୍ର ଥିଲେ । ସେ ଦୁହିଁଙ୍କ ନାମ ଥିଲା ସତ୍ରାଜିତ୍ ଓ ପ୍ରସେନ । ସତ୍ରାଜିତଙ୍କ କନ୍ୟା ସତ୍ୟଭାମାଙ୍କୁ ଶ୍ରୀକୃଷ୍ଣ ବିବାହ କରିଥିଲେ । ଏ ସବୁ କଥା ସ୍ୟମନ୍ତକମଣି କଥା ପ୍ରସଙ୍ଗରେ ଥିବା ଶ୍ରୀକୃଷ୍ଣଙ୍କ ଚରିତରେ ଆଗକୁ କୁହାଯିବ । ଯୁଧାଜିତ୍ ପୁତ୍ର ଅନମିତ୍ରଙ୍କର ଆଉରି ଏକ ପୁତ୍ର ବି

ଥିଲେ । ତାଙ୍କ ନାମ ଥିଲା ଶିନି । ଶିନିଙ୍କର ପୁତ୍ରର ନାମ ଥିଲା ସତ୍ୟକ । ସତ୍ୟକଙ୍କର ଯୁଯୁଧାନ ଓ ସାତ୍ୟକି ଏହି ଦୁଇ ପୁତ୍ର ଥିଲେ । ସାତ୍ୟକିଙ୍କର ଜୟ, ଜୟଙ୍କର କୁଣି ଓ କୁଣୀଙ୍କର ପୁତ୍ରର ନାମ ଥିଲା ଯୁଗନ୍ଧର । ଅନମିତ୍ରଙ୍କର ତୃତୀୟ ପୁତ୍ରର ନାମ ଥିଲା ବୃଷ୍ଣି । ବୃଷ୍ଣିଙ୍କ ପୁତ୍ରଙ୍କ ନାମ ଶ୍ୱଫଲ୍କ ଓ ଚିତ୍ରରଥ । ଶ୍ୱଫଲ୍କ ବଡ଼ ଧର୍ମାତ୍ମା ଥିଲେ । ମହାରାଜ କାଶିରାଜଙ୍କ ରାଜ୍ୟରେ ବର୍ଷା ହେଉ ନ ଥିଲା । ଯେତେବେଳେ ସେ ଶ୍ୱଫଲ୍କଙ୍କୁ ଡକାଇ ନିଜ କନ୍ୟା ଗାନ୍ଦିନୀଙ୍କୁ ତାଙ୍କ ସହିତ ବିବାହ କରାଇଲେ, ସେତେବେଳେ ଇନ୍ଦ୍ର ବର୍ଷା କରିଥିଲେ । ଗାନ୍ଦିନୀଙ୍କ ଗର୍ଭରୁ ଅକ୍ରୂର, ଆସଙ୍ଗ, ସାରମେୟ, ମୃଦୁର, ମୃଦୁବିତ, ଗିରି, ଧର୍ମବୃଦ୍ଧ, ସୁବର୍ମା, କ୍ଷେତ୍ରୋପେକ୍ଷ, ଅରିମର୍ଦ୍ଦନ, ଶତ୍ରୁଘ୍ନ, ଗନ୍ଧମାଦ ଓ ପ୍ରତିବାହୁ ଏହି ତେର ପୁତ୍ର ହୋଇଥିଲେ । ଏମାନଙ୍କ ମଧ୍ୟରେ ଅକ୍ରୂର ପରମ ଭଗବଦ୍ଭକ୍ତ ଥିଲେ । ଶ୍ରୀକୃଷ୍ଣ ଚରିତରେ ଏହାଙ୍କର ଭକ୍ତି କଥା ତାଙ୍କ ଭକ୍ତ ପ୍ରସଙ୍ଗରେ ଆଗକୁ କୁହାଯିବ । ଅକ୍ରୂରଙ୍କର ସୁଚୀରା ନାମ୍ନୀ ଏକ ଭଗ୍ନୀ ଓ ଦେବଯାନ ଏବଂ ଉପଦେବ ନାମକ ଦୁଇ ପୁତ୍ର ଥିଲେ । ଅକ୍ରୂର ମଧ୍ୟ ତାଙ୍କର ଅନ୍ୟାନ୍ୟ ଭାଇମାନଙ୍କର ବହୁତ ପୁତ୍ର, ପୌତ୍ର ଥିଲେ । ତାହା ଏଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଅକ୍ରୂରଙ୍କର କକା ଚିତ୍ରରଥଙ୍କର ମଧ୍ୟ ପୃଥୁ ଓ ବିଦୂରଥ ଆଦି କେତେକ ପୁତ୍ର ଥିଲେ । ପୁନଶ୍ଚ ସେମାନଙ୍କର ମଧ୍ୟ ଅନେକପୁତ୍ର, ପୌତ୍ର ଥିଲେ । ଯାଦବ ବଂଶର ଗଣନା ଓ ବର୍ଣ୍ଣନା କରିବା କାହାର ପକ୍ଷେ ସମ୍ଭବ ନୁହେଁ ।

ହଁ ମହାରାଜ ! ମୁଁ ପୂର୍ବରୁ ଛାଡ଼ି ଯାଇଥିବା ପ୍ରସଙ୍ଗ ସ୍ମରଣ କରନ୍ତୁ । ପୂର୍ବରୁ ମୁଁ ସାତ୍ୱତଙ୍କର ସାତ ପୁତ୍ରଙ୍କ ବଂଶ କଥା କହୁଥିଲି । ସେମାନଙ୍କ ମଧ୍ୟରେ ଅନ୍ଧକ ନାମକ ଏକ ପୁତ୍ର ଥିଲେ । ତାଙ୍କର କୁକୁର, ଭଜମାନ, ଶୁଚି ଓ କମ୍ବଳବର୍ହି ନାମକ ଚାରି ପୁତ୍ର ଥିଲେ । ଏମାନଙ୍କୁ ଅନ୍ଧକ ବଂଶ କୁହାଯାଏ । ଏମାନଙ୍କ ମଧ୍ୟରେ କୁକୁର ସବୁଠାରୁ ବଡ଼ ଥିଲେ । ତାଙ୍କ ବଂଶରେ ଯଥାକ୍ରମେ ଏହି ସମସ୍ତ ରାଜା ରାଜତ୍ୱ କରିଥିଲେ । ଯଥା—କୁକୁର, ବହ୍ନି, ବିଲୋମା, କପୋତରୋମା, ତୁମ୍ବୁରୁସଖା ଅନୁ, ଦ୍ୱିତୀୟ ଅନ୍ଧକ, ଦୁନ୍ଦୁଭି, ଅରିଦ୍ୟୋତ ଓ ପୁନର୍ବସୁ । ମହାରାଜ ପୁନର୍ବସୁଙ୍କର ଆହୁକ ନାମକ ଏକ ପୁତ୍ର ଓ ଆହୁକୀ ନାମକ ଏକ କନ୍ୟା ହୋଇଥିଲେ । ଆହୁକଙ୍କର ପୁତ୍ର ଦ୍ୱୟଙ୍କର ନାମ ଥିଲା ଦେବକ ଓ ଉଗ୍ରସେନ । ମହାରାଜ ଦେବକଙ୍କର ଦେବଯାନ୍, ଉପଦେବ, ସୁଦେବ ଓ ଦେବବର୍ଦ୍ଧନ ଏହି ଚାରି ପୁତ୍ର ଥିଲେ ।

ଶୌନକ ପଚାରିଲେ—"ହେ ସୂତ ! ମହାରାଜ ଦେବକଙ୍କର କୌଣସି କନ୍ୟା ଥିଲେ କି ?"

ସୂତ କହିଲେ—"ହଁ ମହାରାଜ ! ସେହି କନ୍ୟା ପାଇଁ ହିଁ ଏତେବଡ଼ ବଂଶାବଳୀ ବିଷୟରେ କହିବାକୁ ପଡ଼ିଲା । ମହାଭାଗ ଦେବକଙ୍କର କନ୍ୟା ନାମ ହିଁ ଦେବକୀ ଥିଲା । ସେ ଥିଲେ ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ସୌଭାଗ୍ୟବତୀ ଜନନୀ । ହେ ମହାରାଜ ! ଦେବକୀଙ୍କର ଧୃତଦେବା, ଶାନ୍ତିଦେବା, ଉପଦେବା, ଶ୍ରୀଦେବା, ଦେବରକ୍ଷିତା ଓ ସହଦେବା ଏହି ଛଅ ଭଉଣୀ ଥିଲେ । ଦେବକୀଙ୍କୁ ମିଶାଇ ଏହି ସାତ ଜଣଙ୍କୁ ମହାରାଜ ବସୁଦେବ ବିବାହ କରିଥିଲେ ।"

ମହାରାଜ ଉଗ୍ରସେନଙ୍କର ବିବାହ ବିଦର୍ଭ ଦେଶର ମହାରାଜ ସତ୍ୟକେତୁଙ୍କ କନ୍ୟା ପଦ୍ମାବତୀଙ୍କ ସହିତ ହୋଇଥିଲା । ତାଙ୍କ ଗର୍ଭରୁ କଂସା, କଂସବତୀ, କଙ୍କା, ଶୂରଭୂ ଓ ରାଷ୍ଟ୍ରପାଳିକା ଏହି ପାଞ୍ଚ କନ୍ୟା ଜାତ ହୋଇଥିଲେ । ଏମାନଙ୍କର ବିବାହ ବସୁଦେବଙ୍କ ସାନ ଭାଇମାନଙ୍କ ସହିତ ହୋଇଥିଲା ।"

ଶୌନକ ପଚାରିଲେ—"ହେ ସୂତ ! ଉଗ୍ରସେନଙ୍କର କ'ଣ ପୁତ୍ର ଥିଲେ ?"

ସୂତ ହସି ହସି କହିଲେ—"ମହାରାଜ ! ଆପଣ ତ ସବୁକଥା ଜାଣନ୍ତି । ଏପରି ଅଜ୍ଞାନ ପିଲାଙ୍କ ଭଳି କ'ଣ ପ୍ରଶ୍ନ କରୁଛନ୍ତି ? ଏହି ଉଗ୍ରସେନ ମହାରାଜଙ୍କର କାଳନେମି ନାମକ ଅସୁର କଂସ ରୂପରେ ଉତ୍ପନ୍ନ ହୋଇଥିଲା । ସେ ଯାଦବଙ୍କର ବୈରୀ ହୋଇ ଉଠିଥିଲା । କେବଳ ତା' ପାଇଁ ହିଁ ଭଗବାନ ଅବତୀର୍ଣ୍ଣ ହୋଇଥିଲେ । ଏହି କ୍ରୂର ଯଦୁବଂଶୀୟମାନଙ୍କୁ ବହୁତ କ୍ଲେଶ ଦେଲା । ଏ ପ୍ରକାର କ୍ରୂର ଅସୁର ପୁତ୍ର ଯୋଗେ ମହାରାଜ ଅତ୍ୟନ୍ତ ଦୁଃଖୀ ଥିଲେ । କଂସ ଜାଣିଥିଲା ଯେ, ମୁଁ କାଳନେମି ନାମକ ଅସୁର । ଭଗବାନ ବିଷ୍ଣୁ ମୋତେ ପୂର୍ବ ଜନ୍ମରେ ମାରିଥିଲେ । ଏଥିପାଇଁ ସେ ଯଦୁବଂଶୀୟ ଓ ନିଜ ପିତା ଉଗ୍ରସେନ ସହିତ ଦ୍ୱେଷ କରୁଥିଲା । ସେ ଏମାନଙ୍କୁ ପୀଡ଼ା ଦେଉଥିଲା । କଂସକୁ ଛାଡ଼ି ଉଗ୍ରସେନଙ୍କର ସୁନାମା, ନ୍ୟଗ୍ରୋଧ, କଂକ, ଶଙ୍କୁ, ସୁହୂ, ରାଷ୍ଟ୍ରପାଳ, ସୃଷ୍ଟି ଓ ତୁଷ୍ଟିମାନ ପ୍ରଭୃତି ଆହୁରି ଆଠ ପୁତ୍ର ଥିଲେ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ମହାରାଜ ଉଗ୍ରସେନ ତ ବଡ଼ ଧର୍ମାତ୍ମା ଥିଲେ । ତାଙ୍କର ପୁଣି ଏପରି କ୍ରୂର ସ୍ୱଭାବ ବିଶିଷ୍ଟ ଅସୁର ପୁତ୍ର କାହିଁକି ହେଲା ? ସେ ପୁଣି ନିଜ କୁଳର ଲୋକମାନଙ୍କୁ ନାନାପ୍ରକାର କଠିନ କ୍ଲେଶ ଦେଉଥିଲା କାହିଁକି ?"

ସୂତ କହିଲେ—"ମହାରାଜ ! ମାତୃଦୋଷ କାରଣରୁ ଏପରି ହୋଇଥିଲା । ପିତା ମାତାଙ୍କର ସ୍ୱଭାବ ଓ ସଦାଚାରର ସମସ୍ତ ପ୍ରଭାବ ସନ୍ତାନ ଉପରେ ପଡ଼ିଥାଏ । ପତିଙ୍କଠାରୁ ପୃଥକ୍ ରହି ସ୍ତ୍ରୀମାନଙ୍କର ସ୍ୱଚ୍ଛନ୍ଦ ବିହାର କରିବା ଅନର୍ଥର କାରଣ

ହୋଇଥାଏ । ପରମାର୍ଥ ସ୍ଥଳ ଅନାର୍ଯ୍ୟ ଜାତି ତ ଏ ରହସ୍ୟକୁ ଆଦୌ ଜାଣି ପାରନ୍ତି ନାହିଁ । ତାଙ୍କ ନିକଟରେ ଶାରୀରିକ ସୁଖ ହିଁ ସବୁକିଛି; କିନ୍ତୁ ଯେ ଅଧ୍ୟାତ୍ମବାଦୀ, ତାଙ୍କର ରକ୍ତବୀର୍ଯ୍ୟର ବିଶୁଦ୍ଧତା ଉପରେ ବିଶେଷ ଧ୍ୟାନ ଦେବା ଉଚିତ୍ । ପତିଙ୍କଠାରୁ ପୃଥକ୍ ରହିବା ଯୋଗୁଁ ଯୁବତୀ ସ୍ତ୍ରୀମାନଙ୍କର ଶୃଙ୍ଖଳା ବୃଦ୍ଧି ପାଇଥାଏ । ଏ କ୍ଷେତ୍ରରେ ସେହି ପ୍ରଭାବ ପଡ଼ିଥିଲା । ଉଗ୍ରସେନଙ୍କ ଭଳି ଧର୍ମାତ୍ମା ରାଜାଙ୍କ ଗୃହରେ କଂସଭଳି କୃରକର୍ମା ପୁତ୍ର ଜନ୍ମଲାଭ କରିଥିଲା । ଏ ସମ୍ବନ୍ଧରେ ଏକ ପୌରାଣିକ ଗାଥା ଅଛି । ତାହା ଆପଣମାନଙ୍କୁ ପ୍ରଥମେ ଶୁଣାଇ ପରେ ଆଗକୁ ଯାହା ଅଛି, ତାହା କହିବ ।”

## ଛପ୍ପୟ

ମହାବୋଜ ତେଂ ଭୟେ ଭୋଜବଂଶୀ ଯାଦବଗନ ।
ବୃଷ୍ଣି ବଂଶ ବାର୍ଷ୍ଣେୟ କହାୟେ ଯଦୁକୁଳନନ୍ଦନ ।
ବୃଷ୍ଣି-ତନୟ ନୃପ ଭୟେ ଯୁଧାଜିତ୍ ପୌତ୍ର ବୃଷ୍ଣି ପୁନ ।।
ସୁତ ଶ୍ୱଫଲ୍କ ତିନ ପୁତ୍ର ଭୟେ ଅକ୍ରୂର ସରସ ମୁନ ।
ଅନ୍ଧକ ଦଶମୀ ପୀଢ଼ି ମହେଂ ଉଗ୍ରସେନ ଦେବକ ଭଗତ ।।
ଦେବକ ତନୟା ଦେବକୀ, ଉଗ୍ରସେନ କେ କଂସ ସୁତ ।



# କାଳନେମି କଂସ କିପରି ହେଲା ?

ଆତ୍ମାନମିହ ସଞ୍ଜାତଂ ଜାନନ୍ ପ୍ରାଗ୍ ବିଷ୍ଣୁନା ହତମ୍ ।
ମହାସୁରଂ କାଳନେମିଂ ଯଦୁଭିଃ ସ ବ୍ୟରୁଧ୍ୟତ ।

(ଶ୍ରୀ ଭା ୧୦ ସ୍କ ୧ ଅ ୬୮ ଶ୍ଲୋ)

## ଛପ୍‌ପଦ

ନୃପ ବଦର୍ଭ କୀ ସୁତା ବିବାହୀ ଉଗ୍ରସେନ କହୁଁ ।
ସୁତା ପ୍ରେମ ତେଂ ନୃପତି ପଠାୟୋ ଦୂତ ଲେନ କହୁଁ ।
ମାତୁ ପିତା ଘର ଜାୟୁ ଭଇ ସ୍ୱଚ୍ଛନ୍ଦ ଦୁଲାରୀ ॥
ସଖୀୟନ ସଙ୍ଗ ସଜି ଫିରୈ ବନନ ମହଁ ରାଜକୁମାରୀ ।
ମଦମାତୀ ପଦ୍ମାବତୀ, ବିହରତ ହେ ସ୍ୱଚ୍ଛନ୍ଦ ଜହଁ ॥
ଧନଦ ଦାସ ଗୋମିଲ ଅସୁର, ଆୟୋ ଘୂମତ ଫିରତ ତହଁ ।

ପ୍ରାଣୀମାନଙ୍କର ବିଷୟ ପ୍ରତି ସହଜ ଅନୁରାଗ ଥାଏ । ଯେ ଏହି ଜୀବଜଗତର ଜନକ, ସେ ସ୍ୱତନ୍ତ୍ର । ତେଣୁ ସ୍ୱଭାବତଃ ସମସ୍ତେ ସ୍ୱତନ୍ତ୍ର ହେବାକୁ ଇଚ୍ଛା କରନ୍ତି । ପରାଧୀନତାରେ ଦୁଃଖ ଓ ସ୍ୱାଧୀନତାରେ ପ୍ରତ୍ୟେକଙ୍କୁ ସୁଖର ଅନୁଭବ ହୋଇଥାଏ; କିନ୍ତୁ ସ୍ୱାଧୀନତାର ବାସ୍ତବ ସୁଖର ଅନୁଭବ ସେହି ବ୍ୟକ୍ତି ହିଁ କରି ପାରନ୍ତି, ଯେଉଁ ବ୍ୟକ୍ତି ପୂର୍ବରୁ କୌଣସି ନା କୌଣସି ବନ୍ଧନରେ ପଡ଼ି ଆଆନ୍ତି । ଯେଉଁ ବ୍ୟକ୍ତିଙ୍କର ବନ୍ଧନର ଅନୁଭୂତି ନ ଥାଏ, ସେ ବିମୁକ୍ତ ହେବାର ସୁଖ କିପରି ବା ଅନୁଭବ କରି ପାରନ୍ତେ ? ଏଥିପାଇଁ ଧର୍ମର ବନ୍ଧନ, ପ୍ରେମର ବନ୍ଧନ ହିଁ ସୁଖର ପରମ ହେତୁ ଅଟେ । ଯେ ଧର୍ମ ବନ୍ଧନରେ ବନ୍ଦୀ ହୋଇ ନାହାନ୍ତି, ସେ ପରମାତ୍ମାଙ୍କୁ କିପରି ବା ଧରି ପାରିବେ ? ଯେଉଁ ବ୍ୟକ୍ତି ପ୍ରେମ ବନ୍ଧନରେ ବନ୍ଦୀ ହୋଇ ନିଜର ମନ, ଧନ, ତନୁ ଆଦି ସମସ୍ତ ପ୍ରକାର ଶାରୀରିକ ଓ ମାନସିକ ଚେଷ୍ଟା ଏବଂ ନିଜର ସର୍ବସ୍ୱ ନିଜ

ପ୍ରେମାସ୍ପଦଙ୍କୁ ଅର୍ପିତ କରିଦିଅନ୍ତି, ସେ ପ୍ରେମର ରହସ୍ୟକୁ କ'ଣ କେବେ ଜାଣି ପାରନ୍ତି ? ପତିବ୍ରତା ପତ୍ନୀ ନିଜର ସର୍ବସ୍ୱ ପତିଙ୍କ ଚରଣରେ ଅର୍ପିତ କରି ଅଖିଳ ସୃଷ୍ଟିର ଅଧିକାରିଣୀ ହୋଇ ଯାଆନ୍ତି । ଏପରି ପତିବ୍ରତାଙ୍କର ବିରୁଦ୍ଧ ଆଚରଣ କରିବାର ସାହସ କିଏ ଅବା କରି ପାରନ୍ତା ? ଯେ ନିଜର ପତିଙ୍କୁ ସର୍ବସ୍ୱ ବୋଲି ଜ୍ଞାନ ନ କରି ଶାରୀରିକ ସୁଖରେ ହିଁ ଆବଦ୍ଧ ରହେ, ପୁରୁଷ ତା' ଆଡ଼କୁ ଦୃଷ୍ଟି ଦେଇ ଦେଖିଲେ ଦେଖିପାରିବ ଯେ, ସେ ବଳାତ୍କାର ବା ଛଳନା କରିବାର ସାହସ କରିପାରେ ।

ସୂତ କହିଲେ—"ମୁନିଗଣ ! ଧର୍ମାତ୍ମା ମହାରାଜ ଉଗ୍ରସେନଙ୍କ ଭବନରେ ଦୁଷ୍ଟାତ୍ମା ଅପୂର୍ବପୂର୍ବ କଂସ କପରି ଜନ୍ମ ଗ୍ରହଣ କଲା, ସେହି ପ୍ରସଙ୍ଗ ମୁଁ ଆପଣମାନଙ୍କ ଆଗରେ କହୁଅଛି । ଏହି ପ୍ରସଙ୍ଗରୁ ଆପଣମାନଙ୍କୁ ବିଦିତ ହେବ ଯେ, କାଳନେମି କପରି ଉଗ୍ରସେନଙ୍କ ଭବନରେ ପୁତ୍ର ରୂପେ ପ୍ରକଟ ହୋଇଥିଲା ।"

ମାଥୁର ମଣ୍ଡଳର ରାଜା ଆହୁକଙ୍କ ପୁତ୍ର ଉଗ୍ରସେନ ଧର୍ମରେ ପ୍ରଜାପାଳନ କରୁଥିଲେ । ସେ ସମ୍ପୂର୍ଣ୍ଣ ଧର୍ମଜ୍ଞ ଜାଣିଥିବା ଶୂରବୀର, ଦାନୀ ଓ ସମସ୍ତ ସଦ୍‌ଗୁଣର ସାଗର ଥିଲେ । ସେ ବିଦର୍ଭ ଦେଶର ମହାରାଜ ସତ୍ୟକେତୁଙ୍କ ଆଦରଣୀୟା କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ପଦ୍ମାବତୀଙ୍କ ନାମ ଯେପରି ଗୁଣ ମଧ୍ୟ ସେହିପରି ଥିଲା । ସେ ପଦ୍ମାଙ୍କ ଭଳି ସୁନ୍ଦରୀ ଥିଲେ । ମହାରାଜ ଏପରି ସୁନ୍ଦରୀ ଓ ସର୍ବଗୁଣ-ସମ୍ପନ୍ନା ପତ୍ନୀ ପାଇ ପରମ ଆନନ୍ଦରେ କାଳଯାପନ କରୁଥିଲେ । ପତି-ପତ୍ନୀ ଉଭୟଙ୍କ ମଧ୍ୟରେ ଅତ୍ୟନ୍ତ ସ୍ନେହ ଥିଲା ।

ପଦ୍ମାବତୀ ପିତାଙ୍କର ଏକମାତ୍ର କନ୍ୟା ଥିଲେ । ଏଥିପାଇଁ ପିତାମାତାଙ୍କର ତାଙ୍କ ପ୍ରତି ଅତ୍ୟନ୍ତ ଅନୁରାଗ ଥିଲା । ସେହି କାରଣରୁ କିଛିଦିନ ପରେ ପିତାମାତା ତାଙ୍କୁ ଘରକୁ ବୁଲାଇ ନେଇଥିଲେ । ଥରେ କନ୍ୟା ଶ୍ୱଶୁରାଳୟରେ ବହୁଦିନ ରହି ଯିବାରୁ ବିଦର୍ଭରାଜାଙ୍କ ରାଣୀ ନିଜର ପତିଙ୍କୁ କହିଲେ—"ପ୍ରାଣନାଥ ! ପଦ୍ମାବତୀକୁ ମୁଁ ବହୁଦିନ ହେଲା ଦେଖିନାହିଁ । ତା' କଥା ମୋର ସବୁବେଳେ ମନେ ପଡ଼ୁଛି । ଆପଣ ଶୀଘ୍ର ଯାଇ ତାକୁ କିଛିଦିନ ପାଇଁ ଘରକୁ ନେଇ ଆସନ୍ତୁ ।"

ଏହା ଶୁଣି ମହାରାଜ ସତ୍ୟକେତୁ କହିଲେ—"ପ୍ରିୟେ ! ମୋର ମଧ୍ୟ ପଦ୍ମା କଥା ସର୍ବଦା ମନେପଡ଼ୁଛି । ମୁଁ ଆଜ ନିଶ୍ଚୟ ମଥୁରାକୁ ଦୂତ ପଠାଉଛି । ମୋ କହିବା ଅନୁସାରେ ଉଗ୍ରସେନ ତାକୁ ନିଶ୍ଚୟ ପଠାଇ ଦେବେ ।"

ଏହା କହି ମହାରାଜ ଶୀଘ୍ର ନିଜର କୁଳବୃଦ୍ଧ ପୁରୋହିତ ଓ ଦୂତଙ୍କୁ ପଦ୍ମାବତୀଙ୍କୁ ଆଣିବା ପାଇଁ ମଥୁରା ପଠାଇଲେ । କୁଳ ପୁରୋହିତ ଯାଇ ସମସ୍ତଙ୍କର

କୁଶଳ ପଚ୍ଚରିଲେ ଓ ରାଜାଙ୍କର ବାର୍ତ୍ତା ମହାରାଜ ଉଗ୍ରସେନଙ୍କୁ ଶୁଣାଇଲେ । ଯଦି ଚ ମହାରାଜ ଉଗ୍ରସେନ ଗୃହେଁ ନ ଥିଲେ ଯେ ତାଙ୍କ ପ୍ରାଣପ୍ରିୟା ପଦ୍ମାବତୀ ମୁହୂର୍ତ୍ତିକ ପାଇଁ ବି ତାଙ୍କଠାରୁ ପୃଥକ୍ ହେଉ; ତଥାପି ଶ୍ୱଶୁରଙ୍କ ସ୍ନେହ ଓ ସୌହାର୍ଦ୍ଦ୍ୟରେ ଓ ନିଜର ଉଦାରତା, ବିନୟ ଓ ଭକ୍ତି ପ୍ରଦର୍ଶନ କରିବା ପାଇଁ ସେ ପ୍ରସନ୍ନ ହୋଇ ସମସ୍ତ ପ୍ରକାର ଆୟୋଜନ କରି ପତ୍ନୀଙ୍କୁ ପଠାଇ ଦେଲେ । ପଦ୍ମାବତୀ ବାପ ଘରକୁ ଯାଉଥିବା କଥା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଅତ୍ୟନ୍ତ ଆଗ୍ରହର ସହିତ ନିଜର ବାପ ଘରକୁ ଯାତ୍ରା କଲେ । କିଛିଦିନ ମଧ୍ୟରେ ସେ ବିଦର୍ଭ ଦେଶରେ ନିଜ ପିତା–ମାତାଙ୍କ ନିକଟରେ ଯାଇ ପହଞ୍ଚିଲେ । ପିତା ମାତାଙ୍କୁ ପ୍ରଣାମ କରି ସ୍ନେହାଶ୍ରୁ ବିସର୍ଜନ କଲେ । ରାଜା–ରାଣୀ ଉଭୟେ ସ୍ନେହରେ ତାଙ୍କର ଶିର ଆଘ୍ରାଣ କଲେ ଓ ଆଲିଙ୍ଗନ କଲେ ।

ଶ୍ୱଶୁରାଳୟରେ ତ ସେ ବୋହୂ ହୋଇ ରହୁଥିଲେ । ସର୍ବଦା ପରଦା ଅନ୍ତରାଳରେ ତାଙ୍କୁ ରହିବାକୁ ପଡ଼ୁଥିଲା ଓ କାହାରି ସହିତ ଠିକ୍‌ଏ କଥାବାର୍ତ୍ତା ହେବାର ସୁଯୋଗ ପାଉ ନ ଥିଲେ ଏବଂ ସର୍ବଦା ଓଢ଼ଣା ପକାଇ ବୋହୂ ହୋଇ ହିଁ ରହୁଥିଲେ । ଏବେ ଯେତେବେଳେ ବାପ ଘରକୁ ଆସିଲେ, ସେତେବେଳେ ତ ସେଠାରେ ତାଙ୍କୁ ଆଉ ପରଦାର ଅନ୍ତରାଳରେ ରହିବାକୁ ପଡ଼ିଲା ନାହିଁ । ମୁଖରେ ଓଢ଼ଣା ଦେବାକୁ ପଡ଼ିଲା ନାହିଁ । ସମସ୍ତଙ୍କ ସହିତ ହସି ହସି ସେ କଥା କହିଲେ । ସାଙ୍ଗସାଥୀ–ମାନଙ୍କ ସହିତ ହସ ଖୁସିରେ କ୍ରୀଡ଼ା କଲେ । ନିଜର ଐଶ୍ୱର୍ଯ୍ୟ ଦେଖାଇବା ପାଇଁ ସୁନ୍ଦର ସୁନ୍ଦର ବସ୍ତ୍ରାଭୂଷଣ ଧାରଣ କଲେ । ନିଜକୁ ଷୋଡ଼ଶ ଶୃଙ୍ଗାରରେ ସଜାଇ ସେ ସଖୀଗଣଙ୍କ ଆଗରେ ଏହା ପ୍ରମାଣିତ କରିବାକୁ ଚାହିଁଲେ ଯେ, ମୁଁ ହେଉଛି ମଥୁରା ମଣ୍ଡଳର ମହାରାଣୀ । ମୋର ଅପାର ଐଶ୍ୱର୍ଯ୍ୟ । ପିତ୍ରାଳୟକୁ ଆସି ସେ ଏ କଥା ଭୁଲିଗଲେ ଯେ, ପତିଙ୍କଠାରୁ ପୃଥକ୍ ହୋଇ ରହି ଏ ପ୍ରକାର ବେଶ ହେବା ଓ ଶୃଙ୍ଗାର ବିମଣ୍ଡିତ ହେବା ଶୋଭନୀୟ ନୁହେଁ କିମ୍ବା ଏତେ ସ୍ୱଚ୍ଛନ୍ଦରେ କ୍ରୀଡ଼ା ଓ ହସାହସି କରି ବିନୋଦ କରିବା ଉଚିତ୍ ନୁହେଁ । ସେ ତ ପିତାଙ୍କର ଅତି ଅଲିଅଳି ଗେଲବସରର କନ୍ୟା ଥିଲେ, ବାପ ଘରକୁ ଆସି ସେ ଅତି ଚପଳ ଚଞ୍ଚଳ ବାଳିକାଙ୍କ ଭଳି ହେବାକୁ ଲାଗିଲେ । ନିଜର ସାଙ୍ଗ ସାଥୀଙ୍କ ସହିତ ବନ, ଉପବନ, ନଦୀ ତଥା ସରୋବର କୂଳରେ ଭ୍ରମଣ କରିବାକୁ ଯାଇ ସେଠାରେ କ୍ରୀଡ଼ା କରିବାକୁ ଲାଗିଲେ । ହସି ଖେଳି ବନବିହାର କରି ସର୍ବଦା ଆନନ୍ଦରେ ସମୟ କଟାଇଲେ ।

ଦିନେ ସେ ଭଲକରି ବେଶ ପୋଷାକ ହୋଇ ଷୋଡ଼ଶ ଶୃଙ୍ଗାର କରି ସଖୀଗଣଙ୍କ ସହିତ ଗୋଟିଏ ସୁନ୍ଦର ସରୋବର ନିକଟକୁ କ୍ରୀଡ଼ା କରିବା ପାଇଁ ଗଲେ । ସେ ନିଜର ସଖୀମାନଙ୍କ ଗହଣରେ ସୌଦାମିନୀ ଭଳି ଝଲକି ଉଠୁଥିଲେ । ବସନ୍ତ

କାଲି ବନଶ୍ରୀ ମଧ୍ୟ ଆଜି ସମୁଚିତ ଶୃଙ୍ଗାରରେ ହସି ଉଠୁଛି । ଯେଉଁ ସରୋବରର ନିକଟରେ ସେ କ୍ରୀଡ଼ା କରୁଥିଲେ, ତାହାର ନାମ ଥିଲା 'ସର୍ବତୋଭଦ୍ର' । ତା' ସମ୍ମୁଖରେ ହିଁ ଏକ ବଡ଼ କଦଳୀ ବଗିଚା ଥିଲା । ତାହା ଲତା ପରିବେଷ୍ଟିତ ହୋଇ ସଘନ ବିତାନ (ଚନ୍ଦ୍ରାତପ) ଭଳି ଶୋଭା ପାଉଥିଲା । ତା' ପାଖକୁ ଏକ ସବୁଜିମା ଭରା ଶ୍ରେଷ୍ଠ ପାହାଡ଼ ଥିଲା । ଅନ୍ୟ ଦିଗରେ ଅତି ମନୋହର ବନସ୍ଥଳୀ ଶୋଭା ପାଉଥିଲା । ନାନା ଜାତିର ରଙ୍ଗ ବିରଙ୍ଗ ପୁଷ୍ପ ଦ୍ୱାରା ତାହା ହସି ଉଠି ଘ୍ରାଣରେ ଆନନ୍ଦ ଭରି ଦେଉଥିଲା । ସଘନ ଦ୍ରୁମରାଜିର ଶାଖାମାନ ମନ୍ଦ ମଳୟରେ ଦୋଳାୟମାନ ହୋଇ ଭୂମିକୁ ଚୁମ୍ବନ ଦେଉଥିଲା । ବନର ଏପରି ଶୋଭା ସନ୍ଦର୍ଶନରେ ସେହି ସୁକୁମାରୀଗଣ ଆନନ୍ଦରେ ବିଭୋର ହୋଇ ପଡ଼ୁଥିଲେ । ସମସ୍ତେ ଏକ ବୟସର ଥିଲେ । ସେଠାରେ କୌଣସି ପୁରୁଷ ନ ଥିଲେ, କିମ୍ବା ସେମାନଙ୍କର କାହାରିକୁ ସଙ୍କୋଚ କରିବାର କାରଣ ନ ଥିଲା । ଏକାନ୍ତ ସୁନ୍ଦର ପରିବେଶ ପାଇ ପ୍ରତ୍ୟେକଙ୍କର ହୃଦୟରେ ସରସତା ବିରାଜମାନ କରୁଥିଲା । ଏକେ ତ ନାରୀ ସ୍ୱଭାବ ଚଞ୍ଚଳ, ପୁନଶ୍ଚ ଏବେ ଯୁବାବସ୍ଥା । ସମସ୍ତେ ପଚିଶ ବୟସର ପ୍ରାୟ ଥିଲେ । ତେଣୁ ସମସ୍ତେ ନିର୍ମୁକ୍ତ ହସ ହସିବାରେ ଲାଗିଲେ ଓ ମହୁଆ ଫୁଲ ଚୟନ କରି ତାହାର ରସ ଚୁଚୁମିବାରେ ଲାଗିଲେ । କେହି ଗାନ କଲେ ତ କେହି ନୃତ୍ୟ କରିବାରେ ଲାଗିଲେ । କେହି କେହି ବାଦ୍ୟ ମଧ୍ୟ ବଜାଇବାରେ ଲାଗିଲେ । ଏହିପରି ଭାବରେ ସେମାନେ କ୍ରୀଡ଼ା କରି କରି ଥକିଗଲେ । ମୁଖକମଳରେ ସ୍ୱେଦବିନ୍ଦୁ ମଧ୍ୟ ଝଲକିବାକୁ ଲାଗିଲା । ପଦ୍ମାବତୀ ସମସ୍ତଙ୍କୁ କହିଲେ ଏବେ ଜଳବିହାର କରିବା ଚାଲ । ଏଥିରେ କାହାରି କିଛି ଆପତ୍ତି କରିବାର ନ ଥିଲା । ସମସ୍ତେ ନିଜ ନିଜର ବସ୍ତ୍ର ଓହ୍ଲାଇ ସରୋବରକୁ ଖପାଖପ୍ ଡେଇଁଲେ । କିଏ କାହାକୁ ପାଣିରେ ବୁଡ଼ାଇ ଦେଲା ତ, କିଏ କାହା ଉପରକୁ ପାଣି ପକାଇଲା । ପୁନଶ୍ଚ କିଏ କାହାକୁ ଉପରକୁ ଉଠାଇ ପାଣିରେ ପକାଇ ଦେଲା । ଏହା ଦେଖି ସମସ୍ତେ ହସି ହସି ବେଦମ ହୋଇ ଯାଉଥିଲେ । ପୁନଶ୍ଚ କିଏ କାହା କାନ୍ଧରେ ଚଢ଼ି ଯାଉଥିଲା ତ କିଏ ଦୁଇଜଣଙ୍କୁ ଏକାଠି ଧକ୍କା କରାଇ ଦେଉଥିଲା । ଏହିପରି ଭାବରେ ସେଠାରେ ଆନନ୍ଦ ଉଲ୍ଲାସ ଓ ହାସ୍ୟର ତରଙ୍ଗ ଖେଳି ଯାଉଥିଲା ।

ଦୈବ ଯୋଗୁକୁ ସେହି ସମୟରେ ଲୋକପାଳ ଧନଦ କୁବେରଙ୍କର ଏକ ସେବକ ଗୋମିଳ ନାମକ ଦୈତ୍ୟ ସେଠାରେ ଆସି ପହଞ୍ଚିଲା । ଯୁବତୀଗଣଙ୍କୁ ଜଳକ୍ରୀଡ଼ାରେ ମଗ୍ନ ରହିଥିବା ଦେଖି ସେ ସେଠାରେ ଚୁପ୍ ହୋଇ ଠିଆ ହୋଇ ଗଲା । ତାହାର ଦୃଷ୍ଟି ପଦ୍ମାବତୀ ଉପରେ ପଡ଼ିଲା । ତାହାର ରୂପ ଯୌବନ, ସୌନ୍ଦର୍ଯ୍ୟ ଓ ଲାବଣ୍ୟକୁ ଦେଖି ଦୈତ୍ୟ କାମାତୁର ହୋଇ ଉଠିଲା । ସେ ତାକୁ ପାଇବାକୁ ଚଞ୍ଚଳ ହୋଇଲା । ଗୋମିଳ ଶକ୍ତିମାନ ଥିଲା । ତେଣୁ ସେ ଧ୍ୟାନରେ ଏହି କଥା ଜାଣିନେଲା ଯେ

ସେ ହେଉଛନ୍ତି ବିଦର୍ଭ ରାଜଙ୍କ କନ୍ୟା ଓ ମଥୁରା ନରେଶ ମହାରାଜ ଉଗ୍ରସେନଙ୍କ ପତ୍ନୀ; କିନ୍ତୁ ଏ ନିଜ ପତିଙ୍କୁ ଛାଡ଼ି ଅନ୍ୟ କେଉଁ ପରପୁରୁଷକୁ ଚାହୁଁଛି କି ନାହିଁ ତ ଜାଣି ହେଉ ନାହିଁ, ତେବେ ମୁଁ ଏହା ସହିତ କିପରି ସଙ୍ଗମ କରି ପାରିବି ? ଏହି କଥା ଅସୁର ଏକାନ୍ତରେ ଠିଆ ହୋଇ ଚିନ୍ତା କରିବାକୁ ଲାଗିଲା । ହଠାତ୍ ତାକୁ ଏକ ଉପାୟ ଦିଶିଲା—"ମୁଁ କାହିଁକି ମାୟାରେ ମହାରାଜ ଉଗ୍ରସେନଙ୍କ ରୂପ ନ ଧରିବି ?"

ଏହା ବିଚାର କରି ସେ ଅତ୍ୟନ୍ତ ପ୍ରସନ୍ନ ହୋଇ ଶୀଘ୍ର ମହାରାଜ ଉଗ୍ରସେନଙ୍କ ରୂପ ଧାରଣ କଲା । ସେ ନିଜର ଦାନବୀ ମାୟାରେ ଏପରି ସ୍ୱରୂପ ପ୍ରସ୍ତୁତ କରିନେଲା ଯେ, କେହି ହେଲେ ସନ୍ଦେହ କରିପାରି ନ ଥିଲେ ଯେ, ଏ ମଥୁରାର ନରେଶ ଉଗ୍ରସେନ ନୁହେଁ । ଏପରି ସୁନ୍ଦର ରୂପରେ ସେ ସରୋବର ନିକଟକୁ ଯାଇ ଏକ ସୁନ୍ଦର ଅଶୋକ ବୃକ୍ଷର ପାଦ ଦେଶରେ ବସି ଖୁବ୍ ମଧୁର ସ୍ୱରରେ ବଂଶୀ ବାଦନ କରିବାକୁ ଲାଗିଲା । ସେ ଏପରି କର୍ଣ୍ଣପ୍ରିୟ ସଙ୍ଗୀତ ଢଙ୍ଗରେ ବଜାଇଲା ଯେ, ବଣବଣ ସେହି ମୂର୍ଚ୍ଛନାରେ ଉଚ୍ଛୁଳି ଉଠିଲା । ସେହି ଦୈତ୍ୟ ସୁନ୍ଦର ସୁଲଳିତ କଣ୍ଠରେ ତାଳ, ଲୟ ଓ ସ୍ୱର ସହିତ ଗାଉଥିଲା ଓ ବଂଶୀ ମଧ୍ୟ ବଜାଉ ଥିଲା । ସଖୀଗଣଙ୍କ ମଝିରେ ବସିଥିବା ପଦ୍ମାବତୀଙ୍କ ଚିତ୍ତକୁ ହଠାତ ନିଜ ଆଡ଼କୁ ଆକର୍ଷଣ କଲାଭଳି ଗୀତ ଗାଇ ସେ ଶୁଣାଇଲା । "ସେଠାରେ ବସି ରହି ନିଜର ସାଙ୍ଗସାଥୀଙ୍କ ମେଳରେ ପଦ୍ମାବତୀ ସଙ୍ଗୀତର ପ୍ରଶଂସା କରିବାକୁ ଲାଗିଲେ । ସଙ୍ଗୀତର ସ୍ୱର ଲହରୀ ଭାସି ଆସି ତାଙ୍କ ହୃଦୟକୁ ଉନ୍ମତ୍ତ କରିବାକୁ ଲାଗିଲା । ସେ ଆଉ ଅଧିକକ୍ଷଣ ସେଠାରେ ବସିରହି ପାରିଲେ ନାହିଁ । କୌତୁହଳବଶତଃ ସଙ୍ଗୀତର ସ୍ୱରକୁ ଅନୁସରଣ କରି ସଖୀଗଣଙ୍କ ସଙ୍ଗରେ ନେଇ ସେହି ଆଡ଼କୁ ଅଗ୍ରସର ହେଲେ । ଦୂରରୁ ସେ ଦେଖି ପାରିଲେ ଯେ, ଅଶୋକ ବୃକ୍ଷର ପାଦଦେଶରେ ଜଣେ ଲୋକ ବସି ବଂଶୀ ବଜାଉଛି ଓ ସେହି ସ୍ୱରରେ ଗୀତ ଗାଉଛି । ଆଉ କିଛି ଦୂର ଆଗେଇ ଯାଇ ତା' ନିକଟରେ ପହଞ୍ଚିବା କ୍ଷଣି ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଏ ତ ମୋର ପ୍ରାଣନାଥ ମଥୁରେଶ ମହାରାଜ; କିନ୍ତୁ ସେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ, ତାଙ୍କର ଆସିବାର କୌଣସି ସୂଚନା ତ ନ ଥିଲା । ତେବେ ଦୂରରୁ ସେ ସହସା କିପରି ଆସି ପାରିଲେ ? ସମ୍ଭବତଃ ଏ ଅନ୍ୟ କେହି ହୋଇଥାଇ ପାରନ୍ତି । ମୋର ବୋଧହୁଏ ମତିଭ୍ରମ ହୋଇଛି ।" ଏହିପ୍ରକାର ସଂଶୟରେ ପଡ଼ି ପଦ୍ମାବତୀ ନାନା କଥା ଭାବୁଥିବାବେଳେ ସେହି ଦୁଷ୍ଟ ଗୋମିଲ ଦୈତ୍ୟ ଡାକିଲା—"ପ୍ରିୟେ ! ତୁମେ ମୋ ଆଗକୁ ଆସ । ମୁଁ ତୁମ ବିନା ବ୍ୟାକୁଳ ହେଉ ଅଛି ।"

ଏବେ ଆଉ ପଦ୍ମାବତୀର କୌଣସି ସନ୍ଦେହ ରହିଲା ନାହିଁ । ସେ ଦୌଡ଼ି ଯାଇ ଉଗ୍ରସେନ ରୂପୀ ସେହି ଦୁଷ୍ଟ ଦୈତ୍ୟ ସମୀପରେ ପହଞ୍ଚିଲେ ଓ ପ୍ରଣାମ କରି ତାଙ୍କୁ ପଚାରିଲେ—"ପ୍ରାଣନାଥ ! ଆପଣ କେତେବେଳେ ଆସି ପହଞ୍ଚିଲେ ?"

ମାୟାବୀ ଦୈତ୍ୟ କହିଲା—"ପ୍ରିୟେ ! ତୁମ ବିନା ଏକ ଏକ ମୁହୂର୍ତ୍ତ ମୋତେ ଏକ ଏକ ଯୁଗ ପରି ବୋଧ ହେଲା । ମୁଁ ତୁମ ବିରହ ଯନ୍ତ୍ରଣାକୁ ଆଉ ଅଧିକ ସହ୍ୟ କରି ନପାରି ରାଜ୍ୟଗ୍ରସ୍ତ ତୁମ ନିକଟକୁ ଧାଇଁ ଆସିଲି । ଦେବି ! ତୁମ ବିନା ମୋ ଜୀବନ ଅସମ୍ଭବ । ତୁମ ବିରହ ମୋତେ ବ୍ୟାକୁଳିତ କରୁଅଛି । କନ୍ଦର୍ପ ତା'ର କୁସୁମ ଶରରେ ମୋତେ କାମଜର୍ଜ୍ଜରିତ କରି ଦେଇଛି ।"

ପଦ୍ମାବତୀର ସଖୀଗଣ ସେ ମାୟାବୀ ଅସୁରକୁ ଉଗ୍ରସେନ ବୋଲି ମନେ କରି ସେଠାରୁ ଚାଲିଗଲେ । ଏହାପରେ ସେହି ଦୁଷ୍ଟ ନାନାପ୍ରକାରର ସରସ ସ୍ନେହଭରା ବାଣୀ ଶୁଣାଇ ରାଜକୁମାରୀଙ୍କୁ ଏକାନ୍ତ ସଘନ ବନ ମଧ୍ୟକୁ ନେଇଗଲା ଓ ସେଠାରେ ସେ ନିଜ ଇଚ୍ଛାନୁସାରେ ତାଙ୍କୁ ସମ୍ଭୋଗ କରି ନିଜର ଇଚ୍ଛା ପୂର୍ତ୍ତି କଲା । ମହାରାଜ ଉଗ୍ରସେନଙ୍କର କୌଣସି ବିଶିଷ୍ଟ ଅଙ୍ଗରେ କୌଣସି ଏକ ବିଶିଷ୍ଟ ଚିହ୍ନ ଥିଲା । ସେହି ଚିହ୍ନଟିକୁ ତା' ଅଙ୍ଗରେ ନ ପାଇ ପଦ୍ମାବତୀଙ୍କର ତା' ପ୍ରତି ସନ୍ଦେହ ହେଲା । ସେ ଚିନ୍ତା କଲେ,—"ମୋର ପତି କପରି ଏଠାକୁ ଆସି ପାରନ୍ତେ ? ତାଙ୍କଠାରେ ତ ଏ ପ୍ରକାର ଚଞ୍ଚଳତା ମୁଁ କେବେ ହେଲେ ଦେଖି ନାହିଁ ! ସେ ସବୁ ଯାହା ହୋଇଥାଉନା କାହିଁକି, ଏ କୌଣସି ଦୈତ୍ୟ, ମାୟାରେ ଯେ ଏହି ଛଦ୍ମବେଶ ଧାରଣ କରିଅଛି । ଏ କଦାପି ମୋ ପତି ନୁହେଁ ।"

ମନରେ ଏ ପ୍ରକାର ବିଚାର କରି ସେ ନିଜ ବସ୍ତ୍ର ପିନ୍ଧି ପକାଇଲେ ଓ ନାଲି ଆଖି କରି କହିଲେ—"ରେ ଦୁଷ୍ଟ ! ସତ ସତ କହି ଦେ ତୁ କିଏ ?"

ଏହା ଶୁଣି ଦୈତ୍ୟ ନିଜର ପୂର୍ବରୂପ ଧାରଣ କରି କହିଲା—"ମୁଁ ଗୋମିଳ ନାମକ ଦୈତ୍ୟ ଓ କୁବେରଙ୍କର ଅନୁଚର ଅଟେ ।"

କ୍ରୋଧରେ ଅଗ୍ନିଶର୍ମା ହୋଇ ଉଠି ପଦ୍ମାବତୀ କହିଲେ—"ରେ ଦୁଷ୍ଟ ! ତୁ ମୋ ସହିତ ଅଧର୍ମ ଆଚରଣ କଲୁ, ମୁଁ ତୋତେ ଶାପ ଦେଇ ଭସ୍ମ କରିଦେବି ।"

ଗୋମିଳ ଭୟ ନ କରି ଧୈର୍ଯ୍ୟ ଧରି କହିଲା—"ଦେବି ! ମୁଁ ତ କୌଣସି ଅଧର୍ମ କାର୍ଯ୍ୟ କରିନାହିଁ । ଅସୁର ଓ ଦାନବମାନଙ୍କର ଏହା ହିଁ ଧର୍ମ । ସେ ଛଳେ ବଳେ କୌଶଳେ ଓ ମାୟାରେ ନିଜର ଇଚ୍ଛା ପୂର୍ତ୍ତି କରନ୍ତି । ମୁଁ ତାହା ହିଁ କରିଛି । ଏହା ତ କୌଣସି ଅଧର୍ମ କାର୍ଯ୍ୟ ବୋଲି ମୁଁ ଭାବୁନାହିଁ । ମୁଁ ମୋ ଧର୍ମ ମାର୍ଗରେ ତ ଅଛି । ତୁମେ ନିଜ ଧର୍ମ ମାର୍ଗରେ ଅଛ କି ନ ଅଛ, ତାହା ନିଜେ ଚିନ୍ତା କରି ଦେଖ ।"

ପଦ୍ମାବତୀ କହିଲେ—"ରେ ନୀଚ ! ତୁ କ'ଣ ପତିବ୍ରତାମାନଙ୍କର ପ୍ରଭାବକୁ ଜାଣି ନାହୁଁ ?"

ଦୈତ୍ୟ କହିଲା—"ଭଲଭାବେ ଜାଣେ । ପତିବ୍ରତା ତ ଅସମ୍ଭବକୁ ସମ୍ଭବ କରି ପାରନ୍ତି, ସୂର୍ଯ୍ୟ ଚନ୍ଦ୍ରଙ୍କ ଗତିକୁ ଅଟକାଇ ପାରନ୍ତି, ସୁମେରୁକୁ ଭସ୍ମସାତ୍ କରି ପାରନ୍ତି, ସାତ ସମୁଦ୍ରକୁ ସକଳ ମାତେ ଶୁଖାଇ ଦେଇ ପାରନ୍ତି । ଶରୀର କଥା ତ ଅଲଗା । ସତୀଙ୍କୁ କେହି ହେଲେ ମନରେ ଦୂଷିତ କରି ନ ପାରେ ।"

ପଦ୍ମାବତୀ କହିଲେ—"ଯେତେବେଳେ ତୁ ଏତେ ତଥ୍ୟ ଜାଣିଛୁ, ତାହା ହେଲେ ଏପରି ସାହସ କଲୁ କାହିଁକି ? କ'ଣ ମୁଁ ତୋତେ ଶାପ ଦେଇ ଭସ୍ମ କରି ପାରିବି ନାହିଁ ବୋଲି ଭାବିଥିଲୁ ?"

ଦୈତ୍ୟ କହିଲା—"କାହିଁକି ଭସ୍ମ କରି ନ ପାରିବ ? ଯଦି ତୁମେ ବାସ୍ତବ ପତିବ୍ରତା ହୋଇଥିବ, ତେବେ ଅବଶ୍ୟ କରି ପାରୁଥିବ ।"

ପଦ୍ମାବତୀ କହିଲେ—"ତେବେ କ'ଣ ମୁଁ ପତିବ୍ରତା ହୋଇଥିବି କି ନାହିଁ ତୁ ସନ୍ଦେହ କରୁଛୁ ? ଦେଖ୍, ମୁଁ ତୋତେ ବର୍ତ୍ତମାନ ଶାପ ଦେଇ ଭସ୍ମ କରୁଛି ।"

ଗୋମିଲ ଉପେକ୍ଷା ସ୍ୱରରେ କହିଲା—" ମୁଁ ଆଦୌ ସନ୍ଦେହ କରୁନାହିଁ । ମୋର ପୂର୍ଣ୍ଣ ବିଶ୍ୱାସ ଯେ, ତୁମେ ପତିବ୍ରତା ନୁହଁ । ଏଥିପାଇଁ ମୁଁ ତୁମ ଶାପକୁ ଭୟ କରୁନାହିଁ । ଯଦି ତୁମେ ପତିବ୍ରତା ହୋଇ ଥାଆନ୍ତ, ତେବେ ପତିଙ୍କ ଗୃହ ଏ ପ୍ରକାର ଏଠାରେ ବନ ବିହାର କରୁ ନ ଥାନ୍ତ । ପତିବ୍ରତା କ'ଣ କେବେ ପତିଙ୍କ ବିନା କ୍ଷଣେମାତ୍ର ରହି ପାରନ୍ତି ?"

ପଦ୍ମାବତୀ କହିଲେ—"ରେ ନୀଚ ! ମୁଁ ତ ବାହାରକୁ କେଉଁଆଡ଼େ ଯାଇ ନ ଥିଲି । ମୋ ପିତା ମୋତେ ସ୍ନେହରେ ମୋ ଘରକୁ ବୁଲାଇ ଆଣିଥିଲେ । ସ୍ତ୍ରୀମାନଙ୍କ ପାଇଁ ରହିବା ସ୍ଥାନ ତ ଦୁଇଟି । ତାହା ପତି ଗୃହ ହେଉ ବା ପିତୃଗୃହ ହୋଇଥାଉ । ମୁଁ ଶରୀରରେ ସିନା ପତିଙ୍କଠାରୁ ପୃଥକ୍, କିନ୍ତୁ ମନରେ ତ ମୁଁ ତାଙ୍କୁ ସର୍ବଦା ଚିନ୍ତା କରୁଛି ।"

ଗୋମିଲ କହିଲା—"ମନରେ ଯଦି ତୁମେ ସର୍ବଦା ପତିଙ୍କର ଚିନ୍ତା କର, ତେବେ ତୁମେ ମୋତେ କାହିଁକି ଚିହ୍ନି ପାରିଲ ନାହିଁ ? ଏହା ତ କଦାପି ସମ୍ଭବ ନୁହେଁ । ତୁମେ ପତିବ୍ରତା ଧର୍ମ ସମ୍ବନ୍ଧରେ କିଛି ଜାଣିନାହଁ । ତୁମେ କ୍ରୋଧ ଶାନ୍ତକରି ଧୈର୍ଯ୍ୟ ସହକାରେ ମୁଁ ଯାହା କହୁଛି ଶୁଣ । ତାହାହେଲେ ମୁଁ ତୁମକୁ ପତିବ୍ରତାଙ୍କ ଧର୍ମ ବିଷୟରେ କହିବି । ଯଦି ତୁମେ ପତିବ୍ରତା ହୋଇଥାଅ, ତେବେ

ମୋତେ ଶାପ ଦେଇ ଭସ୍ମ କରିଦିଅ । ଯଦି ନ ହୋଇଥାଅ, ତେବେ ଚୁପ୍‌ଚାପ୍ ନିଜ ଘରକୁ ଚାଲିଯାଅ ।”

ପଦ୍ମାବତୀ କହିଲେ—“ଆଚ୍ଛା, ତେବେ ତୁ ମୋତେ ପତିବ୍ରତା ଧର୍ମ ବତାଇ ଦେ ।”

ଗୋମିଳ କହିଲା—“ଦେବି ! ସାବଧାନ ହୋଇ ଶ୍ରବଣ କର ।”

ପତିବ୍ରତା ନିତ୍ୟ ମନ, ବଚନ ଓ କର୍ମରେ ନିଜ ପତିଙ୍କର ସେବାରେ ସଂଲଗ୍ନ ରହନ୍ତି । ପତିବ୍ରତା, ପତିଙ୍କର ସନ୍ତୋଷକୁ ହିଁ ନିଜର ସନ୍ତୋଷ ବୋଲି ମନେକରନ୍ତି । ପତିବ୍ରତା, ପତି କ୍ରୋଧ କରୁଥିଲେ ମଧ୍ୟ ନିଜେ କ୍ରୋଧ କରନ୍ତି ନାହିଁ । ପତିବ୍ରତା, ପତି ଗାଳି ଦେଉଥିଲେ ମଧ୍ୟ ନିଜେ ଉତ୍ତର ଦିଅନ୍ତି ନାହିଁ । ପତିବ୍ରତାଙ୍କୁ ପତି ପ୍ରହାର କରୁଥିଲେ ବି ସେ ଦ୍ୱେଷଭରା ଦୃଷ୍ଟିରେ ତାଙ୍କୁ ଦେଖନ୍ତି ନାହିଁ । ପତିବ୍ରତା ସର୍ବଦା ନିଜ ପତିଙ୍କ ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ ହୁଅନ୍ତି ଓ ସୁଖ ଦୁଃଖରେ ଏକ ସଙ୍ଗେ ରହନ୍ତି । ପତିଙ୍କୁ ସୁଖୀ ରଖିବା ହିଁ ତାଙ୍କ ଜୀବନର ଧ୍ୟେୟ । ପତିଙ୍କ ଦୋଷ ଆଡ଼କୁ ସେ ଧ୍ୟାନ ଦିଅନ୍ତି ନାହିଁ । କେବଳ ଗୁଣଥିବା ଯୋଗୁଁ ମଧ୍ୟ ତାଙ୍କୁ ଆଦର କରନ୍ତି ନାହିଁ । ପତି ସୁନ୍ଦର ହୋଇ ଥାଆନ୍ତୁ ବା କୁତ୍ସିତ ହୋଇ ଥାଆନ୍ତୁ, ସର୍ବାଙ୍ଗ ସୁନ୍ଦର ହୋଇ ଥାଆନ୍ତୁ ବା ହୀନାଙ୍ଗ ହୋଇ ଥାଆନ୍ତୁ, ସୁସ୍ଥ ସବଳ ହୋଇ ଥାଆନ୍ତୁ ବା ମହାରୋଗଗ୍ରସ୍ତ ହୋଇ ଥାଆନ୍ତୁ, ତାଙ୍କର ସେବା କରିବା ପତିବ୍ରତା ସ୍ତ୍ରୀଙ୍କର ସର୍ବାଦୌ କର୍ତ୍ତବ୍ୟ ।

ପତିଙ୍କ ଅନୁପସ୍ଥିତିରେ ପତିବ୍ରତା କଦାପି ଶୃଙ୍ଗାର କରନ୍ତି ନାହିଁ, ଗ୍ରାମ୍ୟ ସୁଖକୁ ଭୋଗ କରନ୍ତି ନାହିଁ, ହସ ଖୁସିରେ, ବିନୋଦରେ, ମନୋରଞ୍ଜନରେ ସମୟ କଟାନ୍ତି ନାହିଁ କିମ୍ବା ଚଞ୍ଚଳତା ପ୍ରକାଶ କରନ୍ତି ନାହିଁ ।

ପତିବ୍ରତାଙ୍କର ପବିତ୍ରତା, ଶୁଚିତା, ସାଜସଜା, ଶୃଙ୍ଗାର, ହାସ-ପରିହାସ ଓ ଶାରୀରିକ ଏବଂ ମାନସିକ ସମସ୍ତ ପ୍ରକାର ଚେଷ୍ଟା ପତିଙ୍କୁ ପ୍ରସନ୍ନ କରିବା ନିମିତ୍ତ ହୋଇଥାଏ । କ'ଣ ତୁମଠାରେ ଏହି ସବୁ ଗୁଣ ଅଛି ? ତୁମେ କ'ଣ ପତିଙ୍କୁ ଦେବତା ଜ୍ଞାନ କର ? ତୁମେ କ'ଣ କୁଳଟା ସ୍ତ୍ରୀ ନୁହଁ ? ଯଦି କହିବ, ତେବେ ମୁଁ ବର୍ତ୍ତମାନ କୁଳଟାଙ୍କ ଲକ୍ଷଣ ବତାଇ ଦେବି ।

ଏହା ଶୁଣି ସଙ୍ଗେ ସଙ୍ଗେ ପଦ୍ମାବତୀ କହିଲେ—“ରେ ଦୁଷ୍ଟ ଦୈତ୍ୟ ! ତୁ ବହୁତ ବଢ଼ି ବଢ଼ି କଥା କହୁଛୁ । ନିର୍ଲଜ ଦାନବ ! ପତିଙ୍କୁ ହିଁ ସର୍ବସ୍ୱ ବୋଲି ମୁଁ ମନେକରେ । ତୁ ପୁଣି ମୋତେ କୁଳଟା ବୋଲି କହୁଛୁ । ତୁ ମୋଠାରେ କୁଳଟାର କି ଲକ୍ଷଣ ଦେଖିଲୁ ?”

ଗୋମିଳ ଧୈର୍ଯ୍ୟଧର ଶ୍ଳେଷଭରା ବାଣୀରେ କହିଲା—"ପତିଙ୍କ ଅନୁପସ୍ଥିତିରେ ଯେଉଁ ସ୍ତ୍ରୀ ନେଲ୍ଲଜଭାବଗତଃ ଗ୍ରାମ୍ୟଭୋଗ ସୁଖକୁ ଭୋଗକରେ, ସେ କୁଳଟା । ଯେ ସ୍ୱାମୀଙ୍କୁ ଛାଡ଼ି ଅନ୍ୟ ପୁରୁଷଙ୍କଠାରେ ମନ ଲଗାଏ, ସେ କୁଳଟା । ଅଚ୍ଛା—ରାଣୀ ! ତୁମେ ତ ନିଜକୁ ପତିବ୍ରତା ବୋଲି କହୁଛ, ଆଚ୍ଛା କହିଲ ଦେଖି, ପତିଙ୍କ ବିନା ତୁମେ ଚନ୍ଦନ ଚନ୍ଦନଣ କାହିଁକି ହୋଇଛ ? ତୁମର ଏ କଳା କେଶରେ ଏତେ ମୂଲ୍ୟବାନ୍ ସୁଗନ୍ଧିତ ତେଲ ଲଗାଇଛ ତୁମେ କାହାକୁ ଖୁସି କରିବା ପାଇଁ ? ଏ ସୁନ୍ଦର ବାଳ ଗୁଚ୍ଛକୁ କାହାପାଇଁ ଏତେ ସଜାଇଛ ? କାହାର ଘ୍ରାଣେନ୍ଦ୍ରିୟକୁ ତୃପ୍ତ କରିବା ପାଇଁ କବରୀରେ ମାଳତୀର ଏହି ସୁଗନ୍ଧିଯୁକ୍ତ ମାଳା ବାନ୍ଧିଛ ? ଏହି ସିନ୍ଦୂର ବିନ୍ଦୁ କାହାପାଇଁ ଏତେ ସୁନ୍ଦର କରି କପାଳରେ ସଜାଇଛ ? ଅନେକ ସୁଗନ୍ଧିତ ପଦାର୍ଥରେ ଯୁକ୍ତ ଏହି ତାମ୍ବୁଲ କାହା ଘ୍ରାଣେନ୍ଦ୍ରିୟରେ ଶ୍ୱାସ ପ୍ରଶ୍ୱାସରେ ସୁଗନ୍ଧ ବିତରଣ କରିବା ପାଇଁ ଖାଇଛ ? ବକ୍ଷସ୍ଥଳରେ ଏହି ଗାଢ଼ରଙ୍ଗର କେଶର କସ୍ତୁରୀ ଓ କର୍ପୂରଯୁକ୍ତ ଚନ୍ଦନର ଅର୍ଚ୍ଚ କାହା କରକୁ ସୁଗନ୍ଧିତ କରିବା ପାଇଁ ଲଗାଇଛ ? ହାତରେ ମେହେନ୍ଦୀ ଓ ପାଦରେ ଅଳତା କାହା ମନକୁ ଆକର୍ଷଣ କରିବାପାଇଁ ଲଗାଇଛ ? ପତିବ୍ରତା ତ ଏ ସବୁ ପତିଙ୍କୁ କେବଳ ପ୍ରସନ୍ନ କରିବା ପାଇଁ ବ୍ୟବହାର କରନ୍ତି । ସେ ନିଜେ ନିଜକୁ ସୁଖଦେବା ପାଇଁ ଶରୀରକୁ ସଜାନ୍ତି ନାହିଁ । ତୁମ ପତି ତ ଏଠାରୁ ୪୦୦ କୋଶ ଦୂରରେ ଅଛନ୍ତି । ତୁମେ ଏଠାରେ ନିଜକୁ ରଙ୍ଗଚଙ୍ଗେଇ କରି ସଜାଇଛ, ତୁମର ଏହା କ'ଣ ପତିବ୍ରତା ପଣିଆ ? ଦୁଷ୍ଟା କେଉଁଠିକାର ! ମୋତେ ପୁଣି ଶାପ ଦେବାକୁ ଧମକାଉଛ । ପ୍ରଥମେ ନିଜ ରୂପକୁ ଦେଖିନିଅ । ମନୁଷ୍ୟ ନିଜ ଦୋଷକୁ ତ କେବେହେଲେ ଦେଖେ ନାହିଁ; କିନ୍ତୁ ଅନ୍ୟକୁ ଲକ୍ଷ୍ୟକରି କରେ । ତୁମ ପତି ତେଣେ ମଥୁରାରେ ବସିଛନ୍ତି, ତୁମେ ବିଦର୍ଭ ଦେଶରେ ଆସି ଚନ୍ଦନ ଚନ୍ଦନଣ ହୋଇ, ମନ୍ତ୍ରୀଆମାନଙ୍କ ଘର ବନବହାର କରୁଛ ଓ କହି ହେଉଛ "ମୁଁ ପତିବ୍ରତା । ତୁମେ ପତିବ୍ରତା ନୁହଁ, ପଥର । ମୁଁ ତ ତୁମକୁ ଏକ ବ୍ୟଭିଚାରିଣୀ କୁଳଟା ବୋଲି ମନେକରେ । ଯଦି ତୁମଠାରେ ତେଜ, ଓଜଃ, ବଳ, ତପ, ଶକ୍ତି-ସାମର୍ଥ୍ୟ ତଥା ପାତିବ୍ରାତ୍ୟର ପ୍ରଭାବ ଥାଏ, ତେବେ ମୋତେ ଦେଖାଅ ତ ମୁଁ ଦେଖେଁ । ମୁଁ ତୁମ ସମ୍ମୁଖରେ ଠିଆ ହୋଇଛି, ଦିଅ ମୋତେ ଭସ୍ମ କରିଦିଅ । ମୁଁ ତ ସହଜେ ଅସୁର । ଆମକୁ ଏପରି ସ୍ତ୍ରୀ ଯେଉଁଠାରେ ମିଳନ୍ତି, ସମ୍ମତ, ଅସମ୍ମତ, ଛଳ ବଳ କୌଶଳରେ ତଥା ମାୟା ଆଦି ଦ୍ୱାରା ମୋହିତ କରି ସେମାନଙ୍କୁ ଆମେ ଉପଭୋଗ କରି ଆମ ଇଚ୍ଛା ପୂରଣ କରୁ ଓ ଛାଡ଼ି ଚାଲିଯାଉ । ମୁଁ ତୁମ ଗର୍ଭରେ ଅମୋଘ ବୀର୍ଯ୍ୟ ସ୍ଥାପନ କଲି । ସେହି ବୀର୍ଯ୍ୟରୁ କାଳନେମି ନାମକ ରାକ୍ଷସ ଅଂଶରୁ ମାନେ ଅସି ଯାଉଛୁ । ସେହି ସ୍ତ୍ରୀ ତୁମ ଗର୍ଭରୁ ଉତ୍ପନ୍ନ ହୋଇ ତୁମର ପତିଙ୍କ ବଂଶର ଲୋକମାନଙ୍କୁ ଅନେକ କ୍ଲେଶ ଦେବ ।" ଏହା କହି ସେହି ଦାନବ ତୁରନ୍ତ ସେଠାରୁ ଚାଲିଗଲେ ।

ପଦ୍ମାବତୀ ନିଜର ଭୁଲ୍ ବୁଝି ପାରିଲେ । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଥରିବାକୁ ଲାଗିଲା । ନେତ୍ରରୁ ଅଶ୍ରୁଧାର ଛୁଟିବାକୁ ଲାଗିଲା । ଲଜ୍ଜା, ଦୁଃଖ, ଆତ୍ମଗ୍ଲାନି ଓ ଶୋକ କାରଣରୁ ସେ କହି କହି ହୋଇ କାନ୍ଦିବାକୁ ଲାଗିଲେ । ତା'ର ସଖୀମାନେ ଦୂରରେ ଥିଲେ । କାନ୍ଦ ଶବ୍ଦ ଶୁଣି ସେମାନେ ଦୌଡ଼ି ଆସିଲେ । ସେମାନେ ଆସି ଦେଖନ୍ତି ତ ପଦ୍ମାବତୀ ଅତ୍ୟନ୍ତ ଦୁଃଖରେ ମୁହଁ ପୋଡ଼ାଇ ଉଚ୍ଚ ସ୍ୱରରେ ରୋଦନ କରୁଛନ୍ତି । ପାଖରେ ଉଗ୍ରସେନ ନାହାନ୍ତି ।

ସମସ୍ତେ ତାଙ୍କୁ ବ୍ୟଗ୍ର ହୋଇ ପଚାରିଲେ—"ରାଜକୁମାରୀ ! ମହାରାଜ କୁଆଡ଼େ ଗଲେ ? ତୁମେ କାହିଁକି ଏତେ ଦୁଃଖୀ ? ତୁମେ କାହିଁକି କାନ୍ଦୁଛ ?"

ରାଜକୁମାରୀ କାନ୍ଦି କାନ୍ଦି ହୋଇ କହିଲେ—"ଭଉଣୀ ! ମୋର ପ୍ରାଣନାଥ ମଥୁରେଶ ମହାରାଜ ଏଠାକୁ ଆସି ନ ଥିଲେ, ସେ ଏକ ଦୁଷ୍ଟ ଦାନବ ଥିଲା । ସେ ଛଦ୍ମବେଶରେ ମୋର ସତୀତ୍ୱ ନଷ୍ଟ କଲା । ଏବେ ମୁଁ କରିବି କ'ଣ ? ଯିବି କେଉଁଠିକି ? ମୁଁ ହତଭାଗୀ ତ ଠକାମିରେ ପଡ଼ିଗଲି, ଏବେ ମୋର ସ୍ଥାନ କେଉଁଠି ନାହିଁ । ମୁଁ କାହାକୁ ବା କପରି ମୁହଁ ଦେଖାଇବି ? କପରି ଏ ପାପ କଥାକୁ ଲୁଚାଇବି ? ହାୟରେ କପାଳ ! ମୁଁ କେଉଁ ଜନ୍ମରେ କି ପାପ କରିଥିଲି ଯେ, ତାହାର ଫଳ ମୋତେ ଅଜି ଭୋଗ କରିବାକୁ ପଡ଼ିଲା ? ଅଉ ମୁଁ ଘରକୁ ଫେରିବି ନାହିଁ କି ପିତା-ମାତାଙ୍କୁ ମୋ ମୁଖ ଦେଖାଇବି ନାହିଁ । ଏଇଠାରେ ଆତ୍ମହତ୍ୟା କରି ମରିବି ।" ଏହିପରି ଭାବରେ ବିଳାପ କରି ସେ କାନ୍ଦିବାକୁ ଲାଗିଲେ ।

ସଖୀମାନେ ତାଙ୍କୁ ନାନାପ୍ରକାର ବୁଝାଇଲେ । କର୍ମର ଫଳ ଭୋଗି, କୌଣସି ପ୍ରକାରେ ଧୈର୍ଯ୍ୟ ଧରି ବିଦର୍ଭ ନରେଶଙ୍କ ଉଆସରେ ରହିବା ଭଲ ବୋଲି କହି ସେମାନେ କୌଣସି ପ୍ରକାରେ ରାଜନବରକୁ ତାଙ୍କୁ ନେଇ ଆସିଲେ । ସେଠାରେ ପହଞ୍ଚି ପଦ୍ମାବତୀ ନିଜ ମାତାଙ୍କ ଆଗରେ ସମସ୍ତ ଘଟଣା କହିଲେ । ମାତା ମଧ୍ୟ ତାଙ୍କ ସ୍ୱାମୀ ମହାରାଜ ସତ୍ୟକେତୁଙ୍କୁ ସମସ୍ତ ଘଟଣା ଶୁଣାଇଲେ । ମହାରାଜ ଏହା ଶୁଣି ବଡ଼ ଚିନ୍ତିତ ହେଲେ । ନିଜର ମାନ ମର୍ଯ୍ୟାଦା ଓ କୁଳକୀର୍ତ୍ତି ଅତୁଟ ରଖିବା ପାଇଁ ସେ ଶୀଘ୍ର ପୁରୋହିତ ଓ ସେବକଙ୍କ ସଙ୍ଗରେ ପଦ୍ମାବତୀଙ୍କୁ ତାଙ୍କ ଶାଶୁ ଘରକୁ ପଠାଇ ଦେଲେ ।

ମହାରାଜ ଉଗ୍ରସେନ ନିଜର ପ୍ରାଣପ୍ରିୟାଙ୍କ ଆଗମନରେ ଅତ୍ୟନ୍ତ ପ୍ରସନ୍ନ ହେଲେ ଓ ଶ୍ୱଶୁରାଳୟର ସମସ୍ତଙ୍କର କୁଶଳ ପଚାରିଲେ । ରାଣୀ ପଦ୍ମାବତୀ ସମସ୍ତ କୁଶଳ ରାଜାଙ୍କ ଆଗରେ କହିଲେ; କିନ୍ତୁ ଏ କଥା କହିଲେ ନାହିଁ । ସେ ଏହି ଗର୍ଭ ନଷ୍ଟ କରିବା ପାଇଁ ନାନାପ୍ରକାର ଚେଷ୍ଟା କଲେ; କିନ୍ତୁ ତାହା ତ ନଷ୍ଟ ହେବାର

ଗର୍ଭ ନ ଥିଲା ! ଅସୁର ତ ତାଙ୍କ ଗର୍ଭରେ ପ୍ରବେଶ କରିଥିଲା ! ରାଣୀଙ୍କର ଗର୍ଭ ଧାରଣ କରିବାରୁ ଅସି ଏକବର୍ଷ ବିତିଗଲା; କିନ୍ତୁ ପ୍ରସବର କୌଣସି ଚିହ୍ନ ବର୍ଣ୍ଣ ବା ଲକ୍ଷଣ ଦେଖାଗଲା ନାହିଁ । ଏହିପରି ଦଶମାସ ସ୍ଥାନରେ ଦଶ ବର୍ଷ ବିତିଗଲା, ସେ ଦୁଷ୍ଟ ଦାନବ ଗର୍ଭରୁ ବାହାରିଲା ନାହିଁ । ଶେଷରେ ଦଶବର୍ଷ ପୂର୍ଣ୍ଣ ହେବାରୁ ସେହି କାଳନେମି ଦୈତ୍ୟ ମହାରାଣୀ ପଦ୍ମାବତୀଙ୍କ ଗର୍ଭରୁ ଜନ୍ମ ହେଲା । ମହାରାଜ ଉଗ୍ରସେନ ମହାଆଡ଼ମ୍ବର ସହକାରେ ତାହାର ଜନ୍ମୋତ୍ସବ କଲେ । ତାହାର ନାମ କଂସ ରଖାଗଲା । ଏହି କଂସ ଯାହା ଯାହା କରିଥିଲା, ସେ ସମସ୍ତ କଥା ଶ୍ରୀକୃଷ୍ଣଙ୍କ ଚରିତରେ ବର୍ଣ୍ଣିତ ହେବ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ବୃଷ୍ଣିବଂଶ ରାଜାମାନଙ୍କର ଚରିତ ସଂକ୍ଷେପରେ ବର୍ଣ୍ଣନା କଲି । ଏହା ପରେ ମୁଁ ଅନମିତ୍ରଙ୍କ ପୁତ୍ର ବୃଷ୍ଣିଙ୍କର ଶ୍ୱଫଳକ ଓ ଚିତ୍ରରଥ ନାମକ ଦୁଇପୁତ୍ରଙ୍କ ବିଷୟ କହିବି । ଶ୍ୱଫଳକଙ୍କର ଅକ୍ରୂର ପ୍ରଭୃତି ତେର ପୁତ୍ର ଥିଲେ, ଏମାନଙ୍କର ନାମ ପୂର୍ବରୁ କହିଅଛି । ଏବେ ମହାରାଜ ଚିତ୍ରରଥଙ୍କ ବଂଶ ସମ୍ବନ୍ଧରେ କହୁଅଛି, ଶ୍ରବଣ କରନ୍ତୁ । ଚିତ୍ରରଥଙ୍କ ପୁତ୍ର ନାମ ବିଦୂରଥ ଓ ବିଦୂରଥଙ୍କର ପୁତ୍ରର ନାମ ଥିଲା ଶୂର । ଏହି ଶୂରଙ୍କ ନାମାନୁସାରେ, ଭଗବାନ ଶ୍ରୀକୃଷ୍ଣଙ୍କ ନାମ ଶୌରି ରଖାଯାଇଥିଲା । ଏହି ବଂଶରେ ବସୁଦେବ ଜନ୍ମ ଗ୍ରହଣ କରିଥିଲେ । ଏଣୁ ଏବେ ଶୌରି ବଂଶ ସମ୍ବନ୍ଧରେ ମୁଁ ପ୍ରଥମେ ବର୍ଣ୍ଣନା କରିବ ।"

## ଛପ୍ପୟ

ଉଗ୍ରସେନ କୋ ରୂପ ଧରେଁୟା ରାନୀ ବହକାଇ ।
କରେଁୟା କପଟ-ଛଲ ଅସୁର କୁମରୀ ଏକାନ୍ତ ବୁଲାଇ ॥
ଆପନ କୀୟୌ ଗର୍ଭ ଜାନ ପୀଛେ ପଛତାଇ ।
ଆଇ ମହଲନ ତୁରତ ପିତା ପୀହର ପହୁଁଚାଇ ॥
କାଲନେମୀ ଆୟୌ ଉଦର, ହୋନହାର ସୋ ହ୍ୱୈ ଗୟୌ ।
ଜନେଁୟା ପୂତ ଦଶ ବରଷ ମହଁ, ଅସୁର କଂସ ସୋଇ ଭୟୌ ॥



# ଶୂର ବଂଶରେ ବସୁଦେବ

**ଦେବ-ଦୁନ୍ଦୁଭୟୋ ନେଦୁର୍ଆନକା ଯସ୍ୟ ଜନ୍ମନି ।**
**ବସୁଦେବଂ ହରେଃ ସ୍ଥାନଂ ବଦନ୍ତ୍ୟାନକ ଦୁନ୍ଦୁଭିମ୍ ॥**

(ଶ୍ରୀ ଭା ୯ ସ୍କ, ୨୪ଶ ଅ, ୨୯ଶ ଶ୍ଳୋକ)

## ଛପ୍ପୟ

**ପୁତ୍ର ଶତରଥ ଭୟେ ବିଦୂରଥ ଶୂର ତନୟ ତହିଁ ।**
**ଶୂର ତନୟ ଭଜମାନ ଭୟେ ତିନ କେ ସୁତ ନୃପଶିନି ।**
**ଶୂର ମାରିଷା ମାଁହି ଜନେ ଦଶ ସୁତ ତେଜସ୍ୱୀ ।**
**ତିନ ମହଁ ସବତେଂ ବଡ଼େ ଭୟେ ବସୁଦେବ ଯଶସ୍ୱୀ ॥**
**ତିନକୀ ପତ୍ନୀ ତ୍ରୟୋଦଶ, ଭାଗ୍ୟବତୀ ଅତି ଦେବକୀ ।**
**ଅଜର ଅମର ଜଗ ମହଁ ଭଈଁ, ଜନନୀ ବନି ହରି ଦେବକୀ ॥**

ଭଗବାନ୍ ସର୍ବବ୍ୟାପକ ଅଟନ୍ତି, ସର୍ବାନ୍ତର୍ଯାମୀ ଅଟନ୍ତି, ସେ ଚରାଚର ବିଶ୍ୱରେ ସମାନ ରୂପରେ ବ୍ୟାପ୍ତ । ଶାନ୍ତରସର ଉପାସନାକାଙ୍କ୍ଷୀ ଯୋଗୀଗଣଙ୍କର ଏହି ବିଚାର । ଭଗବାନଙ୍କୁ ସର୍ବବ୍ୟାପକ ଓ ବିରାଟ ବୋଲି ବିଶ୍ୱାସ କରି ଅଶାନ୍ତ ଚିତ୍ତକୁ ନିର୍ମଳ ଶାନ୍ତ କରିବା ହିଁ ଏହି ଶାନ୍ତରସ ଉପାସନାର ଫଳ । ଶାନ୍ତରସର ଉପାସକ ଜ୍ଞାନୀମାନେ ବିରାଟ ଭଗବାନଙ୍କୁ ହିଁ ଉପାସନା କରନ୍ତି । ସଂସାରରେ ଯାହା କିଛି ଦେଖିବାକୁ ମିଳେ, ସେ ସମସ୍ତ ସେହି ଭୂମା ପୁରୁଷଙ୍କର ବିଳାସ ମାତ୍ର । ସେ ସ୍ୱୟଂ ଅନେକ ରୂପରେ ଦର୍ଶନ ଦିଅନ୍ତି । ସିଏ ହିଁ ସତ୍ୟ ଓ ନାନା ରୂପରେ ପ୍ରତୀତ ହେଉଥିବା ଅସତ୍ ପ୍ରପଞ୍ଚ ମଧ୍ୟ; କିନ୍ତୁ ଯେ ଭଗବାନଙ୍କ ସହିତ କୌଣସି ସମ୍ବନ୍ଧ ସ୍ଥାପନ କରି ତାଙ୍କ ସଗୁଣ ରୂପର ଉପାସନା କରନ୍ତି, ତାଙ୍କ ପାଇଁ ଏ ସଂସାର ସତ୍ ବା ଅସତ୍ ଏହି ପ୍ରଶ୍ନ ବିଚାରଣୀୟ ନୁହେ । ଯେଉଁ ବସ୍ତୁ ସହିତ ଭଗବାନଙ୍କର

ସମ୍ବନ୍ଧ ରହିଛି, ତାହା ଭଗବାନଙ୍କ ଭଳି ସତ୍ ବସ୍ତୁ ଅଟେ । ଭଗବାନଙ୍କ ଉପଯୋଗ ପାଇଁ ଯେଉଁ ସବୁ ବସ୍ତୁ ଅଣାଯାଏ, ସେ ସମସ୍ତ ସତ୍ ଓ ଚିନ୍ମୟ ବସ୍ତୁ । ଭଗବାନଙ୍କ ସହିତ ଯାହାଙ୍କର ସମ୍ବନ୍ଧ ସ୍ଥାପିତ ହୋଇଛି, ସେମାନେ ସମସ୍ତେ ଭଗବାନଙ୍କର ପରିକର ଅଟନ୍ତି, ପାର୍ଷଦ ଅଟନ୍ତି, ନିତ୍ୟ ଅଟନ୍ତି, ସତ୍ ଅଟନ୍ତି ଓ ଚିନ୍ମୟ ଅଟନ୍ତି । ଯେଉଁ ଭୂମିରେ ସେ କ୍ରୀଡ଼ା କରନ୍ତି ବା ଲୀଳା କରନ୍ତି, ତାହା ସତ୍ ଓ ସୁଖ ସ୍ୱରୂପା । ଯେଉଁଠାରେ ସେ ଅବତୀର୍ଣ୍ଣ ହୁଅନ୍ତି, ଯାହା ଦ୍ୱାରା ପ୍ରକଟ ହୁଅନ୍ତି ସେ ସମସ୍ତ ଶ୍ରୀହରିଙ୍କ ସ୍ଥାନ । ସେଥିରେ ସେ ତଦାକାର । ଏଥିପାଇଁ ବାସୁଦେବଙ୍କ ବସିବା ସ୍ଥାନକୁ ବସୁଦେବ ବୋଲି କୁହାଯାଏ । ଯେ ବସୁଦେବ, ସେହି ହିଁ ବାସୁଦେବ—ଏକ ଆତ୍ମା ।

ସୂତ କହିଲେ—"ମୁନିଗଣ ! ମୁଁ ପୂର୍ବରୁ କହିଛି ଯେ, ମହାରାଜ ଦଶରଥଙ୍କ ପୁତ୍ରଙ୍କ ନାମ ବିଦୂରଥ । ତାଙ୍କ ପୁତ୍ରର ନାମ ଶୂର ଓ ଶୂରଙ୍କର ପୁତ୍ରର ନାମ ଭଜମାନ, ତାଙ୍କ ପୁତ୍ର ଶିନି, ଶିନିଙ୍କ ପୁତ୍ର ନାମ ସ୍ୱୟମ୍ଭୋଜ ଓ ସ୍ୱୟମ୍ଭୋଜଙ୍କ ପୁତ୍ରର ନାମ ହୃଦୀକ । ହୃଦୀକଙ୍କର ତିନି ପୁତ୍ର ଥିଲେ । ଦେବବାହୁ (ଦେବମୀଢ଼), ଶତଧନୁ ଓ କୃତବର୍ମା ।"

ମହାରାଜ ହୃଦୀକଙ୍କର ଜ୍ୟେଷ୍ଠପୁତ୍ର ଦେବବାହୁଙ୍କର ନାମ ଦେବମୀଢ଼ ବି ଥିଲା । ଏହି ଦେବମୀଢ଼ ମହାରାଜଙ୍କର ଏକ ଅତି ତେଜସ୍ୱୀ ପୁତ୍ର ହୋଇଥିଲା । ସେ ଶୂରଙ୍କ ଭଳି ଶୂର-ବୀର ଥିଲେ । ତେଣୁ ସମସ୍ତେ ତାଙ୍କ ନାମ 'ଶୂର' ରଖିଥିଲେ । କୁମାର ଶୂର ଯେତେବେଳେ ବଡ଼ ହେଲେ, ସେତେବେଳେ ମାରିଷା ନାମ୍ନୀ ରାଜକୁମାରୀଙ୍କ ସହିତ ତାଙ୍କର ବିବାହ ହେଲା । ଏହି ମାରିଷାଙ୍କଠାରୁ ତାଙ୍କର ଦଶପୁତ୍ର ଉତ୍ପନ୍ନ ହୋଇଥିଲେ । ଏହି ଦଶ ପୁତ୍ରଙ୍କ ମଧ୍ୟରେ ସବୁଠାରୁ ବଡ଼ ପୁତ୍ରଙ୍କ ନାମ ଥିଲା ବସୁଦେବ ।

ବସୁଦେବ ଯେତେବେଳେ ଜନ୍ମ ହେଲେ, ସେତେବେଳେ ପୃଥିବୀରେ ସର୍ବତ୍ର ଆନନ୍ଦ ଭରିଗଲା । ସ୍ୱର୍ଗରେ ମଧ୍ୟ ଦେବତାମାନଙ୍କର 'ନୌବତ' ଓ 'ଦୁନ୍ଦୁଭି' ଆଦି ବାଦ୍ୟ ଆପେ ଆପେ ବାଜି ଉଠିଥିଲେ । ବିନା ବାଦକରେ ଯେତେବେଳେ ବାଦ୍ୟଗୁଡ଼ିକ ସ୍ୱତଃ ବାଜି ଉଠିବାରୁ ଦେବଗଣ ଅତି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେମାନେ ମିଳିତ ହୋଇ ଦେବରାଜ ଇନ୍ଦ୍ରଙ୍କୁ ସଙ୍ଗରେ ନେଇ ପିତାମହ ବ୍ରହ୍ମାଙ୍କ ନିକଟକୁ ଗଲେ ଓ କହିଲେ—"ଭଗବନ୍ ! ଏହା ଅତି ଆଶ୍ଚର୍ଯ୍ୟ କଥା ଯେ, ଆମ୍ଭମାନଙ୍କର ବାଦ୍ୟଗୁଡ଼ିକ ବିନା ବାଦକରେ ଆପେ ଆପେ ବାଜୁଅଛି । ସଂସାରରେ ଏପରି କି ବିଚିତ୍ର ଘଟଣା ଘଟିଲା ଯେ ମହାରାଜ କି ଏପରି ବାଦ୍ୟଗୁଡ଼ିକ ସ୍ୱତଃ ବାଜି ଉଠିଲା ? ଆଜି ଚରାଚର ସମଗ୍ର ବିଶ୍ୱ ଆନନ୍ଦରେ ଉନ୍ମତ୍ତ । ସମସ୍ତଙ୍କ ପାଇଁ ଏପରି କେଉଁ ଅପୂର୍ବ ଆନନ୍ଦର ଘଟଣା ଆଜି ଘଟିଅଛି ?"

ବ୍ରହ୍ମା କହିଲେ—"ଦେବଗଣ ! ତୁମ୍ଭେମାନେ କ'ଣ ଜାଣନାହିଁ ଯେ ଆଜି ଅତି ଆନନ୍ଦର ଦିନ ? ଆଜି ଜଣେ ପ୍ରଜାବତ୍ସଳ, ସର୍ବପ୍ରିୟ, ସର୍ବସୁହୃଦ୍ ସମ୍ରାଟଙ୍କର ମର୍ତ୍ତ୍ୟପୁରରେ ଆବିର୍ଭାବ ହେଉଛି । ତାଙ୍କ ଆଗମନ ବାର୍ତ୍ତା ପାଇଁ ସମସ୍ତେ ଆଜି ଉତ୍ସୁକ । ସମସ୍ତେ ଅତି ଉତ୍କଣ୍ଠାର ସହିତ ତାଙ୍କ ଆଗମନର ପ୍ରତୀକ୍ଷା କରିଛନ୍ତି । ତାଙ୍କ ସ୍ୱାଗତ ସତ୍କାର ପାଇଁ ସ୍ଥାନ ପ୍ରସ୍ତୁତ କରୁଛନ୍ତି । ଯେତେବେଳେ ତାଙ୍କ ନିବାସ ପାଇଁ ସ୍ଥାନ ପ୍ରସ୍ତୁତ ହୋଇ ଯିବ, ସେତେବେଳେ ସମସ୍ତେ ଆଶାୟୀ ହେବେ ଯେ, ବର୍ତ୍ତମାନ ତାଙ୍କର ଆବିର୍ଭାବ ହେବ । ସେହି ଦୃଷ୍ଟିରୁ ଭଗବାନଙ୍କର ଜନ୍ମ ନେବାର ସ୍ଥାନ ହେଉଛନ୍ତି ବସୁଦେବ । ପ୍ରଥମେ ଯାଇ ସେ ବସୁଦେବଙ୍କର ଅନ୍ତଃକରଣରେ ପ୍ରବେଶ କରିବେ । ସେହି ବସୁଦେବଙ୍କର ଆଜି ପବିତ୍ର ଜନ୍ମ ଦିନ । ତାଙ୍କୁ ପ୍ରସନ୍ନ କରିବା ପାଇଁ ଦୁନ୍ଦୁଭିଆଦି ବାଦ୍ୟ ସ୍ୱତଃ ବାଜୁଅଛି ।"

ଏହାଶୁଣି ଦେବଗଣ ପ୍ରସନ୍ନ ହେଲେ ଓ ଭଗବାନ୍ କମଳାସନଙ୍କୁ ପ୍ରଣାମ କରି ନିଜ ନିଜ ସ୍ଥାନକୁ ଫେରିଆସି ଆନନ୍ଦ ଉତ୍ସବରେ ମାତିଗଲେ । ବସୁଦେବ ଜନ୍ମ ହେବା ପରେ ମହାରାଜ ଶୂରଙ୍କର ଦେବଭାଗ, ଦେବଶ୍ରବା, ଆନକ, ସୃଞ୍ଜୟ, ଶ୍ୟାମକ, କଙ୍କ, ଶମୀକ, ବତ୍ସକ ଓ ବୃକ ଆଦି ଆଉ ନଅ ପୁତ୍ର ଉତ୍ପନ୍ନ ହୋଇଥିଲେ । ଏ ସମସ୍ତେ ଭଗବାନଙ୍କର କକା ଥିଲେ । ଭଗବାନ ଯେତେବେଳେ ଲୀଳା (କ୍ରୀଡ଼ା) କରୁଥିଲେ, ସେତେବେଳେ ଏକାକୀ ଲୀଳା କରୁ ନ ଥିଲେ । ନିଜର ବହୁତ ସମ୍ବନ୍ଧୀୟ ବ୍ୟକ୍ତିଙ୍କୁ ନେଇ ଲୀଳା କରୁଥିଲେ । କାରଣ କ୍ରୀଡ଼ା, ନାଟକ, ଅଭିନୟ ଜଣେ ଦୁଇଜଣଙ୍କ ମଧ୍ୟରେ ହୁଏ ନାହିଁ । ଏଥିପାଇଁ ଅନେକ ଲୋକ ଆବଶ୍ୟକ । ତାଙ୍କର ତ ନଅ ଜଣ କକା ଥିଲେ, ଖୁଡ଼ିଙ୍କ ସଂଖ୍ୟା ବି କମ୍ ନ ଥିଲା । ତାଙ୍କର ତେରଜଣ ସମ୍ବନ୍ଧୀୟ ମାଉ। ବି ଥିଲେ ବୋଲି କୁହାଯାଏ । ଏମାନଙ୍କ ମଧ୍ୟରେ ସବୁଠାରୁ ସାନ ଥିଲେ ଦେବକୀ । ତାଙ୍କର ପାଞ୍ଚଟି ପିଉସୀ ଥିଲେ । ମୁଁ ସଂକ୍ଷେପରେ ସମସ୍ତଙ୍କ ବଂଶ କଥା କହିବି । ଏବେ ଆପଣମାନେ କହନ୍ତୁ ଯେ, ମୁଁ ପ୍ରଥମେ ଭଗବାନଙ୍କର ସଖା-ସୋଦର, କକାପୁଅ ଭାଇ ଆଦିଙ୍କ ନାମ ଶୁଣାଇବି ବା ସେହି ନଣନ୍ଦମାନଙ୍କ କଥା କହିବି ?

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଆପଣ ତ ତାଙ୍କର ବଂଶ କଥା କହୁ ଅଛନ୍ତି; କିନ୍ତୁ ଶ୍ରୀକୃଷ୍ଣ ଲୀଳା ଶ୍ରବଣରେ ବିଳମ୍ବ ହୋଇଯିବ ଓ ଆମ୍ଭେମାନେ ଶ୍ରୀକୃଷ୍ଣ ଲୀଳା ଶ୍ରବଣ କରିବା ପାଇଁ ସହଜେ ତ ବ୍ୟଗ୍ର ହୋଇ ପଡ଼ିଲୁଣି । କିନ୍ତୁ ଆପଣ ଏହା ସ୍ୱୀକାର କରିବେ ଯେ, ଯେ ପର୍ଯ୍ୟନ୍ତ ଶ୍ରୀକୃଷ୍ଣ ଲୀଳାର ପୂର୍ଣ୍ଣ ଭୂମିକା ପ୍ରସ୍ତୁତ ନ ହୋଇଛି, ସେ ପର୍ଯ୍ୟନ୍ତ ଆପଣ ଆରମ୍ଭ କରୁ ନାହାନ୍ତି । ପ୍ରତୀତ ହେଉଛି, ଶ୍ରୀକୃଷ୍ଣଙ୍କ ଲୀଳା ମଧ୍ୟରେ ସ୍ଥାନେ ସ୍ଥାନେ ଏହି ସବୁ ପ୍ରସଙ୍ଗ ଆସିଯିବ, ଏଥିପାଇଁ ଆପଣ ପ୍ରଥମେ ସମସ୍ତଙ୍କର ପରିଚୟ କରାଇ ଦେବା ଆବଶ୍ୟକ, ତେବେ ଠିକ୍ ଅଛି, ଆପଣ ପ୍ରଥମେ

ଭଗବାନଙ୍କ ପିଉସୀମାନଙ୍କ ବଂଶ କଥା ଶୁଣାନ୍ତୁ । ତେବେ ଭଗବାନଙ୍କ ପାଞ୍ଚ ଜଣ ପିଉସୀ କିଏ କିଏ ତାହା କହନ୍ତୁ ?

ସୂତ କହିଲେ—"ହଁ ମହାରାଜ ! ମୁଁ ସେହି କଥା କହୁଛି ଶୁଣନ୍ତୁ । ବସୁଦେବଙ୍କର ପୃଥା, ଶ୍ରୁତଦେବା, ଶ୍ରୁତକୀର୍ତ୍ତି, ଶ୍ରୁତଶ୍ରବା ଓ ରାଜାଧିଦେବୀ ଏହି ପାଞ୍ଚ ଭଉଣୀ ଥିଲେ । ମହାରାଜ ଶୂରଙ୍କର ଏହି ପାଞ୍ଚ କନ୍ୟା ପ୍ରଥମେ ହୋଇଥିବାର ପ୍ରତୀତ ହୁଏ । ଏହାଙ୍କପରେ ଶୂରଙ୍କର ଦଶ ପୁତ୍ର ହୋଇଥିଲେ । କନ୍ୟାମାନଙ୍କ ମଧ୍ୟରେ ପୃଥା ଥିଲେ ଜ୍ୟେଷ୍ଠା କନ୍ୟା ଓ ପୁତ୍ରମାନଙ୍କ ମଧ୍ୟରେ ବସୁଦେବ ଥିଲେ ଜ୍ୟେଷ୍ଠ ପୁତ୍ର ।

ମହାରାଜ ଶୂରଙ୍କର ପିଉସୀ ପୁଅ ଭାଇ ହେଉଛନ୍ତି ମହାରାଜ କୁନ୍ତିଭୋଜ । ସେ ମହାରାଜ ଶୂରଙ୍କଠାରୁ ବୟସରେ ବଡ଼ଥିଲେ । କିନ୍ତୁ ଉଭୟଙ୍କ ମଧ୍ୟରେ ଅତ୍ୟନ୍ତ ସ୍ନେହ ସହାନୁଭୂତି ଥିଲା । ଥରେ ମହାରାଜ କୁନ୍ତିଭୋଜ ମଥୁରା ଆସିଥିଲେ । ମହାରାଜ ଶୂର ତାଙ୍କର ଏହି ପିଉସୀ ପୁଅ ଭାଇଙ୍କୁ ଅତି ଆଦର ସତ୍କାର କରିଥିଲେ । ସେହିଦିନ ମହାରାଣୀ ମାରିଷା ପ୍ରଥମ ଗର୍ଭ ଧାରଣ କରି ଥାଆନ୍ତି । ମହାରାଜ କୁନ୍ତିଭୋଜଙ୍କର ଅଦ୍ୟାବଧି ସନ୍ତାନ ସନ୍ତତି ନ ଥାନ୍ତି । ଏ କଥା ପଡ଼ୁ ପଡ଼ୁ ସେ ଅଟକି ଗଲେ । ମହାରାଜ କୁନ୍ତିଭୋଜ ସନ୍ତାନ ବିନା ଅତ୍ୟନ୍ତ ଦୁଃଖୀ ଥିଲେ ଓ ଚିନ୍ତିତ ଦେଖା ଯାଉଥିଲେ । ତେଣୁ ମହାରାଜ ଶୂର ସ୍ନେହ ବଶତଃ ତାଙ୍କୁ କହିଲେ—"ଭାଇ ! ଆପଣ କାହିଁକି ଏତେ ଦୁଃଖ କରୁଛନ୍ତି ? ଆମେ ସବୁ ତ ଆପଣଙ୍କର । ଆପଣଙ୍କର ସାନବୋହୂ (ଭାଇବୋହୂ) ତ ଗର୍ଭବତୀ, ମୋର ପ୍ରଥମେ ଯେଉଁ ସନ୍ତାନ ହେବ, ମୁଁ ତାକୁ ତୁମକୁ ଦେଇଦେବି ।"

ଏ କଥା ଶୁଣି ମହାରାଜ କୁନ୍ତିଭୋଜ ପରମ ଆନନ୍ଦିତ ହେଲେ । କିଛି ଦିନ ପରେ ମାରିଷାଙ୍କର ଏକ କନ୍ୟା ଜାତ ହେଲା । ମହାରାଜ ଶୂର ତା'ର ନାମ 'ପୃଥା' ଦେଲେ । ପୃଥା ଯେତେବେଳେ ବର୍ଷେ-ଦୁଇବର୍ଷର ହୋଇଗଲା, ସେତେବେଳେ ମହାରାଜ ଶୂର ନିଜର ପ୍ରତିଜ୍ଞା ଅନୁସାରେ ତାକୁ ମହାରାଜ କୁନ୍ତିଭୋଜଙ୍କୁ ଦେଇ ଦେଲେ । ଏତେ ସୁନ୍ଦରୀ କନ୍ୟା ପାଇ ମହାରାଜ କୁନ୍ତିଭୋଜଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ତାକୁ ପୁତ୍ର ମନେ କରି ପୁତ୍ର ଭଳି ଅତ୍ୟନ୍ତ ଯତ୍ନ ସହକାରେ ଲାଳନପାଳନ କଲେ । ଯେପରି ଏକ କମଳ କୁଣ୍ଡରୁ ଯତ୍ନ ପୂର୍ବକ କୁମୁଦିନୀର ଲତା ନେଇଗଲେ କିଛି ସମୟ ପାଇଁ ମାର୍ଗରେ ତାହା ବର୍ଣ୍ଣହୀନ ହୋଇପଡ଼େ ଓ ଅନ୍ୟ କୁଣ୍ଡରେ ସେହିପରି ସୁନ୍ଦର ଜଳ, ସେହିପରି ଉତ୍ତମ ପଙ୍କ ପାଇ ତାହା ଅତି ସତେଜ ଓ ପ୍ରଫୁଲ୍ଲିତ ହୋଇଯାଏ । ସେହି ପ୍ରକାର ମଥୁରାର ରାଜପ୍ରାସାଦରୁ ଆସିବା ସମୟରେ ପଥ ମଧ୍ୟରେ ପୃଥା ଦୁଃଖ ପ୍ରକାଶ କରିଥିଲେ । କିନ୍ତୁ କୁନ୍ତିଭୋଜ ମହାରାଜଙ୍କ ରାଜ-ମହଲରେ ପହଞ୍ଚି ସେ ପୁନଃ ପ୍ରଫୁଲ୍ଲିତ ହୋଇଗଲେ । ସେ ନିଜର ପୂର୍ବ ଘରକଥା ସମ୍ପୂର୍ଣ୍ଣରୂପେ ଭୁଲିଗଲେ । ଚନ୍ଦ୍ରକଳା ଦିନୁଦିନ ବଢ଼ିଲା ପରି ସେ ସେଠାରେ

ବଢ଼ିବାକୁ ଲାଗିଲେ । କୁନ୍ତିଭୋଜଙ୍କ କନ୍ୟା ହେବା ପରେ ତାଙ୍କର ନାମ କୁନ୍ତୀ ରଖାଗଲା । ତାଙ୍କର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଗୁଣ ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା । ସେ ତ୍ରୈଲୋକ୍ୟ ସୁନ୍ଦରୀ କନ୍ୟା ଥିଲେ । ପିତା କୁନ୍ତିଭୋଜ ତାଙ୍କୁ ପାଇ ନିଜକୁ ପରମ ଭାଗ୍ୟବାନ୍ ମନେ କରୁଥିଲେ । ଯେ କେହି ତାଙ୍କ କନ୍ୟାକୁ ଦେଖୁଥିଲା, ସେ ତା' ଗୁଣରେ ମୁଗ୍ଧ ହୋଇ ଯାଉଥିଲା । ସଂସାରକୁ ବଶ କରିବା ପାଇଁ ତିନୋଟି ମହାମନ୍ତ୍ର ଅଛି—

ଯଥା—୧ ମଧୁର ବାଣୀ, ସେବା ଓ ଅନ୍ୟକୁ ନିନ୍ଦା ନ କରି ପ୍ରଶଂସା କରିବା । ପୁଅ ହେଉ, କନ୍ୟା ହେଉ, ସ୍ତ୍ରୀ ବା ପୁରୁଷ ହେଉ, ଯେ କେହି ହୋଇ ଥାଆନ୍ତୁ ନା କାହିଁକି, ସେ ଯଦି ଏହି ତିନୋଟି ମହାମନ୍ତ୍ର ଗ୍ରହଣ କରି ନେଇଛି, ତେବେ ସେ ବିଶ୍ୱକୁ ବଶ କରି ନେଇଛି । କୁମାରୀ କୁନ୍ତୀ ଏହି ତିନୋଟି ମହାମନ୍ତ୍ର ଗ୍ରହଣ କରି ନେଇ ଥିଲେ । ସେଥିପାଇଁ ସେ ଅସମ୍ଭବ କଥାକୁ ସମ୍ଭବ କରିପାରୁ ଥିଲେ । ସମସ୍ତଙ୍କ ପାଇଁ ଦୁରାରାଧ୍ୟ ଦୁର୍ବାସା ଋଷିଙ୍କୁ ସେ ନିଜର ସେବା ଶୁଶ୍ରୂଷ ବଳରେ ପ୍ରସନ୍ନ ଓ ସନ୍ତୁଷ୍ଟ କରି ଏପରି ଦୁର୍ଲଭ ବର ପାଇଥିଲେ, ଯାହାକି ଏ ନରଲୋକର ଲଳନାମାନଙ୍କ କଥା ଛାଡ଼ନ୍ତୁ, ଦେବପତ୍ନୀମାନଙ୍କ ପାଇଁ ମଧ୍ୟ ଦୁର୍ଲଭ । ଏହି କୁନ୍ତୀଙ୍କ ଗର୍ଭରୁ କନ୍ୟାଦାନ ଅବସ୍ଥାରେ ବୀର ମହାରାଜ କର୍ଣ୍ଣ ଜନ୍ମଲାଭ କରିଥିଲେ ।

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଆମ୍ଭେମାନେ ପ୍ରସଙ୍ଗକ୍ରମେ ଏଠାରେ ଦାନବୀର କର୍ଣ୍ଣଙ୍କର ଜନ୍ମକଥା ମଧ୍ୟ ଶୁଣିବାକୁ ଚାହୁଁଛୁ । କୃପାକରି ସଂକ୍ଷେପରେ ତାହା ଆମ୍ଭମାନଙ୍କୁ ଶୁଣାନ୍ତୁ । ତାହାପରେ ଭଗବାନଙ୍କର ଅନ୍ୟ ଟିଉସୀଙ୍କ କଥା ଶୁଣାଇବେ ।"

ସୂତ କହିଲେ—"ତାହା ହେଲେ ଠିକ୍ ଅଛି ମହାରାଜ ! ମୁଁ ମହାତ୍ମା କର୍ଣ୍ଣଙ୍କ କଥା ମଧ୍ୟ ଶୁଣାଇବା ପାଇଁ ଇଚ୍ଛା କରିଥିଲି; କିନ୍ତୁ ଆପଣମାନଙ୍କୁ ଡରି କିଛି କହୁ ନ ଥିଲି । ଏବେ ଆପଣ ତାହା ହିଁ ଚାହୁଁଛନ୍ତି, ତେବେ କର୍ଣ୍ଣଙ୍କ ଜନ୍ମ ବୃତ୍ତାନ୍ତ ତାହା ହେଲେ ମୁଁ କହୁଛି ଶୁଣନ୍ତୁ ।"

## ଛପ୍ପୟ

ସୁତା ଶୂର କୀ ପାଞ୍ଚ ବହନ ବସୁଦେବ ଭୂପ କୀ ।
ପୃଥା ସବନ ମହଁ ବଡ଼ୀ ଖାନ ଜୋ ରହୀ ରୂପ କୀ ॥
କୁନ୍ତି ଭୋଜ କୂଁ ଦଇ ନୃପତି ପୁତ୍ରୀ କରି ଲୀନ୍ହୀ ।
ଦୁର୍ବାସା ନେ ଦେବ ବୁଲାବନ ବିଦ୍ୟା ଦୀନ୍ହୀ ।
ଆବାହନ ରବି କୋ କରେଯୋ, ମନ୍ତ୍ର ପରୀକ୍ଷା କରନ ହିତ ॥
ଆୟେ ସନ୍ମୁଖ ସୂର୍ଯ୍ୟ ଜବେ, ଭୟୋ କୁଁବରି ଅତି ସଂକୁଚିତ ।

●

# ବସୁଦେବଙ୍କର ଭଣଜା
# କୁନ୍ତୀପୁତ୍ର କର୍ଣ୍ଣ

**କୁନ୍ତେଃ ସଖ୍ୟୁଃ ପିତା ଶୂରୋହ୍ୟପୁତ୍ରସ୍ୟ ପୃଥାମଦାତ୍ ।**
**ସାଽପ ଦୁର୍ବାସସୋ ବିଦ୍ୟାଂ ଦେବହୂତୀଂ ପ୍ରତୋଷିତାତ୍ ।**
**ତସ୍ୟା ବୀର୍ଯ୍ୟପରୀକ୍ଷାର୍ଥମାଜୁହାବ ରବିଂ ଶୁଚମ୍ ।**

(ଶ୍ରୀ ଭା ୯ ସ୍କ ୨୪ ଅଧ୍ୟାୟ ୩୨ ଶ୍ଳୋକ)

### ଛପ୍‌ପଯ୍ୟ

ବ୍ୟର୍ଥ ଅଶମନ ହେବ ନ ମେଘେ ତେସେ ଅନହୃତ ।
ଆପନ କଯ୍ୟୋ ଗର୍ଭ ଭଇ କୁନ୍ତୀ ଅତ ଲଜ୍ଜିତ ।
କରୀ ପ୍ରକଟ ନହୁଁ ବାତ ଜନେ୍ୟା ଛୁପକେ ସୁନ୍ଦର ସୁତ ॥
ଅତ ତେଜସ୍ୱୀ ବୀର କବଚ ପହ୍ନେ କୁଣ୍ଡଲ ଯୁତ ।
କନ୍ୟା ସୁତ ଅନୁପମ କରଖି, ଲୋକ ଲାଜବଶ ଡ଼ରଗଇ ॥
ପଧାୟ୍ୟା ପୟମଞ୍ଜୁଷ ଚର୍ମିକେ, ପୁନ ପୁନ ଲଖି ବ୍ୟାକୁଲ ଭଇ ।

ଯଦ ସମାଜର ବନ୍ଧନ ନ ହୋଇଥାଏ, ତାହାହେଲେ ମନୁଷ୍ୟ ପଶୁରେ ପରିଣତ ହୁଏ ବା ଦେବତାରେ ପରିଣତ ହୋଇଯାଏ । ଲୋକଲଜ୍ଜା ବଶତଃ ସାଧାରଣ ଲୋକଙ୍କୁ ଏପରି ଅନେକ କଥା କରିବାକୁ ପଡ଼ିଥାଏ, ଯାହାକି କରିବାକୁ ତାଙ୍କର ହୃଦୟ ଆଦୌ ଚାହୁଁ ନ ଥାଏ । କିନ୍ତୁ ସମାଜ ତ ତାର ମର୍ଯ୍ୟାଦାକୁ ଅତୁଟ ରଖିବା ପାଇଁ ଅପ୍ରିୟ କାର୍ଯ୍ୟକୁ ମଧ୍ୟ କରିବା ପାଇଁ ପଶ୍ଚାତ୍ପଦ ହୁଏ ନାହିଁ । ସମାଜ କାହାର ହାର୍ଦ୍ଦିକ ଭାବକୁ କଦାପି ପସନ୍ଦ କରେ ନାହିଁ । ତାହା ତ ମସ୍ତିଷ୍କର କାର୍ଯ୍ୟ । ପୃଥକ୍ ପୃଥକ୍ ଲୋକଙ୍କର ଭିନ୍ନ ଭିନ୍ନ ମନଭାବକୁ ଜାଣିବା ସମାଜପକ୍ଷେ ଅସମ୍ଭବ । ତାହା ପାଇଁ ଘଟଣା ହିଁ କେବଳ ପ୍ରମାଣ । କେହି ନିଜର ବଶିଷ୍ଟ ଗୁଣଦ୍ୱାରା ସମାଜର ଉପରକୁ

ଉଠିଯାଏ, ସେପରି ଲୋକଙ୍କ କଥା ଭିନ୍ନ । କିନ୍ତୁ ସମାଜ କାହାରିକୁ କ୍ଷମା କରେନାହିଁ । ତାକୁ ଦେଶ, କାଳ, ସମୟ ଓ ନିଜର ସଦାଚାର ଅନୁସାରେ ସମାଜରେ ରହୁଥିବା ବ୍ୟକ୍ତିଙ୍କୁ ନିନ୍ଦା ଓ ପ୍ରଶଂସା ରୂପକ ଦଣ୍ଡ ଦେବାକୁ ହୋଇଥାଏ । ଏଥିପାଇଁ ସମାଜ ଭୟରେ ଅପରାଧ ଅନେକ ଅଂଶରେ କମିଯାଏ ଏବଂ ଅନେକ ପ୍ରକାଶଯୋଗ୍ୟ ଘଟଣା ମଧ୍ୟ ସମାଜର ନିୟମ ଅନୁସାରେ ପ୍ରକାଶ ମଧ୍ୟ କରାଯାଏ ନାହିଁ । ସମାଜରେ ସାମାଜିକ ବ୍ୟବସ୍ଥାର ପାଳନ ସର୍ବସାଧାରଣଙ୍କ ପାଇଁ ହିତକର । ଏହାଦ୍ୱାରା ସମାଜ ଉଚ୍ଛୃଙ୍ଖଳତାରୁ କେତେକାଂଶରେ ରକ୍ଷା ପାଇଯାଏ ।

ସୂତ କହିଲେ—"ମୁନିଗଣ ! ମହାରାଜ କୁନ୍ତୀଭୋଜ ପୃଥାଙ୍କୁ ପାଇ ପରମ ଆନନ୍ଦ ଲାଭକଲେ । ସେଠାରେ ସେ କୁନ୍ତୀନାମରେ ପ୍ରସିଦ୍ଧ ହେଲେ । ଯେତେବେଳେ ବିବାହ ଯୋଗ୍ୟା ହେଲେ, ସେତେବେଳେ ରାଜା ତାଙ୍କ ଯୋଗ୍ୟବର ଅନ୍ୱେଷଣରେ ଲାଗିଲେ । କୁନ୍ତୀଙ୍କ ପ୍ରତି ତାଙ୍କର ଅତ୍ୟଧିକ ସ୍ନେହ ଥିଲା ।'ସେ ଚାହୁଁ ଥିଲେ, ମୋ କନ୍ୟାପାଇଁ କିପରି ଉପଯୁକ୍ତ ବରଟିଏ ମିଳିଯାଉ । ଏହି ଚିନ୍ତାରେ ରାଜା କାଳ କାଟୁଥିବା ସମୟରେ ମହର୍ଷି ଦୁର୍ବାସା ରାଜନବରରେ ଦିନେ ଉପସ୍ଥିତ ହେଲେ । ମହାମୁନି ଦୁର୍ବାସାଙ୍କୁ ଦେଖି ରାଜା ରାଣୀ ଓ ପୁରୋହିତଙ୍କ ସହିତ ଉଠି ଠିଆହୋଇ ପଡ଼ିଲେ । ସେ ମୁନିଙ୍କର ଯଥୋଚିତ ସ୍ୱାଗତ ସତ୍କାର କଲେ ଓ କୁଶଳ ପଚାରିଲେ । ଉଭୟଙ୍କ ମଧ୍ୟରେ କୁଶଳ ସମ୍ବାଦ ପଚରା ପଚରି ସରିବା ପରେ ମୁନି କହିଲେ—"ରାଜନ୍ ! ମୋର ଇଚ୍ଛା ଯେ ଏବେ ଏହି ଚାତୁର୍ମାସ୍ୟ ବ୍ରତ ଆପଣ ଏଠାରେ ରହି ପାଳନ କରନ୍ତୁ । ଏଥିପାଇଁ ମୋତେ ଆଜ୍ଞା ଦିଅନ୍ତୁ ।"

ଅତ୍ୟନ୍ତ ପ୍ରସନ୍ନ ହୋଇ ରାଜା କହିଲେ—"ବ୍ରହ୍ମନ୍ ! ମୋର ଖୁବ୍ ଭାଗ୍ୟ, କାରଣ ଆପଣ ମୋ ଉପରେ ଅତ୍ୟନ୍ତ କୃପା କରିବାକୁ ଇଚ୍ଛା କରୁଛନ୍ତି । ଏକକ୍ଷଣ ପାଇଁ ସାଧୁସଙ୍ଗ ଯଦି ଲାଭହୁଏ, ତେବେ କୋଟି କୋଟି ଜନ୍ମର ପାପତାପ ନଷ୍ଟ ହୋଇଯାଏ । ପୁନଶ୍ଚ ଆପଣ ତ ମୋତେ ଚାରିମାସ ଆପଣଙ୍କ ଦର୍ଶନର ଦେବଦୁର୍ଲଭ ସୁଅବସର ପ୍ରଦାନ କରୁ ଅଛନ୍ତି । ଏହାଠାରୁ ବଳି ମୋର ଆଉ କେଉଁ କଥା ହେବା ସମ୍ଭବ ।"

ରାଜାଙ୍କର ପ୍ରସନ୍ନତା ପୂର୍ବକ ଅନୁମତି ପାଇ ମୁନି ସେଠାରେ ଚାତୁର୍ମାସ୍ୟ ବ୍ରତ ପାଳନ କରିବା ପାଇଁ ସ୍ଥିର କଲେ । ରାଜା କୁନ୍ତିଭୋଜ ଦୁର୍ବାସାଙ୍କର ସ୍ୱଭାବ ସମ୍ବନ୍ଧରେ ଜାଣିଥିଲେ । ସେ ଏକା କାହିଁକି, ସଂସାରର ପ୍ରତ୍ୟେକ ଲୋକ ଜାଣିଥିଲେ ଯେ, ଦୁର୍ବାସା ହେଉଛନ୍ତି ରୁଦ୍ରାବତାର । କ୍ରୋଧ ତ ତାଙ୍କ ଓଷ୍ଠ ଉପରେ ସର୍ବଦା ବିରାଜମାନ, ଏହାଛଡ଼ା ବିନା ଶାପରେ ସେ କଥାବାର୍ତ୍ତା କରନ୍ତି ନାହିଁ । ଏତେ ଉଗ୍ର

ସ୍ୱଭାବର ମୁନିଙ୍କୁ ଚାରିମାସ କାଳ ପ୍ରସନ୍ନ ରଖିବା ଅସମ୍ଭବ କାର୍ଯ୍ୟ ଥିଲା । ଯେ ନିଜେ ନିଜକୁ ଜଳାଞ୍ଜଳି ଦେଇ ସର୍ବାନ୍ତଃକରଣରେ ତାଙ୍କର ହୋଇଯାଏ, କେହି ହିଁ କେବଳ ତାଙ୍କ କ୍ରୋଧାନଳକୁ ସମ୍ଭାଳି ନେଇପାରେ । ଯାହାଙ୍କ ମନରେ ଟିକିଏ ମାତ୍ର ରୋଷ ଥାଏ, ଯାହାଙ୍କ ଚିତ୍ତରେ ଏହି ଭାବ ଲୁଚିରହିଥାଏ ଯେ, ମୁଁ ବି ଜଣେ ମାନ୍ୟଗଣ୍ୟ ବ୍ୟକ୍ତି, ସେପରି ବ୍ୟକ୍ତି ଦୁର୍ବାସାଙ୍କର ସେବା କରିପାରେ ନାହିଁ । ସେବାଧର୍ମ ଅତ୍ୟନ୍ତ ଅତି ଗହନ । ସେବକ ଯଦି ସୁଖ ଚାହେଁ, ତେବେ ସେ ବାସ୍ତବ ସେବକ ନୁହେଁ । ତା'ଦ୍ୱାରା ସେବା କାର୍ଯ୍ୟ ହୋଇପାରେ ନାହିଁ । ଯେ ସ୍ୱାମୀଙ୍କ ପ୍ରତି ବା ପ୍ରଭୁଙ୍କ ପ୍ରତି ପୂର୍ଣ୍ଣ ଶ୍ରଦ୍ଧା ନ ରଖେ, ସର୍ବାନ୍ତଃକରଣରେ ତାଙ୍କର ଅନୁଗତ ନ ହୁଏ, ତା'ଦ୍ୱାରା ସେବା କାର୍ଯ୍ୟ ଅସମ୍ଭବ ।

ଜଣେ ମହାତ୍ମାଙ୍କର କେତେକ ସେବକ ଥିଲେ; କିନ୍ତୁ ତାଙ୍କର ଜଣଙ୍କ ଉପରେ ବିଶେଷ ଅନୁରାଗ ଥିଲା । ଅନ୍ୟ ସେବକମାନଙ୍କୁ ଏ କଥା ଭଲ ଲାଗିଲା ନାହିଁ । ସେମାନେ ଚିନ୍ତା କରୁଥିଲେ—"ଆମ୍ଭେମାନେ ଦିନ ରାତି ମହାତ୍ମାଙ୍କର ସେବା କରୁଅଛୁଁ, ଆମ୍ଭେମାନେ ମଧ୍ୟ ନିଜ ରକ୍ତକୁ ପାଣି କରି ଦିନରାତି ସେବା କାର୍ଯ୍ୟରେ ଲାଗିଅଛୁଁ; କିନ୍ତୁ ସ୍ୱାମୀଜୀ ଆମ୍ଭମାନଙ୍କ ଉପରେ ଏତେ ସନ୍ତୁଷ୍ଟ ନୁହନ୍ତି, ଯେତେ ଅମୁକ ସେବକ ଉପରେ ସନ୍ତୁଷ୍ଟ ଅଛନ୍ତି । ଦିନେ ଜଣେ ସାହସୀ ସେବକ ସ୍ୱାମୀଜୀଙ୍କ ଆଗରେ ନିବେଦନ କଲା—"ପ୍ରଭୋ ! ଆପଣ ଅମୁକ ସେବକ ଉପରେ ଅଧିକ ମମତା ରଖୁଛନ୍ତି; କିନ୍ତୁ ଆମ୍ଭମାନଙ୍କୁ ଆଦୌ ଭଲ ପାଉ ନାହାନ୍ତି । ଆମ୍ଭେମାନେ କ'ଣ ଆପଣଙ୍କ ସେବକ ନୋହୁଁ ? ଆମ୍ଭମାନଙ୍କ ସେବାରେ କ'ଣ କୌଣସି ତ୍ରୁଟି ରହୁଛି ?"

ସ୍ୱାମୀଜୀ କହିଲେ—"ତୁମେ ଠିକ୍ କଥା କହୁଛ, ଏହାର ଉତ୍ତର ମୁଁ ଅନ୍ୟଦିନ ଦେବି ।" ଏହିପରି ଭାବରେ ଏ କଥା ପୁରୁଣା ହୋଇଗଲା ।

ଦିନେ ସ୍ୱାମୀଜୀଙ୍କୁ ପ୍ରଶ୍ନ କରିଥିବା ସେବକଟି କୌଣସି ଏକ ବସ୍ତୁ ନେଇ ରାସ୍ତାରେ ରଖି ଦେଇ ଆସିଥିଲା । ସ୍ୱାମୀଜୀ ସେଠାକୁ ଆସି ଜାଣି ଜାଣି ତହିଁରେ ଧକ୍କା ଖାଇଲେ । ସେହି ବସ୍ତୁଟି ଭାଙ୍ଗିଗଲା । ଏଥିରେ ସ୍ୱାମୀଜୀ କ୍ରୋଧ ପ୍ରକାଶ କରି କହିବାକୁ ଲାଗିଲେ—"ତୁମେ ସବୁ ଅତ୍ୟନ୍ତ ବୁଦ୍ଧିହୀନ ଅଛ । ଏ ବସ୍ତୁକୁ ରାସ୍ତା ଉପରେ କାହିଁକି ରଖିଥିଲ ? ତାହା ଏବେ ଭାଙ୍ଗିତୁଟି ଗଲା ।"

ସେବକଟି କହିଲା—"ସ୍ୱାମୀଜୀ ! ଏଥିରେ ମୋର କ'ଣ ଦୋଷ ? ଏତେ ପ୍ରଶସ୍ତ ରାସ୍ତା ଥିଲା, ଆପଣ ପାଖେଇ ହୋଇ ଯାଇଥିଲେ ହୋଇ ନ ଥାନ୍ତା ? ଆପଣ ତ ଜାଣି ଜାଣି ତାକୁ ଧକ୍କା ମାରି ପକାଇ ଦେଲେ ।"

ସ୍ୱାମୀଜୀ କହିଲେ—"ତୁମେ ତାହା କାହିଁକି ଗୁଡ଼ା ଉପରେ ରଖିଥିଲ ?"

ସେବକଟି କହିଲା—"ମହାରାଜ ! କୌଣସିଠାରେ ତ ତାହା ରଖା ହୋଇ ଥାଆନ୍ତା । ଏହା ଆପଣ ଚିନ୍ତା କରିବା ଉଚିତ ଥିଲା ଯେ, ହାତରେ ଏକ ବସ୍ତୁ ଅଛି, ମୁଁ ଟିକିଏ ପାଖେଇ ହୋଇ ଯାଏ !" ସ୍ୱାମୀଜୀ ଏବେ ଆଉ କିଛି ନ କହି ଚୁପ୍ ହୋଇ ସେଠାରୁ ଚାଲିଗଲେ ।

କିଛିଦିନ ପରେ ଦିନେ ଚୌକି ଉପରେ ଏକ କାଚପାତ୍ର ରଖା ଯାଇଥିଲା । ଯେଉଁ ସେବକ ପ୍ରତି ସ୍ୱାମୀଜୀଙ୍କର ଅନୁରାଗ ଥିଲା, ସେ ମଧ୍ୟ ସେଠାରେ ଝାଡ଼ୁ ଦେଉଥିଲା । ଅନ୍ୟମାନେ ନିକଟରେ ବସିଥିଲେ । ସ୍ୱାମୀଜୀ ସେହି କାଚ ପାତ୍ରଟିକୁ ଉଠାଇ ହାତରେ ଧରି ତଳେ ପକାଇ ଦେଲେ । ପାତ୍ରଟି ପଥର ଉପରେ ପଡ଼ିବା କ୍ଷଣି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ଏବେ ସ୍ୱାମୀଜୀ ଲାଲ ଲାଲ ଆଖି କରି ତାଙ୍କର ସେହି ଭଲ ପାଉଥିବା ସେବକକୁ ପାଖକୁ ଡାକି ତାଡ଼ନା ଆରମ୍ଭ କରି ଦେଲେ ଓ କହିଲେ—"ପାତ୍ରଟି କାହିଁକି ପକାଇ ଭାଙ୍ଗି ଦେଲ ?"

ସେ ହାତ ଯୋଡ଼ି ଦୀନ ହୋଇ କହିଲା—"ସ୍ୱାମୀଜୀ ! ଅପରାଧ ହୋଇଗଲା । ମୋତେ କ୍ଷମା କରନ୍ତୁ । ଭବିଷ୍ୟତକୁ ମୁଁ ସାବଧାନ ହେବି । ଅନ୍ୟ ସେବକମାନେ ଏପରି ଉତ୍ତର ଶୁଣି ଅତି ଆଶ୍ଚର୍ଯ୍ୟ ହୋଇଗଲେ ଓ ତାକୁ ଯାଇ କହିଲେ—ଆରେ ଭାଇ ! ତୁମର ଏଥିରେ କି ଅପରାଧ ହେଲା ? ତୁ' ତ ପାତ୍ରଟିକୁ ଆଦୌ ଛୁଇଁନାହୁଁ ? ତାହା ତ ସ୍ୱାମୀଜୀଙ୍କ ହାତରୁ ପଡ଼ି ଭାଙ୍ଗି ଗଲା ।"

ସେ ନମ୍ରତାର ସହିତ କହିଲା—"ସ୍ୱାମୀଜୀ ଯେତେବେଳେ କ୍ରୋଧ କରୁଛନ୍ତି, ସେତେବେଳେ ଆମର ନିଶ୍ଚୟ କୌଣସି ନା କୌଣସି ଅପରାଧ ହୋଇଥିବ । କାରଣ ମୋର ପୂର୍ଣ୍ଣ ବିଶ୍ୱାସ ଯେ, ସ୍ୱାମୀଜୀ କେବେହେଲେ ମୋର ଅନିଷ୍ଟ ବାଞ୍ଛା କରନ୍ତି ନାହିଁ । ସେ ଯାହାକିଛି କରନ୍ତି, ମୋର ମଙ୍ଗଳ ପାଇଁ କରନ୍ତି । ସ୍ୱାମୀଜୀଙ୍କ କାର୍ଯ୍ୟରେ ଦୋଷ ଖୋଜିବା ସେବକର ଧର୍ମ ନୁହେଁ । ମୋର ଅପରାଧ ହୋଇ ନ ଥିଲେ, ସେ ମୋତେ କଦାପି ତାଡ଼ନା କରି ନ ଥାନ୍ତେ; ଯଦି ମୋର ବିନା ଅପରାଧରେ ସେ ମୋତେ ତାଡ଼ନା କରି ଥାଆନ୍ତି, ତାହାହେଲେ ସେଥିରେ ମଧ୍ୟ କୌଣସି ରହସ୍ୟ ଥାଇପାରେ । ସେଥିରେ କଲ୍ୟାଣର ଚିନ୍ତା ନିହିତ ଥାଇପାରେ ।"

ତାହାର ଉତ୍ତରକୁ ଶୁଣି ସ୍ୱାମୀଜୀ କହିଲେ—"ତାହାର ଏହି ଭାବ ଥିବା ଯୋଗୁଁ ମୁଁ ତାକୁ ଅଧିକ ଭଲ ପାଉଥିଲି । ସେ ନିଜର ଅହଂତ୍ୱକୁ ଜଳାଞ୍ଜଳି ଦେଇ ସର୍ବାତ୍ମ-ଭାବରେ ସେବା କରୁ ଅଛି । ପ୍ରତ୍ୟେକଙ୍କର ଅନ୍ତଃକରଣ ତ ଏକ ପ୍ରକାର । ଯେତେ-ବେଳେ ସେ ମୋ ଉପରେ ଏତେ ବିଶ୍ୱାସ ରଖି ପାରୁଛି, ତେବେ ମୁଁ ମୋ ହୃଦୟକୁ

ତ ପଥର ପରି କରି ପାରିବ ନାହିଁ । ମୋର ଏହି କାରଣରୁ ତା' ପ୍ରତି ପୂର୍ଣ୍ଣ ଅନୁରାଗ । ତା' ସକାଶେ କୌଣସି ବସ୍ତୁ ଅଦେୟ ନୁହେଁ । ସେବାଦ୍ୱାରା ସେ ମୋତେ ବଶ କରି ରଖିଅଛି ! ତୁମ୍ଭେମାନେ ମଧ୍ୟ ସେବା କରୁଅଛ; କିନ୍ତୁ ସେବକ ଅଭିମାନରେ ତୁମେ ସେବା କରୁଅଛ । ତୁମ୍ଭେମାନେ ଭାବୁଛ, ଆମ୍ଭେମାନେ ସ୍ୱାମୀଜୀଙ୍କର ପରିଶ୍ରମୀ ସେବକ । ବ୍ୟବହାର ଅନୁସାରେ ତୁମ୍ଭେମାନେ କଥା କହୁଛ; କିନ୍ତୁ ନିଜ ନିଜର ଆତ୍ମସମର୍ପଣ କରି ସେବା କରୁନାହିଁ । ତେଣୁ ତୁମ୍ଭମାନଙ୍କ ପ୍ରତି ମୋର ମଧ୍ୟ ବ୍ୟବହାରିକ ସ୍ନେହ ରହିଛି ।"

ସୂତ କହିଲେ—"ମୁନିଗଣ ! ଏହି କଥାର ସାର ଏହି ଯେ, ବାସ୍ତବ ସେବା ସେହିମାନେ କରନ୍ତି, ଯେଉଁମାନେ ପ୍ରଭୁଙ୍କର ସମସ୍ତ ଚେଷ୍ଟାରେ (କାର୍ଯ୍ୟରେ) କଲ୍ୟାଣ ନିହିତ ଥିବାର ଦେଖିପାରନ୍ତି । ଯେଉଁ ଭୃତ୍ୟର କି ପ୍ରଭୁଙ୍କଠାରେ ପୂର୍ଣ୍ଣ ଶ୍ରଦ୍ଧା ରହିଛି ।" ରାଜା କୁନ୍ତିଭୋଜ ଚିନ୍ତା କଲେ—"ମୋର କନ୍ୟା ପରମ ସୁଶୀଳା । ତାହାର ଧର୍ମରେ ରୁଚି, ସେ ତ କେବେହେଲେ କ୍ରୋଧ କରେନାହିଁ । କଡ଼ା କଥା କହିବା ତ ସେ ଆଦୌ ଜାଣି ନାହିଁ । ତେଣୁ ତାକୁ ମୁଁ ଦୁର୍ବାସାଙ୍କ ସେବାରେ ନିଯୁକ୍ତ କରିବି । ମୁନି ଯେତେ କ୍ରୋଧ କଲେ ବି ସେ କଦାପି କୁଣ୍ଠିତ ହେବେ ନାହିଁ । ଏହିକଥା ଚିନ୍ତାକରି ସେ କୁନ୍ତୀଙ୍କୁ କହିଲେ—"ମା ! ଏବେ ତୋର ସହନଶୀଳତା ତଥା ଧୈର୍ଯ୍ୟର ପରୀକ୍ଷା ଦିନ ଉପସ୍ଥିତ । ଦେଖ୍, ମହାମୁନି ଦୁର୍ବାସା ଅତ୍ୟନ୍ତ କ୍ରୋଧୀ । ଚାରିମାସ ପର୍ଯ୍ୟନ୍ତ ତୁ ତୋର ସମସ୍ତ ଶାରୀରିକ ସୁଖ ଜଳାଞ୍ଜଳି ଦେଇ ତାଙ୍କର ସେବା କରିବୁ ତାଙ୍କର କୌଣସି କାର୍ଯ୍ୟରେ କେବେ ତ୍ରୁଟି ଦେଖିବୁ ନାହିଁ । ସର୍ବାତ୍ମ ଭାବରେ ତାଙ୍କର ଅନୁଗାମିନୀ ହୋଇଯିବୁ । ସେ ଯାହା କହିବେ ତୁ ସଙ୍ଗେ ସଙ୍ଗେ ଅବ୍ୟଗ୍ରଭାବରେ ତାହା କରିବୁ ।"

କୁନ୍ତୀ ହାତ ଯୋଡ଼ି କହିଲା—"ପିତଃ ! ଏହା ମୋର ପରମ ସୌଭାଗ୍ୟ । ମୁଁ ପ୍ରାଣପଣେ ମହର୍ଷିଙ୍କର ସେବା କରିବ ।"

ରାଜା କୁନ୍ତୀର ଶିର ଉପରେ ଆଶୀର୍ବାଦ କରି କହିଲେ—"ମା ! ତୋର କଲ୍ୟାଣ ହେବ ।"

ଏହା କହି ରାଜା ମୁନିଙ୍କ ସେବା କାର୍ଯ୍ୟରେ କୁନ୍ତୀଙ୍କୁ ସମର୍ପଣ କରିଦେଲେ । କୁନ୍ତୀ ମନଯୋଗ ସହକାରେ ମୁନିଙ୍କର ସେବା କରିବାରେ ଲାଗିଲେ । ମୁନି ତ କୁନ୍ତୀଙ୍କର ଧୈର୍ଯ୍ୟ ପରୀକ୍ଷା କରିବା ପାଇଁ ସେଠାରେ ରହିଥିଲେ । ସେ କଥା କଥାକେ ତାର ଭୁଲ୍ ବାଛିବାରେ ଲାଗିଲେ । ଯଦି କେତେବେଳେ ସୁନ୍ଦର ଭୋଜନ ପ୍ରସ୍ତୁତ ହୋଇଛି, ତେବେ ସେ ସେଥିରେ ଦୋଷତ୍ରୁଟି ଦେଖାଇ ତାହା ପରିତ୍ୟାଗ କରୁଥିଲେ । କୁନ୍ତୀ କିଛି ନ

କହି, ଆତୁଥରେ ଭୋଜନ ପ୍ରସ୍ତୁତ କରୁଥିଲେ । ସମସ୍ତ ସମୟରେ ସେ ଦିନରେ ନ ଫେରି ରାତି ଅଧିକୁ ଫେରୁଥିଲେ ଓ ଗରମାଗରମ୍ ଭୋଜନ ମାଗୁଥିଲେ । କୁନ୍ତୀ ଯଥା ସମୟରେ ତାହା ପ୍ରସ୍ତୁତ କରି ଦେଉଥିଲେ । ସାରକଥା ଏହି ଯେ, ମୁନି କୁନ୍ତୀଙ୍କୁ ବହୁ ଉପାୟରେ ପରୀକ୍ଷା କରିବାକୁ ଲାଗିଲେ । କିନ୍ତୁ କୁନ୍ତୀ ଏଥିରେ ଅନ୍ଦୌ ବିରକ୍ତ ବା କ୍ରୋଧ ପ୍ରକାଶ କଲେ ନାହିଁ, ସମସ୍ତ ଧୈର୍ଯ୍ୟର ସହିତ ସହିଲେ । ଶେଷରେ ମୁନି ପ୍ରସନ୍ନ ହୋଇଗଲେ ଓ ତାଙ୍କୁ ବର ମାଗିବାକୁ କହିଲେ । କୁନ୍ତୀ ହାତଯୋଡ଼ି କହିଲେ— "ପ୍ରଭୋ ! ମୋର ତ କୌଣସି ବରର ଆବଶ୍ୟକତା ନାହିଁ । ଆପଣ ଯଦ୍ଦ୍ୱାରା ମୋର କଲ୍ୟାଣ ହେବ ବୋଲି ଜାଣୁଛନ୍ତି, ତାହା ଆପଣଙ୍କ ଖୁସି ଅନୁସାରେ ମୋତେ ପ୍ରଦାନ କରନ୍ତୁ ।"

ମୁନି ଏହାଶୁଣି ଆହୁରି ଅଧିକ ପ୍ରସନ୍ନ ହେଲେ । ସେ ଧ୍ୟାନରେ ଦେଖିଲେ ଯେ, କୁନ୍ତୀଙ୍କର ପତି ସନ୍ତାନୋତ୍ପତ୍ତି କରିବାରେ ଶାପ ବଶତଃ ସମର୍ଥ ହେବେ ନାହିଁ । ତେଣୁ ସେ ଏକ ଦେବହୂତି ବିଦ୍ୟା କୁନ୍ତୀଙ୍କୁ ପ୍ରଦାନ କଲେ । ସେ କୁନ୍ତୀଙ୍କୁ ଏକ ମନ୍ତ୍ର ବତାଇ ଦେଇ କହିଲେ—"ତୋର ଯେତେବେଳେ ଯେଉଁ ଦେବତାଙ୍କୁ ଡାକିବା ଆବଶ୍ୟକ ପଡ଼ିବ, ସେତେବେଳେ ତାଙ୍କ ରୂପକୁ ଧ୍ୟାନ କରି ଏହି ମନ୍ତ୍ରପାଠ କରିବୁ । ଏହାଦ୍ୱାରା ସେହି ଦେବତା ତୋ ସମ୍ମୁଖରେ ଆସି ଉପସ୍ଥିତ ହେବେ ।"

କୁନ୍ତୀ ନମ୍ରତାର ସହିତ ହାତ ଯୋଡ଼ି ଏହି ବିଦ୍ୟା ଗ୍ରହଣ କଲେ । ମୁନି ଇଚ୍ଛାନୁସାରେ ଚାତୁର୍ମାସ୍ୟା ବ୍ରତ ସମାପ୍ତ କରି ସେଠାରୁ ଚାଲିଗଲେ ।

କୁନ୍ତୀ ତ ସେତେବେଳେ କନ୍ୟା ଥିଲେ । ତାଙ୍କର ଅତ୍ୟନ୍ତ କୌତୂହଳ ହେଲା ଯେ, ମନ୍ତ୍ର ପାଠ କରିବାମାତ୍ରେ ଦେବତା କପରି ମୂର୍ତ୍ତିମାନ ହୋଇ ଆସିବେ, ତାହା ଦେଖିବେ । ସେ ଥରେ କୌଣସି ଦେବତାଙ୍କୁ ଡାକି ମନ୍ତ୍ରର ପରୀକ୍ଷା କରିବେ ବୋଲି ଚିନ୍ତା କଲେ ଓ କେଉଁ ରୂପରେ ଦେବତାଙ୍କର ଆବିର୍ଭାବ ହେଉଛି ତାହା ଦେଖିବା ପାଇଁ ଚାହିଁଲେ ।

ଦୈବଯୋଗକୁ ସେତେବେଳେ କୁନ୍ତୀ ପିତାଳୟରେ ଋତୁମତୀ ହୋଇ ଥିଲେ । ସେହି ସମୟରେ ତାଙ୍କ ଶରୀରରେ ଏକ ବିଚିତ୍ରତା ପ୍ରତୀତ ହେବାକୁ ଲାଗିଲା । ଋତୁସ୍ନାନ କରି ସେ ଏକ ସ୍ଥାନକୁ ପରିଷ୍କାର ଭାବରେ ଲିପାପୋଛି କରି ସେହି ମନ୍ତ୍ରର ପରୀକ୍ଷା କରିବାକୁ ବସି ପଡ଼ିଲେ । ସେ ଚିନ୍ତା କଲେ—"କେଉଁ ଦେବତାଙ୍କୁ ଡାକିବି ?"

ସେହି ସମୟରେ ଭଗବାନ ସୂର୍ଯ୍ୟ ପ୍ରାଚୀ ଗଗନକୁ ରକ୍ତ ବର୍ଣ୍ଣରେ ରଞ୍ଜିତ କରି ଉଦୟ ହେଉଥିଲେ । କୁନ୍ତୀ ଚିନ୍ତା କଲେ—"ମୁଁ କାହିଁକି ଏହି ସର୍ବକର୍ମର ସାକ୍ଷୀ ପ୍ରତ୍ୟକ୍ଷ ଦେବ ସବିତା ଦେବତାଙ୍କୁ ଆବାହନ ନ କରିବି ?"

ଆଉ ଏଥିରେ କିଛି ଚିନ୍ତା କରିବାର ନ ଥିଲା । ସେ ସୂର୍ଯ୍ୟ ନାରାୟଣଙ୍କର ଧ୍ୟାନ କରି ଦୁର୍ବାସା ଦେଇଥିବା ମନ୍ତ୍ର ପାଠ କଲେ । ମନ୍ତ୍ର ପଢ଼ିବାକ୍ଷଣି ଭଗବାନ ସୂର୍ଯ୍ୟଦେବ ସଙ୍ଗେ ସଙ୍ଗେ ସେଠାରେ ଆବିର୍ଭାବ ହେଲେ । ତାଙ୍କର ଅସହ୍ୟ ତେଜ ହେତୁ କୁନ୍ତୀଙ୍କ ଚକ୍ଷୁରେ ସମ୍ଭାଳିନେବା ଅସହ୍ୟ ହୋଇ ଉଠିଲା । ଶୁଭ ସ୍ୱରୂପ ଭଗବାନ ସବିତାଙ୍କୁ ସମକ୍ଷରେ ବିଦ୍ୟମାନ ଦେଖି ସେ ଆଶ୍ଚର୍ଯ୍ୟ ହୋଇ କହିବାକୁ ଲାଗିଲେ—"ଭଗବନ୍ ! ବାଲ ଚପଳତାବଶତଃ ମନ୍ତ୍ରର ପରୀକ୍ଷା କରିବା ପାଇଁ କୌତୂହଳ ହୋଇ ମୁଁ ଆପଣଙ୍କର ଆବାହନ କଲି । ମୋର ଆପଣଙ୍କ ନିକଟରେ କୌଣସି ନିବେଦନ କରିବାର ନାହିଁ । ମୋର ଚପଳତା ଜନିତ ଦୋଷ ଆପଣ ଧରନ୍ତୁ ନାହିଁ, ଏଥିପାଇଁ ମୋତେ କ୍ଷମା କରନ୍ତୁ । ଅକାରଣରେ ମୁଁ ଆପଣଙ୍କୁ କଷ୍ଟ ଦେଲି । ଏଥିପାଇଁ ଆପଣ ମୋ ଉପରେ ରାଗ ନ କରି ଏବେ ଆପଣଙ୍କର ଇଚ୍ଛାନୁସାରେ ଆପଣଙ୍କ ଗନ୍ତବ୍ୟ ପଥରେ ଯାଆନ୍ତୁ ।"

ସୂର୍ଯ୍ୟଦେବ କହିଲେ—"ଏହି ମନ୍ତ୍ରର ପ୍ରଭାବ ଏହି ଯେ, ଯେଉଁ ଦେବତାଙ୍କୁ ତୁମେ ଆବାହନ କରିବ, ସେ ଆସି ତୁମର ଗର୍ଭାଧାନ ସଂସ୍କାର କରିବେ । ମୁଁ ତୁମର ଗର୍ଭସ୍ଥାପନ କରିବାକୁ ହିଁ ଆସିଅଛି ।"

କୁନ୍ତୀ ଏ କଥା ଶୁଣି ଦୁଇ କାନରେ ଦୁଇହାତ ଦେଇ ଆଶ୍ଚର୍ଯ୍ୟ, ଭୟ, ଭ୍ରମ, ଲଜ୍ଜା ଓ ଦୀନତା ସ୍ୱରରେ କହିଲେ—"ହେ ଜଗତ୍ପତେ ! ହେ କର୍ମ ସାକ୍ଷିନ ! ଆପଣ ପ୍ରାଣୀମାତ୍ରଙ୍କର ଧର୍ମର ସାକ୍ଷୀ ହୋଇ ଏପରି ଅଧର୍ମ କଥା କିପରି କହୁଛନ୍ତି ? ଭଗବନ୍ ! ମୁଁ ତ କନ୍ୟା, କନ୍ୟାର ଗର୍ଭସ୍ଥାପନ କିପରି ହୋଇ ପାରିବ ?"

ସୂର୍ଯ୍ୟଦେବ କହିଲେ—"ଦେବି ! ମୋର ଦର୍ଶନ ଅମୋଘ, ତାହା କଦାପି ବ୍ୟର୍ଥ ହୋଇ ନ ପାରେ । ସୁନ୍ଦରି ! ତୁମେ କିଛି ଚିନ୍ତା କର ନାହିଁ । ମୁଁ ଗର୍ଭସ୍ଥାପନା ନ କରି ତ ଫେରିଯାଇ ପାରିବି ନାହିଁ । ମୋର ତଥା ଦୁର୍ବାସା ମୁନିଙ୍କ ବିଦ୍ୟାର ଏହାଦ୍ୱାରା ଅପମାନ ହେବ ଓ ତୁମର ମଧ୍ୟ ଅନିଷ୍ଟ ଘଟିବ । ତେଣୁ ମୁଁ ନିଶ୍ଚିତ ଭାବରେ ତୁମର ଗର୍ଭସ୍ଥାପନା କରିବି । କିନ୍ତୁ ମୋ ପ୍ରଭାବରୁ ତୁମର କୁମାରୀତ୍ୱ ନଷ୍ଟ ହେବ ନାହିଁ । ପୁତ୍ର ଜନ୍ମ କରି ତୁମେ କନ୍ୟା ହୋଇ ହିଁ ରହିବ । ତୁମର ଯୋନି ଦୂଷିତ ହେବ ନାହିଁ ।"

କୁମାରୀ କୁନ୍ତୀ ସେତେବେଳେ ବିବଶ ଥିଲେ । ଏତେବଡ଼ ଦେବତାଙ୍କ ସମ୍ମୁଖରେ ସେ କିଛି କହିପାରି ନ ଥିଲେ । ତାଙ୍କର ନିଜ ଉପରେ ଅତ୍ୟନ୍ତ କ୍ରୋଧ ଜାତ ହୋଇଥିଲା । ଲଜ୍ଜା, ଗ୍ଲାନି ଓ ସଙ୍କୋଚ କାରଣରୁ ସେ ନିଜ ଶରୀରକୁ ଶିକୁଳିରେ ବାନ୍ଧିଦେଲା ପରି କରି ଦେଇଥିଲେ । ସୂର୍ଯ୍ୟଦେବ ତାଙ୍କର ନାଭିକୁ ସ୍ପର୍ଶ କଲେ ଓ ତାଙ୍କ

ଗର୍ଭାଧାନ ସଂସ୍କାର କରିଦେଲେ । ତାଙ୍କର ତେଜମୟ ଅମୋଘ ବୀର୍ଯ୍ୟକୁ ସେ କୁନ୍ତୀଙ୍କ ଗର୍ଭରେ ସ୍ଥାପନ କରି ନିଜ ଲୋକକୁ ଚାଲିଗଲେ । କୁନ୍ତୀ ସଙ୍ଗେ ସଙ୍ଗେ ଏକ ପରମ ତେଜସ୍ୱୀ, ଅତ୍ୟନ୍ତ ସୁନ୍ଦର, କବଚ କୁଣ୍ଡଳ ଧାରୀ ଦିବ୍ୟଶୀର୍ଷ ସୂର୍ଯ୍ୟସମ ପରମ ପ୍ରଭାବାନ୍ ଏକ ପୁତ୍ର ଉତ୍ପନ୍ନ କଲେ । ଯେ ପର୍ଯ୍ୟନ୍ତ ସେ ପୁତ୍ରର ମୁଖ ଦର୍ଶନ କରି ନ ଥିଲେ, ସେ ପର୍ଯ୍ୟନ୍ତ ସେ ଗ୍ଲାନି, ଦୁଃଖ, ଘୃଣା ଓ ଆତ୍ମ ନିର୍ବେଦ କାରଣରୁ ସଙ୍କୋଚ ଥିଲେ । ଏବେ ଯେତେବେଳେ ସେ ଏପରି ପୁତ୍ରର ମୁଖ ଦର୍ଶନ କଲେ, ସେତେବେଳେ ତାଙ୍କର ମାତୃ ସ୍ନେହ ଉଚ୍ଛୁଳି ଉଠିଲା । ସେ ବାରମ୍ବାର ପିଲାର ମୁଖରେ ଚୁମ୍ବନ ଦେଲେ । ତାକୁ କୋଳାଗତ କଲେ । ସ୍ତନରୁ ଦୁଗ୍ଧ ପାନ କରାଇଲେ ।

ରାଜମହଲର ଏକ ଅତି ନିଭୃତ ସ୍ଥାନରେ କୁମାରୀ କୁନ୍ତୀ ପୁତ୍ର ପ୍ରସବ କରିଥିଲେ । ସେହି ବିଶାଳ ଭବନରେ ସେ ଥିଲେ ଓ ତାଙ୍କର ଜଣେ ବୃଦ୍ଧା ଧାଈ ଥିଲା । ରାତ୍ରିକାଳରେ କୁନ୍ତୀ ସେହି ସୂର୍ଯ୍ୟ ସୁତଙ୍କୁ ଜନ୍ମ ଦେଇଥିଲେ । ତାଙ୍କ ମନରେ ଅନେକ ଭାବ ଉଦୟ ହେଉଥିଲା । ସେ କେତେବେଳେ ଭାବୁଥିଲେ—"ଏହି ପିଲାକୁ ନେଇ ସେ କୌଣସି ଦୂର ଦେଶକୁ ଚାଲିଯିବେ, ଯେଉଁଠାରେ କି ତାଙ୍କୁ କେହି ଜାଣି ପାରିବେ ନାହିଁ । ସେଠାରେ ସେ ଭିକମାଗି ପେଟ ପୋଷିବେ ଓ ପିଲାକୁ ବଞ୍ଚାଇବେ କିମ୍ବା କୌଣସିଠାରେ ଚାକିରି କରି ପେଟ ପୋଷିବେ ।" ପୁନଶ୍ଚ କେତେବେଳେ ଭାବୁଥିଲେ—"ମୁଁ ତ କେବେହେଲେ ରାଜମହଲ ବାହାରକୁ ପାଦ କାଢ଼ି ନାହିଁ । ପ୍ରାତଃ ହେବାକ୍ଷଣି ପିତା ଚାରିଆଡ଼େ ଦୂତ ପଠାଇ ମୋତେ ଧରି ଆଣିବେ । ସେ ଯଦି ଏ ବିଷୟ ଜାଣି ଯାଆନ୍ତି, ତେବେ ମୋର ମୃତ୍ୟୁ ସୁନିଶ୍ଚିତ । ଏବେ ମୁଁ କ'ଣ କରିବି ? କେଉଁଠିକି ଯିବି ? ହାୟରେ କପାଳ ! ରାଜକନ୍ୟା ହୋଇ ମଧ୍ୟ ଅଛି ମୋର କି କଷ୍ଟ । ଏହିପରି ଚିନ୍ତା କରି କରି ସେ କାନ୍ଦି ପକାନ୍ତି ଓ ପୁନଶ୍ଚ ପିଲାଟିର ମୁଖକୁ ଚାହିଁ ତାକୁ ଗେଲ କରି ପକାନ୍ତି । ଏ କେଡ଼େ ସୁନ୍ଦର ଶିଶୁ । ନିଜ ପିତାଙ୍କ ପରି ଏ ସୁନ୍ଦର । ସଂସାର ଅତ୍ୟନ୍ତ ନିର୍ଦ୍ଦୟ । କିଏ ବିଶ୍ୱାସ କରିବ ଯେ ଏ ଜଗତ୍ପତି ସୂର୍ଯ୍ୟଦେବଙ୍କର ପୁତ୍ର ? ଏବେ ତ ମୋତେ ଏ ପୁତ୍ରର ମୋହ ତ୍ୟାଗ କରିବାକୁ ପଡ଼ିବ । ଏ ଜଗତ୍-ପତିଙ୍କର ପୁତ୍ର ନିଜ ଭାଗ୍ୟ ବଳରୁ ଓ ନିଜର ପ୍ରାରବ୍ଧ ବଳରୁ ଯେଉଁଠାରେ ରହିବ, ସୁଖରେ ରହିବ । ଏହି ବିଚାରଧାରାରେ ମାତା ଶୀଘ୍ର ଧାଇଁ ପଳାଇ ଯିବାକୁ ବାହାରିଲେ ।"

ବର୍ଷା କାଳର ଅର୍ଦ୍ଧରାତ୍ର, ଚତୁର୍ଦ୍ଦିଗ ନିସ୍ତବ୍ଧ ନିକାଞ୍ଚନ ଘନଘୋର ଅନ୍ଧକାର ତା' ସାଙ୍ଗକୁ ଟପ ଟପ ହୋଇ ମେଘ ବର୍ଷୁଥାଏ । ଆକାଶରେ ବିଜୁଳିର ଝଲକ ଓ ଭୀମଭୈରବ ରଡ଼ିରେ ମେଘର ଗର୍ଜନ । ପୂର୍ବରୁ ଧାଈ ଏକ ସୁନ୍ଦର ପେଟିକା ତିଆରି କରାଇ ରଖିଥିଲା । ସେ ପେଟିକାଟି ଏପରି କାରିଗରୀ କୌଶଳରେ

ନିର୍ମିତ ହୋଇଥିଲା ଯେ, ତାକୁ ଅଗାଧ ଜଳରେ ଭସାଇ ଦେଲେ ମଧ୍ୟ ତାହା କଦାପି ବୁଡ଼ି ପାରିବ ନାହିଁ । ତହିଁରେ ବାୟୁ ଯାତାୟତ କରିବାର ସୁବିଧା ମଧ୍ୟ ଥିଲା ଓ ତନ୍ମଧ୍ୟରେ ଖୁବ୍ ସୁନ୍ଦର ମଖମଲ ଗଦି ବିଛା ହୋଇଥିଲା । କେତେକ ଫୁଲ ପତ୍ରରେ ସଜା ହୋଇଥିଲା । ନଖଲଗା ମଧ୍ୟ ରଖାଯାଇ ଥିଲା । ଧାଈ ତା' ଉପରେ କୁଙ୍କୁମର ଛୋପା ଲଗାଇ ଥିଲା । ସୁନ୍ଦର ଭାବରେ ସେ ତା' ଉପରେ ହରିଦ୍ରା ଲେପନ କରିଥିଲା । ତହିଁରେ ଦୂବ, ଅକ୍ଷତ, ଗୁଆ, ଦଧି ଆଦି ମଙ୍ଗଳ ଦ୍ରବ୍ୟ ପକାଇଥିଲା । ତାହାକୁ ଉଠାଇ ଧରି ଧାଈ ରାଜକୁମାରୀଙ୍କୁ କହିଲା—"ଝିଅ ! ଚାଲ ଏଥର ବାହାରିଯିବା, କୌଣସି ଭୟର କାରଣ ନାହିଁ ।"

ନିଜ ହୃଦୟର ସନ୍ତାନକୁ ହୃଦୟରେ ଚାପି ରଖି କଳାଶାଢ଼ୀଟିଏ ପିନ୍ଧି କଳାରଙ୍ଗର ଓଢ଼ଣୀ ମୁଣ୍ଡରେ ପକାଇ ଅତି ଦୁଃଖରେ କାନ୍ଦି କାନ୍ଦି କୁନ୍ତୀ ବୃଦ୍ଧା ଧାଈର ପଛେ ପଛେ ଚୁପ୍ ହୋଇ ମହଲର ପଛ ଦ୍ୱାର ବାଟେ ଚାଲିଲେ । ସଂସାର ପ୍ରଗାଢ଼ ନିଦ୍ରାରେ ନିଦ୍ରିତ, କେବଳ ଦୁଇଜଣ ହିଁ ଜାଗ୍ରତ, ଜଣେ କୁନ୍ତୀ ଓ ଅନ୍ୟ ଜଣକ ତାଙ୍କର ବୃଦ୍ଧା ଧାଈ । କୁନ୍ତୀଙ୍କ ପୁତ୍ର ତାଙ୍କ କୋଳରେ ଗୁଡ଼ିକୁ ଆଉଜି ଘୁମାଇ ପଡ଼ିଥିଲା । ସେ କାଳରେ ରାଜମହଲର କିଛି ଦୂରରେ ଏକ କ୍ଷୁଦ୍ର ନଦୀ (ବର୍ଷାଦିନେ କେବଳ ପାଣି ରହୁଥିବା ନଦୀ) ଥିଲା । ଆଜିକାଲି କିନ୍ତୁ ତାହା ଚିରସ୍ରୋତା ହୋଇ ପ୍ରବଳ ବେଗରେ ବହୁଅଛି । ଏହା ଚର୍ମଣ୍ୱତୀ (ଚମ୍ବଲ)ର ସହାୟକ ନଦୀ ଓ କିଛିଦୂର ବହିଯାଇ ତାହା ଚର୍ମଣ୍ୱତୀ ସହିତ ମିଳିତ ହୋଇଛି । କୁନ୍ତୀ ନିଜର ଧାଈ ସହିତ ସେହି ନଦୀତଟରେ ଯାଇ ପହଞ୍ଚିଲେ । ନଦୀର ବେଗକୁ ଦେଖି ତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସେ କାନ୍ଦି କାନ୍ଦି ଶିଶୁକୁ ସେଠାରେ ସ୍ତନ୍ୟପାନ କରାଇଲେ ଓ ବିକଳ ହୋଇ କହିଲେ—"ପୁତ୍ର ! ତୁ ଏତେବଡ଼ ଦେବତାଙ୍କର ପୁତ୍ର ହୋଇ ଏକ ଦୁଃଖିନୀ ଗର୍ଭରୁ କାହିଁକି ଉତ୍ପନ୍ନ ହେଉଥିଲୁ ? ହାୟରେ କପାଳ ! ମୋ ଭଳି ଏପରି କେଉଁ ମାତା ଥାଇପାରେ, ଯେ କି ନିଜର ପ୍ରାଣଠାରୁ ଅଧିକ ପ୍ରିୟ, ହୃଦୟର ସନ୍ତାନକୁ ନିଦୟ ହୋଇ ଅଗାଧ ଜଳରେ ଅସହାୟ ଭାବରେ ଭସାଇ ଦେବ । ବତ୍ସ ! ଯାଆ, କୌଣସି ଭାଗ୍ୟବତୀ ରମଣୀ ଗର୍ଭାଶୟରେ ଆଶ୍ରୟ ନେ । ସେହି ସ୍ତ୍ରୀ ଧନ୍ୟ ହେବ, ଯେ ତୋତେ ପୁତ୍ର ସ୍ୱୀକାର କରି ତୋର ଲାଳନ ପାଳନ କରିବ । ମୋର ଧନରେ ! ସମସ୍ତ ପ୍ରାଣୀଙ୍କୁ ଆଲୋକ ବିତରଣ କରୁଥିବା ତୋର ପିତା ଭଗବାନ୍ ସବିତା ହିଁ ତୋତେ ରକ୍ଷା କରନ୍ତୁ । ମୁଁ ତୋତେ ବରୁଣଦେବଙ୍କ ହାତରେ ଚିରଦିନପାଇଁ ସମର୍ପଣ କରି ଦେଉଛି । ଜୀବନରେ ପୁଣି ତୋ ସହିତ ମୋର ସାକ୍ଷାତ ହେବ କି ନାହିଁ, ତାହା ଭଗବାନଙ୍କୁ ଜଣା !" ଏହିପରି କହି କାନ୍ଦି କାନ୍ଦି ମାତା ସେହି ପେଟିକାରେ ପୁତ୍ରକୁ ଶୁଆଇ ନଦୀ ସ୍ରୋତରେ ଭସାଇ ଦେଲେ । କୁନ୍ତୀଙ୍କର ଶୋକାଶ୍ରୁ ଜଳରେ ଏକାକାର ହୋଇ ସେହି ନଦୀସ୍ରୋତ ପେଟିକାକୁ ନଚାଇ ନଚାଇ ଆଗକୁ ଆଗକୁ ଆଗେଇ ଚାଲିଲା ।

ଯେପର୍ଯ୍ୟନ୍ତ ସେହି ପେଟିକା ଦୃଷ୍ଟିଗୋଚର ହେଉଥିଲା, ସେ ପର୍ଯ୍ୟନ୍ତ କୁନ୍ତୀ ସେଠାରେ ଠିଆ ହୋଇ କ୍ରନ୍ଦନ କରୁଥିଲେ ଓ ଯେତେବେଳେ ତାହା ଦୃଷ୍ଟିର ଅନ୍ତରାଳକୁ ଚାଲିଗଲା ସେତେବେଳେ କଟା ହୋଇଥିବା ଲତା ଭଳି ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ବୃଦ୍ଧୀ ଧାଈ ନିଜର କମ୍ପିତ ହସ୍ତରେ ତାଙ୍କୁ ତଳୁ ଉଠାଇ ଧୈର୍ଯ୍ୟ ଧାରଣ କରିବାକୁ କହିଲା ଓ ବାରମ୍ବାର ସାନ୍ତ୍ୱନା ଦେଇ କହିଲା—"ଝିଅ ! ଏବେ ତୁ ଶୋକ କରି କିଛି ଲାଭ ହେବନାହିଁ । ତୋର ପୁତ୍ର ସାମାନ୍ୟ ନୁହେଁ । ସେ ହେଉଛି ସବିତାଙ୍କ ସୁତ । ତା'ର ପ୍ରାରବ୍ଧ ହିଁ ତାକୁ ସର୍ବଦା ରକ୍ଷା କରିବ ।" ଏହି ପ୍ରକାର ବୋଧ ଶୋଧ କରାଇ ଧାଈ କୁନ୍ତୀଙ୍କୁ ମହଲକୁ ନେଇ ଆସିଲା । ଏ ଘଟଣାକୁ ଅନ୍ୟ କେହି ଜାଣିଲେ ନାହିଁ ।

ଏଣେ ଯେଉଁ ମଞ୍ଜୁଷାରେ କୁନ୍ତୀପୁତ୍ର କର୍ଣ୍ଣ ବସି 'ଅଶ୍ୱ' ନାମକ ଶ୍ରେଷ୍ଠ ନଦୀରେ ଭାସି ଯାଉଥିଲେ, ସେହି ମଞ୍ଜୁଷାକୁ ସେହି ନଦୀ ଚର୍ମଣବତୀ ନଦୀକୁ ନେଇ ଆସିଲା । ଅଶ୍ୱନଦୀ ସେହି ମଞ୍ଜୁଷାକୁ ଚର୍ମଣବତୀକୁ ସମର୍ପଣ କରିଦେଲା । ଏବେ ଚର୍ମଣବତୀ ନଦୀ ତାକୁ ବହନ କରି ନେବାରେ ଲାଗିଲା । ଚର୍ମଣବତୀ ନଦୀ (ଇଟାଓ୍ୱା ନିକଟରେ) ଯମୁନା ନଦୀ ସହିତ ମିଳିତ ହୋଇଛି । ତେଣୁ ସେ ଆଣି ସେହି ମଞ୍ଜୁଷାକୁ ଯମୁନାଙ୍କୁ ସମର୍ପଣ କରିଦେଲା । ଏବେ ସେହି ଶିଶୁ ପୁତ୍ର ପେଟୀରେ ଶୋଇ ଯମୁନା ନଦୀରେ ଭାସି ଭାସି ଚାଲିଲେ । ଯମୁନା ତୀର୍ଥରାଜ ପ୍ରୟାଗକୁ ଆସି ଗଙ୍ଗାଙ୍କ ସହିତ ମିଳିତ ହୋଇଛନ୍ତି । ତେଣୁ ଯମୁନା ସେହି ପେଟୀ (ମଞ୍ଜୁଷା)କୁ ଆଣି ଗଙ୍ଗାଙ୍କୁ ସମର୍ପଣ କରି ଦେଲେ । ଗଙ୍ଗା ତାହା ବହନ କରି ନେଇ ଅଙ୍ଗ ଦେଶର ରାଜଧାନୀ ଚମ୍ପାପୁରୀ (ଚମ୍ପାରଣ) ନିକଟରେ ପହଞ୍ଚାଇଲେ । ସେଠାରେ ସୂତ୍ରବଂଶୀ ଅଧିରଥ ସ୍ନାନ କରୁଥିଲେ । ସେ ପୁତ୍ରହୀନ ଥିଲେ । ସେ ଲୋକମାନଙ୍କ ଦ୍ୱାରା ସେହି ମଞ୍ଜୁଷାକୁ ଜଳରୁ ଉଠାଇ ଆଣିଲେ । ଏହିରେ ଅତ୍ୟନ୍ତ ସୁନ୍ଦର ଶିଶୁଟିଏ ଥିବାର ଦେଖିବାକ୍ଷଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସଙ୍ଗେ ସଙ୍ଗେ ସେ ତାକୁ ନିଜର ପୁତ୍ର ରୂପେ ଗ୍ରହଣ କରି ନେଲେ ଓ ନିଜର ପତ୍ନୀ ରାଧାଙ୍କୁ ତାକୁ ନେଇ ପ୍ରଦାନ କଲେ । ରାଧାଙ୍କର ଶୂନ୍ୟ କୋଳ ପୂର୍ଣ୍ଣ ହୋଇଗଲା । କର୍ଣ୍ଣଙ୍କୁ କୌନ୍ତେୟ କୁହା ନ ଯାଇ ରାଧେୟ ବୋଲି କୁହାଗଲା । ଭାଗ୍ୟର ବିଡ଼ମ୍ବନା ଦେଖନ୍ତୁ ନା ! ଦେବପୁତ୍ର ହୋଇ ମଧ୍ୟ ସେ ଦୁର୍ଭାଗ୍ୟ-ବଶତଃ ସୂତପୁତ୍ର ରୂପେ ପରିଚିତ ହେଲେ ଓ ସେହି କାରଣରୁ ତାଙ୍କୁ କଥା କଥାକେ ଅପମାନିତ ହେବାକୁ ପଡ଼ୁଥିଲା । ଏତେ ବଳୀ ଶୂର-ବୀର, ଦାନୀ, ତେଜସ୍ୱୀ, ତପସ୍ୱୀ ହୋଇ ମଧ୍ୟ ଭାଗ୍ୟ ତାଙ୍କର ଏପରି ପ୍ରତିକୂଳ ଥିଲା । ସେ ଭଗବାନଙ୍କର ସମ୍ବନ୍ଧୀୟ ପିଉସୀଙ୍କର ପୁତ୍ର ଥିଲେ ଓ ଅର୍ଜୁନଙ୍କର ସହୋଦର ମାତାଙ୍କ ଉଦରରୁ ଜାତ ହୋଇ ଥିଲେ । ଭାଗ୍ୟ ଚକ୍ରରେ ପଡ଼ି ପୁନଶ୍ଚ ଏ ଉଭୟେ ଉଭୟଙ୍କର ଶତ୍ରୁ ହୋଇଗଲେ ଓ

ଉତ୍ତପ୍ତେ ଯୁଦ୍ଧରେ ତାଙ୍କୁ ଅନ୍ୟାୟରେ ମାରଦେଲେ । ଭଗବାନ ତ ଅନ୍ୟାୟ କରନ୍ତି ନାହିଁ, ତେବେ ସେ ତାଙ୍କୁ ଅନ୍ୟାୟରେ କାହିଁକି ମାରିଲେ, ଏହା ତ ଅନ୍ୟ ଏକ କଥା । ଅବତାର ହୋଇ ତ ସେ ସବୁ କିଛି କରନ୍ତି । ଖେଳରେ ତ ମାର୍-ଧର୍, ଗାଳି ଗୁଲଜ ସବୁ କିଛି ହୋଇଥାଏ । ଏହା ଆହୁରି ଏକ କଥା ଯେ, ପାଠକଙ୍କ ମନ ଉପରେ ଏହି ଘଟଣାର କୌଣସି ପ୍ରଭାବ ପଡ଼େ ନାହିଁ । ଖେଳ କଥାରେ ସତ୍ୟତା ନାହିଁ । ନାଟକ ସମାପ୍ତ ହେବାକ୍ଷଣି, ସେ ସବୁ ବିଷୟ ବସ୍ତୁର ମଧ୍ୟ ସମାପ୍ତି ଘଟିଥାଏ ।"

ସୂତ କହୁ ଅଛନ୍ତି—"ହଁ, ତେବେ ମୁନିଗଣ ! ମୁଁ ତ ଆଗେଇ ଯାଉଛି । ମୁଁ ଆପଣମାନଙ୍କୁ ଭଗବାନଙ୍କର ପିଉସୀମାନଙ୍କ ବଂଶ ବିଷୟରେ କହୁଥିଲି ନା ? ମୁଁ ବସୁଦେବଙ୍କର ପାଞ୍ଚ ଭଉଣୀଙ୍କ କଥା କହୁଥିଲି । ସେହି ପାଞ୍ଚଜଣଙ୍କ ମଧ୍ୟରେ ପୃଥା ସବୁଠାରୁ ବଡ଼ ଥିଲେ । ତାଙ୍କୁ ବସୁଦେବଙ୍କର ପିତା ମହାରାଜ ଶୂର ନିଜର ପିଉସୀ ପୁଅ ଭାଇ କୁନ୍ତୀଭୋଜଙ୍କୁ ପ୍ରଦାନ କରିଥିଲେ । ତାଙ୍କର କନ୍ୟାବସ୍ଥାରେ ତାଙ୍କ ଉଦରରୁ ସୂର୍ଯ୍ୟପୁତ୍ର କର୍ଣ୍ଣ ଜନ୍ମ ହୋଇଥିଲେ । ମହାରାଜ ପରୀକ୍ଷିତଙ୍କର ଅଣ ଅଜା ରାଜରାଜେଶ୍ୱର ପାଣ୍ଡୁଙ୍କ ସହିତ କୁନ୍ତୀଙ୍କର ବିବାହ ହୋଇଥିଲା ଓ ତାଙ୍କଠାରୁ ଯୁଧିଷ୍ଠିର, ଭୀମ, ଅର୍ଜୁନ ଉତ୍ପନ୍ନ ହୋଇଥିଲେ । ଏବେ ଆପଣମାନେ ପୃଥାଙ୍କ ସାନ ଭଉଣୀଙ୍କ ବଂଶ ସମ୍ବନ୍ଧରେ ଅତି ସଂକ୍ଷେପରେ କହୁଛି ଶୁଣନ୍ତୁ ।"

ପୃଥାଙ୍କ ସାନ ଭଉଣୀ, ଯେ କି ଶ୍ରୁତଦେବା ନାମରେ ଅଭିହିତ । ତାଙ୍କର ବିବାହ କରୁଷ-ନରେଶ ବୃଦ୍ଧଶର୍ମାଙ୍କ ସହିତ ହୋଇଥିଲା ଓ ତାଙ୍କଠାରୁ ଦନ୍ତବକ୍ର ଜନ୍ମଗ୍ରହଣ କରିଥିଲେ । ସେ ପୂର୍ବ ଜନ୍ମରେ ଦିତି-ପୁତ୍ର ହିରଣ୍ୟାକ୍ଷ ଥିଲେ । ଏବେ ସେ ଭଗବାନଙ୍କର ପିଉସୀ ପୁଅ ଭାଇ ହୋଇ ଜନ୍ମ ଗ୍ରହଣ କରିଥିଲେ; କିନ୍ତୁ ଭଗବାନଙ୍କ ପାଖେ ତ କୌଣସି ଘର ଅପଟାର ପ୍ରଶ୍ନ ନାହିଁ । ତାଙ୍କୁ ପିଉସୀ ପୁଅ ଭାଇ ଜାଣି ସୁଦ୍ଧା ଭଗବାନ କ୍ଷମା କରି ନ ଥିଲେ । ସେ ତାଙ୍କୁ ମାରି ପୁନଶ୍ଚ ବୈକୁଣ୍ଠକୁ ପଠାଇ ଦେଇଥିଲେ ।

ଭଗବାନଙ୍କର ତୃତୀୟ ପିଉସୀ ଶ୍ରୁତକୀର୍ତ୍ତି କୈକୟ ନରେଶ ଧୃଷ୍ଟକେତୁଙ୍କୁ ବିବାହ କରିଥିଲେ । ତାଙ୍କର ପାଞ୍ଚ ପୁତ୍ର ହୋଇଥିଲେ । ସେମାନଙ୍କ ମଧ୍ୟରେ ସନ୍ତର୍ଦ୍ଦନ ଜ୍ୟେଷ୍ଠ ଥିଲେ । ଏମାନଙ୍କୁ କୈକୟ ରାଜକୁମାର ବୋଲି କୁହାଯାଉ ଥିଲା ।

ଚତୁର୍ଥ ପିଉସୀ ରାଜାଧିଦେବୀଙ୍କର ବିବାହ ଅବନ୍ତୀ ନରେଶ ମହାରାଜ ଜୟସେନଙ୍କ ସହିତ ହୋଇଥିଲା । ତାଙ୍କଠାରୁ ବିନ୍ଦ ଓ ଅନୁବିନ୍ଦ ନାମକ ଦୁଇପୁତ୍ର ଜନ୍ମ ହୋଇଥିଲେ । ଏ ଦୁହେଁ ମହାଭାରତ ଯୁଦ୍ଧରେ କାମରେ ଆସିଥିଲେ । ତାଙ୍କର ଏକ କନ୍ୟା ବି ଥିଲା । ତା ନାମ ଥିଲା ମିତ୍ରବିନ୍ଦା । ତା' ସହିତ ଭଗବାନ ନିଜେ ବିବାହ

କରିଥିଲେ । ଦ୍ୱାରକାକୁ ଯାଇ ସେ ଦାକ୍ଷିଣାତ୍ୟ ପଦ୍ଧତି ଅନୁସରଣ କରିଥିଲେ । ତଥାପି ସେ ପିଉସୀ ଝିଅ ଭଉଣୀକୁ ନିଜର ସ୍ତ୍ରୀ କରି ନେଇଥିଲେ ।

ଭଗବାନଙ୍କର ପଞ୍ଚମ ପିଉସୀର ନାମ ଥିଲା ଶ୍ରୁତଶ୍ରବା । ସେ ଚେଦୀ ଦେଶର ରାଜା ଦମଘୋଷଙ୍କୁ ବିବାହ କରିଥିଲେ ଓ ତାଙ୍କଠାରୁ ଶିଶୁପାଳ ନାମକ ପୁତ୍ର ଜନ୍ମ ହୋଇଥିଲା; ଯେ କି ପୂର୍ବ ଜନ୍ମରେ ଦୈତ୍ୟପୁତ୍ର ହିରଣ୍ୟକଶିପୁ ଥିଲା । ସେ ବି ଏବେ ଭଗବାନଙ୍କର ପିଉସୀ ପୁଅ ଭାଇ ହୋଇ ଜନ୍ମ ହୋଇଥିଲା । ଭଗବାନ ତା'ର ଭାବୀ ସ୍ତ୍ରୀକୁ ବଳପୂର୍ବକ ହରଣ କରି ନିଜର ସ୍ତ୍ରୀ କରି ନେଇଥିଲେ ଓ ତା' ଶିରକୁ ଧର୍ମରାଜଙ୍କ ରାଜସୂୟ ଯଜ୍ଞରେ ହଠାତ୍ କାଟି ପୃଥକ୍ କରି ଦେଇଥିଲେ । ଏହି ପ୍ରସଙ୍ଗ ଆଗକୁ ଶ୍ରୀକୃଷ୍ଣ ଲୀଳା ପ୍ରସଙ୍ଗରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି ।

ସୂତ କହିଲେ—"ମୁନିଗଣ ! ମୁଁ ସଂକ୍ଷେପରେ ଭଗବାନଙ୍କ ପିଉସୀଙ୍କ ବଂଶ ଏଠାରେ ବର୍ଣ୍ଣନା କଲି । ଏବେ ଆପଣମାନେ ଭଗବାନଙ୍କ କକା, ମଉସା ଆଦିଙ୍କର ନିଜ ଭାଇମାନଙ୍କର କଥା ଶୁଣନ୍ତୁ ।"

## ଛପ୍‌ପୟ

ଧରି ମଞ୍ଜୁଷା ମାଁହି ନଦୀମହିଁ ବସ୍ର ବହାୟୋ ।
ଚମ୍ବଲ ଯମୁନା ଗଙ୍ଗ ବହତ ଚମ୍ପାରନ ଆୟୋ ।
ଅଧିରଥ ପକରେଂୟା ତୁରତ ମୁଦିତ ହ୍ୱୈ ପୁତ୍ର ବନାୟୋ ।
ରାଧାକୁଁ ଦୈ ଦୟୋ, କର୍ଣ୍ଣ ରାଧେୟ କହାୟୋ ।
ପୃଥା ବିବାହୀ ପାଣ୍ଡୁକୁଁ, ପାଣ୍ଡବ ଜାକେ ଭୟେ ସୁତ ।
ଶ୍ରୁତଦେବା କେ ଭୟୋ ଖଲ, ଦନ୍ତବକ୍ର ସୁତ ପାପଯୁତ ।



# ଶୂରସୁତଙ୍କର ବଂଶଧର

ଯଦା ଯଦେହ ଧର୍ମସ୍ୟ କ୍ଷୟୋ ବୃଦ୍ଧିଶ୍ଚ ପାପ୍ମନଃ ।
ତଦା ତୁ ଭଗବାନୀଶ ଆତ୍ମାନଂ ସୃଜତେ ହରିଃ ।

(ଶ୍ରୀ ଭା ୯ ସ୍କ, ୨୪ ଅ, ୫୬ ଶ୍ଳୋ)

## ଛପ୍ପୟ

କେକୟ କୁଁ ଶ୍ରୁତକୀର୍ତ୍ତି ବିବାହୀ ବୂଆ ହର୍ଷ କୀ ।
ଶ୍ରୈଥୀ ବୂଆ ଭଇ ସୁଜନୀ ଅବନ୍ତୀଶ କୀ ।।
ଶ୍ରୁତଶ୍ରବା ନେ ଚେଦିରାଜ ଶିଶୁପାଲହୁ ଜାୟୋ ।
ମାରିକେ ତେହିଂ କୃଷ୍ଣଚନ୍ଦ୍ର ବୈକୁଣ୍ଠ ପଠାୟୋ ।।
ନୌ ଶୂର ଭଗବାନ କେ, କଛୁ ମୌସିନକେ ପତ ଭୟେ ।
କଛୁ ଇତ-ଉତ ତେହିଂ ବହ ଲେ, ବେଟା-ବାଟେର ବନ ଗୟେ ।

ଶ୍ରୀକୃଷ୍ଣଙ୍କର ବଂଶୀ ଯେଉଁ ବାଂଶରେ ତିଆରି ହୋଇଥିଲା, ସେହି ବାଂଶର ବଂଶ ବଂଶପୂରେ ସେ ନିଜକୁ ଅତ୍ୟନ୍ତ ଭାଗ୍ୟବାନ ବୋଲି ମନେ କରୁଥିଲେ । କାରଣ ତାଙ୍କ ବଂଶରେ ଉତ୍ପନ୍ନ କୌଣସି ବାଂଶର କନ୍ୟା ବଂଶୀର ସମ୍ବନ୍ଧ ଭଗବାନ ବାସୁଦେବଙ୍କ ଅଧର ସହିତ ହୋଇଗଲା । ଯେତେବେଳେ ଜଡ଼ ବାଂଶରେ ବି ନିଜର ବଂଶଜଙ୍କର ଭଗବାନଙ୍କ ସମ୍ବନ୍ଧରୁ ପୁଲକ, ରୋମାଞ୍ଚ ଆଦି ସାତ୍ତ୍ୱିକଭାବ ଜନ୍ମୁଥିଲା, ସେତେବେଳେ ଯେ ଜଡ଼ ନୁହେଁ ଅର୍ଥାତ୍ ଚେତନ ଓ ଯାହାଙ୍କର ବଂଶରେ ସାକ୍ଷାତ୍ ବନମାଳୀ ଜନ୍ମ ହୋଇଛନ୍ତି, ସେ କ୍ଷେତ୍ରରେ ତାଙ୍କର ପ୍ରସନ୍ନତାର ସମ୍ବନ୍ଧରେ ତ କିଛି କୁହାଯାଇ ନ ପାରେ । ସେ କୁଳର କୁଳ-ପାବନ ହୋଇଯାଏ । ଯେଉଁ ବଂଶ ଜାତ (ବଂଶର) ସମସ୍ତ ବ୍ୟକ୍ତି ଧନ୍ୟମାନ୍ ଓ କୀର୍ତ୍ତିମାନ୍ ହୋଇ ଯାଆନ୍ତି ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ଏକ କଥା କହୁଅଛି;— ଜଣେ ପଣ୍ଡିତ ଥିଲେ । ତାଙ୍କର ଏକ ସଦ୍‌ଗୁଣସମ୍ପନ୍ନା କନ୍ୟା ଥିଲା । ପିତା ତାକୁ ଅନେକ ଉପଦେଶ ଦେଉଥିଲେ । ଯେଉଁ ଉପଦେଶଗୁଡ଼ିକ ଭଗବତ୍ ସେବା ସମ୍ବନ୍ଧୀୟ ହୋଇଥାଏ, ତାହାକୁ ତ ସେ ଖୁବ୍ ଧ୍ୟାନ ଦେଇ ଶୁଣନ୍ତି । ଯାହା ସଂସାରୀମାନଙ୍କ ସମ୍ବନ୍ଧୀୟ ତାହାକୁ ସେ ଟାଳଟୁଳ କରି ଦିଅନ୍ତି । ପଣ୍ଡିତ ଜଣେ ଯୁବକଙ୍କ ସହିତ ତାଙ୍କର ବିବାହ କରିଦେଲେ । ବିଦାୟ କାଳରେ ଅଳିଅଳି କନ୍ୟା ପିତାଙ୍କ ନିକଟକୁ ଆସି ବସି ପଡ଼ିଲା । ପିତା ତାକୁ ଉପଦେଶ ଦେବାକୁ ଲାଗିଲେ—"ଦେଖ ଝିଅ ! ପତିଙ୍କୁ ତୁ ପରମେଶ୍ୱର ଜ୍ଞାନ କରି ତାଙ୍କର ସେବା କରିବୁ, ଶାଶୁ ଶ୍ୱଶୁରଙ୍କୁ ଆଦର କରିବୁ, ଜାଆ ନଣନ୍ଦଙ୍କ ସହିତ ମିଳିମିଶି ଚଳିବୁ, ଦେବର ଦେଢ଼ଶୂରଙ୍କ ଖାଦ୍ୟପେୟ ଓ ନିଜର ପତିଙ୍କ ଖାଦ୍ୟପେୟରେ ପାତର ଅନ୍ତର ଭାବ (ଭେଦ ଭାବ) ରଖିବୁ ନାହିଁ । ଯେଉଁ ଦେବର କିଛି କାମ କରୁ ନ ଥିବ ତାଙ୍କୁ କେବେହେଲେ କଡ଼ା ବଚନ କହିବୁ ନାହିଁ । ଶାଶୂ, ନଣନ୍ଦଙ୍କ କଥାକୁ ଧୈର୍ଯ୍ୟ ସହକାରେ ଶୁଣିବୁ ଓ ବୟସ୍କା ବୃଦ୍ଧାମାନଙ୍କୁ ଦେଖିଲେ ଓଢ଼ଣା ପକାଇବୁ ।" ଏହିପରି ବହୁତ କଥା ସେ ତାକୁ କହିବାରେ ଲାଗିଲେ । ଶେଷରେ ସେ ପଚାରିଲେ—"ଝିଅ ! ତୋ ମୁଣ୍ଡରେ କିଛି ପଶିଲା ?"

ଝିଅଟି ସରଳ ଓ ନମ୍ରତାର ସହିତ କହିଲା—"ହଁ ପିତା ! ମୁଁ ସେହି କଥା ଭାବୁଛି ।"

ପିତା ଉଲ୍ଲାସର ସହିତ ପଚାରିଲେ—"କ'ଣ ତେବେ ଭାବୁଛୁ କହିଲୁ ?"

ଝିଅଟି କହିଲା—ପିତା ! "ଆପଣ ଯେତେବେଳୁ କହିବାକୁ ଆରମ୍ଭ କଲେଣି, ସେତେବେଳୁ ଏହି ପିମ୍ପୁଡ଼ି ଗାତରୁ ଏକ ଲକ୍ଷ ପଚିଶ ହଜାର ପାଞ୍ଚଶହ ପଚିଶ ପିମ୍ପୁଡ଼ି ବାହାରିଲେଣି ।"

ପିତା ଏହା ଶୁଣି ମୁଣ୍ଡରେ ହାତ ଦେଇ କହିଲେ—"ହାୟରେ ଭାଗ୍ୟ ! ମୋର ଉପଦେଶକୁ ଏ ଏହି ପ୍ରକାର ଶୁଣୁଥିଲା । ମୋ କଥା ଆଡ଼କୁ ଧ୍ୟାନ ନ ଦେଇ ଝିଅ ମୋର ପିମ୍ପୁଡ଼ି ଗଣିବାରେ ଲାଗିଥିଲା ।" ସୂତ କହିଲେ—"ହେ ମହାରାଜ ! ମୋତେ ମଧ୍ୟ ଏପରି ପ୍ରତୀତ ହେଉଛି ଯେ, ଯେତେବେଳେ ମୁଁ ଭକ୍ତ ଓ ଭଗବାନଙ୍କର କୌଣସି କଥା କହୁଅଛି, ସେତେବେଳେ ତ ଆପଣ ଅତ୍ୟନ୍ତ ମନଯୋଗ ସହକାରେ ଧ୍ୟାନ ପୂର୍ବକ ଶୁଣୁ ଅଛନ୍ତି; କିନ୍ତୁ ଯେତେବେଳେ ମୁଁ ବଂଶାବଳୀ ବିଷୟରେ କହୁଛି, ସେତେବେଳେ ଆପଣମାନେ ଅନ୍ୟମନସ୍କ ଭାବରେ ତାହା ଶୁଣୁଛନ୍ତି ଓ ମାଳା ଗଡ଼ାଉଛନ୍ତି ।"

ଶୌନକ କହିଲେ—"ହେ ସୂତ ! ଆପଣ ଏହା କିପରି କହୁଛନ୍ତି ? ଆମ୍ଭେମାନେ ତ ଆପଣଙ୍କ କଥା ଖୁବ ଧ୍ୟାନ ଦେଇ ଶୁଣୁଅଛୁ ।"

ଏହା ଶୁଣି ସୂତ କହିଲେ—"ତେବେ ଠିକ୍ ଅଛି ମହାରାଜ ! ଯଦି ଆପଣ ମୋ କଥାକୁ ଧ୍ୟାନ ଦେଇ ଶୁଣୁଛନ୍ତି, ତେବେ କହନ୍ତୁ ଦେଖି, ଭଗବାନଙ୍କର କେତେ ମାଉସୀ ଥିଲେ ଓ ସେମାନଙ୍କର ନାମ ସବୁ କ'ଣ ?

ଏହା ଶୁଣି ଶୌନକ ହସି ହସି କହିଲେ—"ହେ ସୂତ ! ତେବେ ସତ କଥା ଶୁଣ । ଆମେ ତ ଭଗବାନଙ୍କ ମାଉସୀଠାରୁ କ୍ଷୀର ଖାଇନାହୁଁ କି ତାଙ୍କ ଷଠୀଘର ଫେଣା, ଲଡ଼ୁ ବା ମାଲପୁଆ ଖାଇ ଉଡ଼ାଇ ଦେଇନାହୁଁ, ଯଦ୍ଦ୍ୱାରା କି ଆମେ ତାଙ୍କ ନାମ ସବୁ ମନେରଖିବୁ । ଆମେ ତ ଭଗବାନଙ୍କୁ ଜାଣୁ । ତାଙ୍କର ମାମୁଁଅଜା ଦେବକଙ୍କୁ ଜାଣୁ ଓ ଉଗ୍ରସେନଙ୍କୁ ଜାଣୁ, ତାଙ୍କ ମାତା ଦେବକୀଙ୍କୁ ଜାଣୁ ଓ ତାଙ୍କର ଗୋଟିଏ ମାମୁଁ କଂସକୁ ଜାଣୁ । ତାଙ୍କର ମାଉଁ, ମାଉସୀ, ଖୁଡ଼ୀ, ଦେଢେଇ ଏ ସମସ୍ତଙ୍କଠାରେ ଆମର କି ପ୍ରୟୋଜନ ? ହଁ ଆପଣ ତ ପ୍ରବକ୍ତା, ତେଣୁ ଆପଣ ସମସ୍ତଙ୍କ ନାମ ମନେରଖିବା ଉଚିତ୍ । ଏଥର ଆପଣ କହି ଚାଲନ୍ତୁ ଓ ଆମେ ଶୁଣିଯାଉ । ଯାହା ସ୍ମରଣ ରଖିବା ଉଚିତ୍ ବୋଲି ମନେକରିବୁ, ତାହା ସ୍ମରଣ ରଖିବୁ ।"

ସୂତ କହିଲେ—"ହଁ ମହାରାଜ ! ଆପଣ ଯାହା କହୁଛନ୍ତି ତାହା ବାସ୍ତବ କଥା । କିନ୍ତୁ ଭଗବନ୍ ! ଆମକୁ ଯେଉଁ ବିଷୟରେ କହିବାକୁ ପଡ଼େ, ତା' ପୂର୍ବରୁ ପ୍ରଥମେ ତାହାର ଭୂମିକା ପ୍ରସ୍ତୁତ କରିବାକୁ ପଡ଼ିଥାଏ । ସବୁ ତଥ୍ୟ ସଂଗ୍ରହ କରିବାକୁ ପଡ଼ିଥାଏ । ଯେପରି କୌଣସି ଶିଳ୍ପୀ କୌଣସି ଯନ୍ତ୍ର ତିଆରି କରିବା ପୂର୍ବରୁ ସମସ୍ତ ପ୍ରକାର ଆବଶ୍ୟକୀୟ ସାମଗ୍ରୀ ସଂଗ୍ରହ କରି ରଖେ ଓ ଯେତେବେଳେ ଯେଉଁ ସାମଗ୍ରୀର ଆବଶ୍ୟକତା ପଡ଼େ ତାହା କାମରେ ଲଗାଏ । ସମସ୍ତ ସମୟରେ ସେ ସଂଗ୍ରହ କରିଥିବା କେତେକ ବସ୍ତୁ ଆଦୌ ଦରକାର ପଡ଼େ ନାହିଁ । ତେଣୁ ଶ୍ରୀକୃଷ୍ଣ ଚରିତ ଶୁଣାଇବା ପାଇଁ ମୁଁ ସମସ୍ତ ପ୍ରକାର ତଥ୍ୟ ସଂଗ୍ରହ କରି ରଖିଛି । ଅତି ସଂକ୍ଷେପରେ ଭଗବାନ ଶ୍ରୀକୃଷ୍ଣଙ୍କର ନଅ ଜଣାଙ୍କ ବିଷୟ ଓ ତାଙ୍କ ମାଉସୀମାନଙ୍କ ବୃତ୍ତାନ୍ତ କହି ତା' ପରେ ଭଗବାନଙ୍କ ଚରିତ କହିବି ।"

ଶୌନକ କହିଲେ—"ତାହାହେଲେ ଠିକ୍ ଅଛି, ଆପଣ ଏକ ନିଃଶ୍ୱାସରେ ଭଗବାନଙ୍କ ନଅ ଜଣାଙ୍କ ବଂଶ କଥା କହିଦିଅ ।"

ସୂତ କହିଲେ—"ତେବେ କହୁଛି ମହାରାଜ ! ଶୁଣନ୍ତୁ । ଆଉ ଆପଣ ମୋତେ କହିବେ ନାହିଁ ଯେ, ମୁଁ ଘାସ କାଟିବା ଭଳି କହି ଯାଉଛି ବୋଲି । ଭଗବାନଙ୍କ ନଅ ଜଣାଙ୍କ ମଧ୍ୟରେ ଦେବଭାଗ ପ୍ରଥମ, ଦେବଶ୍ରବା ଦ୍ୱିତୀୟ, ଆନକ ତୃତୀୟ, ସୃଞ୍ଜୟ ଚତୁର୍ଥ, ଶ୍ୟାମକ ପଞ୍ଚମ, କଙ୍କ ଷଷ୍ଠ, ଶମୀକ ସପ୍ତମ, ବତ୍ସକ ଅଷ୍ଟମ ଓ ବୃକ ନବମ

କନ୍ୟା ଅଟନ୍ତି । ପୁନଶ୍ଚ କଂସା ପ୍ରଥମ, କଂସବତୀ ଦ୍ୱିତୀୟ, କଙ୍କା ତୃତୀୟ, ଶୂରଭୂ ଚତୁର୍ଥ ଓ ରାଷ୍ଟ୍ରପାଳିକା ପଞ୍ଚମ, ଏ ପାଞ୍ଚଜଣ ହେଉଛନ୍ତି ଭଗବାନ କୃଷ୍ଣଙ୍କର ମାଉସୀ । ବସୁଦେବ ଚିନ୍ତା କଲେ, ଏବେ କେଉଁଠାରେ ହେଲେ ଶ୍ୱଶୁରାଳୟ ଖୋଜି ଠିକ୍ କରିବାକୁ ପଡ଼ିବ । ନିଜ ଭାଇମାନଙ୍କର ବିବାହ ବି ନିଜ ଶ୍ୱଶୁର ଘରେ ସମ୍ପାଦନ ହେବ । ତେଣୁ ନିଜର ପାଞ୍ଚ ଶାଳୀଙ୍କୁ ସେ ଭାଇଙ୍କ ସହିତ ବିବାହ କରାଇ ଦେଲେ । ଅବଶିଷ୍ଟ ଚାରି ଜଣ ବାକି ରହିଲେ । ତେଣୁ ସେମାନଙ୍କ ପାଇଁ ଏଣେ ତେଣେ ଯୁଟାଯୁଟି କରି କାର୍ଯ୍ୟ ସମାପ୍ତ କରିଦେଲେ । ଏଥିପାଇଁ ଭଗବାନଙ୍କର ପାଞ୍ଚ ମୌସା ଓ ପାଞ୍ଚ ମାଉସୀ ଥିଲେ, ଏହାଙ୍କ ବ୍ୟତୀତ ଖୁଡ଼ି ବି ଥିଲେ । ବଡ଼ ମାଉସୀ କଂସା ବଡ଼ କନ୍ୟା ଦେବଭାଗଙ୍କୁ ବିବାହ କରିଥିଲେ । ଏହି ଦୁହିଙ୍କଠାରୁ ଭଗବାନଙ୍କର ଚିତ୍ରକେତୁ ଓ ବୃହଦ୍‌ବଳ ଏହି ଦୁଇ ମାଉସୀ ପୁଅ ଭାଇ ଉତ୍ପନ୍ନ ହୋଇଥିଲେ । କଂସବତୀ ମାଉସୀ ଦେବଶ୍ରବା କକାଙ୍କୁ ବିବାହ କରିଥିଲେ । ତାଙ୍କର ସୁବୀର ଓ ଇଷୁମାନ ନାମକ ଦୁଇ ପୁତ୍ର ହୋଇଥିଲେ । କଙ୍କା ମାଉସୀ ଅନକ କକାଙ୍କୁ ବିବାହ କରିଥିଲେ । ତାଙ୍କର ସତ୍ୟଜିତ୍ ଓ ପୁରୁଜିତ୍ ନାମକ ଦୁଇ ପୁତ୍ର ହୋଇଥିଲେ । ସୃଞ୍ଜୟ ରାଷ୍ଟ୍ରପାଳିକାଙ୍କୁ ବିବାହ କରିଥିଲେ ଓ ତାଙ୍କର ବୃଷ ଓ ଦୁର୍ମର୍ଷଣାଦି କେତେକ ପୁତ୍ର ହୋଇଥିଲେ । ଶ୍ୟାମକ କକା ଶୂରଭୂମିଙ୍କୁ ବିବାହ କରିଥିଲେ ଓ ତାଙ୍କର ହରିକେଶ ଏବଂ ହିରଣ୍ୟାକ୍ଷ ଏହି ପୁତ୍ର ହୋଇଥିଲେ । ଏବେ ମାଉସୀଙ୍କ କଥା ତ ସରିଲା । ଏହାପରେ କେବଳ ଚାରି କକା ବାକି ରହିଲେ । ସେମାନଙ୍କ ମଧ୍ୟରୁ ବତ୍ସକ କକା ମିଶ୍ରକେଶୀ ନାମକ ଏକ ଅପ୍‌ସରାକୁ ବିବାହ କରିଥିଲେ । ତାଙ୍କଠାରୁ ବୃକ ଆଦି କେତେକ ପୁତ୍ର ଜାତ ହୋଇଥିଲେ । ବୃକ କକାଙ୍କର ବି ଦୁର୍ବାକ୍ଷୀ ନାମ୍ନୀ ଏକ ଅପ୍‌ସରା ପତ୍ନୀ ହୋଇଥିଲେ । ତାଙ୍କଠାରୁ ତକ୍ଷ, ପୁଷ୍କଳ ଓ ଶାଳ ଆଦି କେତେକ ପୁତ୍ର ଜନ୍ମ ହୋଇଥିଲେ । ଶମୀକ କକାଙ୍କର ସୁଦାମିନୀ ନାମକ ରାଣୀ ଥିଲେ । ତାଙ୍କଠାରୁ ସୁମିତ୍ର ଓ ଅର୍ଜ୍ଜୁନପାଳ ଆଦି କେତେକ ପୁତ୍ର ଜନ୍ମଲାଭ କରିଥିଲେ । କଙ୍କ କକାଙ୍କର ସ୍ତ୍ରୀଙ୍କର ନାମ ଥିଲା କର୍ଣ୍ଣିକା । ତାଙ୍କଠାରୁ ଋତଧାମ ଓ ଜୟ ଏହି ଦୁଇପୁତ୍ର ହୋଇଥିଲେ । ମୁଁ ଅତି ସଂକ୍ଷେପରେ ବସୁଦେବଙ୍କର ସାନଭାଇମାନଙ୍କର ବଂଶ ବିଷୟରେ କହିଲି । ଏବେ ଆପଣମାନେ ବସୁଦେବଙ୍କର ବଂଶ କଥା ଶ୍ରବଣ କରନ୍ତୁ ।''

ଶୌନକ କହିଲେ—''ହେ ସୂତ ! ଏହି ବଂଶବିସ୍ତାରକୁ କେଉଁଠି ହେଲେ ତ ସମାପ୍ତ କରିବେ ନା ଏହିପରି ଆପଣ କହି ଚାଲିଥିବେ । ମହାଭାଗ ! ଏବେ ବହୁତ ହୋଇଗଲା । ଆମ୍ଭମାନଙ୍କୁ ଆପଣ ଶ୍ରୀକୃଷ୍ଣ-ଚରିତ ଶୁଣାନ୍ତୁ ।''

ସୂତ କହିଲେ—''ତେବେ ଠିକ୍ ଅଛି ମହାତ୍ମନ ! ଏବେ ମୂଳ ଆଲୋଚନାକୁ ଆମେ ଆସିଗଲେ । ବହୁତ ଯାଇ ଅଳ୍ପ ବାକି ଅଛି, ତାହା ମଧ୍ୟ ସମାପ୍ତ ହେବ ।''

ବର୍ତ୍ତମାନ ଆପଣମାନେ ଚିନ୍ତା କରନ୍ତୁ ଭଗବାନଙ୍କ ସମ୍ବନ୍ଧରେ କେତେ କେତେ ବଂଶାନୁଚରିତ ବର୍ଣ୍ଣନା କହିଗଲିଣି । ଭଗବାନଙ୍କର ନିଜ ସମ୍ବନ୍ଧୀୟ ଭାଇମାନଙ୍କ ନାମ ନ କହିଲେ ଏହା ଉଚିତ୍ ହେବନାହିଁ । ଏହା ଏତେ ବେଶି ନୁହେଁ । ବସୁଦେବଙ୍କର ତେର ପତ୍ନୀ ଥିଲେ । ପ୍ରତ୍ୟେକଙ୍କର ଆଠ ଆଠ, ଦଶ ଦଶ ପୁତ୍ର ଥିଲେ । ନିର୍ଦ୍ଦେଶ ଦେଲେ ଏ ସମସ୍ତଙ୍କର ନାମ କହିବି । ହଁ ତେବେ ଶୁଣନ୍ତୁ, ବସୁଦେବଙ୍କର ଛଅ ଓ ସାତ ଏହିପରି ତେର ପତ୍ନୀ ଥିଲେ । ସେମାନଙ୍କ ନାମ—ପୌରବୀ, ରୋହିଣୀ, ଭଦ୍ରା, ମଦିରା, ରୋଚନା ଓ ଇଳା ଏ ସମସ୍ତେ ମିଶି ଛଅ ହେଲେ । ଏହାଙ୍କ ବ୍ୟତୀତ ଧୃତଦେବା, ଶାନ୍ତିଦେବା, ଉପଦେବା, ଶ୍ରୀଦେବା, ଦେବରକ୍ଷିତା, ସହଦେବା ଓ ଦେବକୀ ଏ ସାତଜଣ ହେଉଛନ୍ତି ମହାରାଜ ଦେବକଙ୍କର କନ୍ୟା । ଏହିପରି ସର୍ବମୋଟ ତେର ଜଣ ସ୍ତ୍ରୀ ଥିଲେ । ଏମାନଙ୍କ ମଧ୍ୟରୁ ରୋହିଣୀଙ୍କ ଗର୍ଭରୁ ବଳଦେବ, ଗଦ, ସାରଣ, ଦୁର୍ମଦ, ବିପୁଳ, ଧ୍ରୁବ ଓ କୃତ ଆଦି କେତେକ ପୁତ୍ର ଜାତ ହୋଇଥିଲେ । ପୌରବୀଙ୍କଠାରୁ ସୁଭଦ୍ର, ଭଦ୍ରବାହୁ, ଦୁର୍ମଦ, ଭଦ୍ର ଓ ଭୂତ ଆଦି ଦ୍ୱାଦଶ ପୁତ୍ର ଜାତ ହୋଇଥିଲେ । ମଦିରାଙ୍କଠାରୁ ନନ୍ଦ, ଉପନନ୍ଦ, କୃତକ ଓ ଶୂର ଆଦି ଉତ୍ପନ୍ନ ହୋଇଥିଲେ । କୋଶଳ ଦେଶର ଯେଉଁ ଭଦ୍ରା ଥିଲେ, ଯାହାଙ୍କର ନାମ ଥିଲା କୌଶଲ୍ୟା, ତାଙ୍କର କେଶୀ ନାମକ ଏକ କୁଳର କୀର୍ତ୍ତିକୁ ଉଜ୍ଜ୍ୱଳ କରିଥିବା ପୁତ୍ର ଜାତ ହୋଇଥିଲା । ରୋଚନାଙ୍କଠାରୁ ହସ୍ତ, ହେମାଙ୍ଗଦ ଆଦି କେତେକ ପୁତ୍ର ଜାତ ହୋଇଥିଲେ । ଇଳାଙ୍କଠାରୁ ଉରୁ, ବଲ୍କଲ ଆଦି ବୀର ଯାଦବ ଜାତ ହୋଇଥିଲେ । ଏତ ଗଲା ଛଅ ପତ୍ନୀଙ୍କ ବଂଶ କଥା, ଏବେ ମହାରାଜ ଦେବକଙ୍କର ଯେଉଁ ସାତ କନ୍ୟା ଥିଲେ ଓ ସେମାନେ ସମସ୍ତେ ବସୁଦେବଙ୍କୁ ବିବାହ କରିଥିଲେ, ତାଙ୍କ ବଂଶ କଥା ଶୁଣନ୍ତୁ ।

ଜ୍ୟେଷ୍ଠା ପତ୍ନୀ ଧୃତଦେବାଙ୍କ ଗର୍ଭରୁ ବସୁଦେବଙ୍କ ଔରସରେ ମହା ତେଜସ୍ୱୀ ବିପୃଷ୍ଠ ନାମକ 'ଶୂରବୀର' ବଳୀ ପୁତ୍ର ଉତ୍ପନ୍ନ ହୋଇଥିଲା । ଉପଦେବାଙ୍କଠାରୁ କଳ୍ପ ବର୍ଷ ଆଦି ଦଶ କ୍ଷତ୍ରିୟ ରାଜା ଉତ୍ପନ୍ନ ହୋଇଥିଲେ । ଶ୍ରୀଦେବାଙ୍କଠାରୁ ବସୁ, ହଂସ ତଥା ସୁବଂଶ ଆଦି ଛଅ ପୁତ୍ର ଜାତ ହୋଇଥିଲେ । ଦେବରକ୍ଷିତାଙ୍କଠାରୁ ନଅ ପୁତ୍ର ଜାତ ହୋଇଥିଲେ ଓ ସେମାନଙ୍କ ମଧ୍ୟରେ ଗଦ ମୁଖ୍ୟ ଥିଲେ । ସହଦେବାଙ୍କଠାରୁ ଆଠ ପୁତ୍ର ଉତ୍ପନ୍ନ ହୋଇଥିଲେ । ଏମାନଙ୍କ ମଧ୍ୟରୁ ଆଠ ପୁତ୍ର ବସୁପୁତ୍ର ରୂପେ ଉତ୍ପନ୍ନ ହୋଇଥିଲେ । ଏମାନଙ୍କ ମଧ୍ୟରେ ପୁରୁ ଓ ବିଶ୍ରୁତ ମୁଖ୍ୟ ଥିଲେ ।

ବର୍ତ୍ତମାନ ସବୁଠାରୁ କନିଷ୍ଠା ପତ୍ନୀ ଦେବକୀଙ୍କ ଠାରୁ ଜାତ ହୋଇଥିବା ଆଠ ପୁତ୍ର ଓ ଏକ କନ୍ୟାଙ୍କ କଥା ଶୁଣନ୍ତୁ । କନ୍ୟାଟି ସବୁଠାରୁ ସାନ ଥିଲା ଓ ତାହାର ନାମ ଥିଲା ସୁଭଦ୍ରା, ଏବଂ କୀର୍ତ୍ତିମାନ୍, ସୁଷେଣ, ଭଦ୍ରସେନ, ଋଜୁ, ସମ୍ମର୍ଦ୍ଦନ, ଭଦ୍ର ଓ ଶେଷାବତାର ଭଗବାନ୍ ସଙ୍କର୍ଷଣ ଓ ବସୁଦେବ ଏହି ଆଠ ପୁତ୍ର ଜାତ ହୋଇ ଥିଲେ ।

ଶୌନକ କହିଲେ—"ହେ ସୂତ ! ବସୁଦେବଙ୍କର ବାସୁଦେବ ଥିଲେ ଅଷ୍ଟମ ପୁତ୍ର !"

ସୂତ ହସି ହସି କହିଲେ—"ଆଜ୍ଞା ମହାରାଜ ! ଏହି ଅଷ୍ଟମ ଦେବକୀ ସୁତଙ୍କ ବିଷୟ କହିବାକୁ ଯାଇ ମୁଁ ଏତେଗୁଡ଼ିଏ ଗାଥା ଗାଇଗଲି । ଦେବକୀଙ୍କର ଏହି ଅଷ୍ଟମ ପୁତ୍ର ହିଁ ସ୍ୱୟଂ ସାକ୍ଷାତ୍ ଶ୍ରୀହରି । ସେହି ହିଁ ସାକ୍ଷାତ୍ ସ୍ୱୟଂ ପରାତ୍ପର ପ୍ରଭୁ ଭଗବାନ ବାସୁଦେବ ଥିଲେ । ଏହାଙ୍କର ଜନ୍ମ ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ ତିଥିରେ ହୋଇ ଥିଲା । ଏହାକୁ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ରୂପେ ପାଳନ କରାଯାଏ । ସେହି ଅଜ, ଅଚ୍ୟୁତ, ଅବ୍ୟକ୍ତ, ଅନାଦି, ଅଚିନ୍ତ୍ୟ ଶ୍ରୀହରି ଭାଦ୍ରବ ମାସର ଏହି ଅଷ୍ଟମୀ ତିଥିରେ ଅର୍ଦ୍ଧରାତ୍ର ସମୟରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ ଅବତାର କଥା ମୁଁ ଆପଣମାନଙ୍କ ଆଗରେ ବର୍ଣ୍ଣନା କରିବି । ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ଶୂର ପୁତ୍ର ବସୁଦେବ ବଂଶ କୁଁ ଅବ ହୌଂ ଗାଉଁ ।
ତେରହ ରାନୀ ହୁତ ସବନ କେ ନାମ ଗିନାଉଁ ।
ସୁନହୁ ରୋହିଣୀ, ଇଲା, ପୌରବୀ ଅରୁ ଧୃତଦେବା ।
ଭଦ୍ରା, ମଦିରା, ଦେବରକ୍ଷିତା ଅରୁ ସହଦେବା ।
ଶାନ୍ତିଦେବା ସୁନ୍ଦରୀ, ଶ୍ରୀଦେବା ହୂ ନାମ କୀ ।
ଉପଦେବା ଇନ ସବନ ମହଁ, ସବ ତେଂ ଛୋଟୀ ଦେବକୀ ।



# ଶ୍ରୀକୃଷ୍ଣ ରୂପସୁଧାର ଦୃଷ୍ଟାନ୍ତ

ଯସ୍ୟାନନଂ ମକରକୁଣ୍ଡଳଚାରୁକର୍ଣ୍ଣଭ୍ରାଜତ୍‌କପୋଳ
ସୁଭଗଂ ସବିଲାସହାସମ୍,
ନିତ୍ୟୋତ୍ସବଂ ନ ତତୃପୁର୍ଦୃଶିଭିଃ ପିବନ୍ତ୍ୟୋ
ନାର୍ଯ୍ୟୋ ନରାଶ୍ଚ ମୁଦିତାଃ କୁପିତା ନିମେଶ୍ଚ ।
(ଶ୍ରୀ ଭା ୯ ସ୍କ ୨୪ ଅ ୬୫ଶ୍ଳୋ)

## ରୂପପଦ୍ମ

ଆଠ ସାତ ଦଶ ଏକ ଭଯ୍ୟେ ସବୁକେ ହୀ ସୁତବର୍ ।
ଆଠ ଦେବକୀ ଜନେ ଭଯ୍ୟେ ଅଷ୍ଟମ ଶ୍ରୀ ଗିରଧର ।।
ଜବ ଜବ ହୋବେ ଧର୍ମ ନାଶ ବାଢ଼େ ଅଧ ଅତଶୟ୍ୟ ।
ତବ ତବ ଲେ ଅବତାର କରହୁଁ ହର ଧର୍ମ ଅଭ୍ୟୁଦୟ୍ୟ ।।
କୌନ କହୁ ସକେ କୌତୁକୀ, କେ କାରନ୍ ଅବତାର କୋ ।
କୌତୁକ-ବଶ କ୍ରୀଡ଼ା କରତ, କାଜ ସଗତ ସଂସାର କୋ ।।

ସଂସାରରେ ଯେତେ ଆଲୋକ ଦେଖିବାକୁ ମିଳେ, ସେ ସମସ୍ତ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନିଙ୍କର ଆଲୋକ ବା ପ୍ରକାଶ । ଏମାନଙ୍କୁ ବି କୌଣସି ଏକ ସ୍ଥାନରୁ ପ୍ରକାଶ ମିଳିଥାଏ । ଆମ୍ଭେମାନେ ବିଦ୍ୟୁତର ପ୍ରକାଶ ସହର ଆଦିରେ ଦେଖି ଭ୍ରାନ୍ତ ଓ ଚକିତ ହୋଇ ରହିଯାଉ । କୌଣସି ଶ୍ରୀମାନ୍‌ଙ୍କ ଘର ଅତ୍ୟଧିକ ଆଲୋକିତ ହେଉଥିବାର ଦେଖି ଆମ୍ଭେମାନେ ତାଙ୍କର ପ୍ରଶଂସା କରିବାରେ ଲାଗୁଁ । ସେତେବେଳେ ଆମ୍ଭେମାନେ ଏହି କଥାକୁ ଭୁଲିଯାଇଥାଉ ଯେ, ଶ୍ରୀମାନ୍‌ଙ୍କ ଘରେ ଆଲୋକିତ କରୁଥିବା ବିଦ୍ୟୁତ୍ ଆଲୋକ ବିଦ୍ୟୁତ୍ କେନ୍ଦ୍ରରୁ ଆସୁଅଛି, ଯେଉଁଠାରୁ କି ସମସ୍ତଙ୍କୁ ଆଲୋକ ମିଳେ । ଯଦି ଆମ୍ଭମାନଙ୍କର ଦୃଷ୍ଟି ସେହି କେନ୍ଦ୍ରଆଡ଼କୁ ରହେ, ତେବେ ଆମ୍ଭେମାନେ ଆଶ୍ଚର୍ଯ୍ୟ, ବିସ୍ମୃତ, ସମ୍ମୋହ ତଥା ଚକିତ ହେବାନାହିଁ । ସଂସାରରେ ଆମ୍ଭେମାନେ ସ୍ତ୍ରୀ, ପୁରୁଷ, ଯୁବକ, ଯୁବତୀ, ବାଳକ, ବାଳିକା ଓ ଅନ୍ୟ କୌଣସି ବସ୍ତୁରେ ସୌନ୍ଦର୍ଯ୍ୟ ଦର୍ଶନ କରି ବିମୁଗ୍ଧ ହୋଇଯାଉ । ଓ ହୋ ! କି ସୁନ୍ଦର, କି ମାଧୁର୍ଯ୍ୟ, କି ଲାବଣ୍ୟ ? ସେ

ସମସ୍ତରେ ଆମର ମନେହୁଏ ଯେଉଁଠାରୁ ଏହି ସୌନ୍ଦର୍ଯ୍ୟ ଏହି ବସ୍ତୁକୁ ଆସୁଅଛି, ସେହି ସୌନ୍ଦର୍ଯ୍ୟ ସମ୍ମୁଖରେ ଏ ସବୁ ସୌନ୍ଦର୍ଯ୍ୟ କିଛି ନୁହେଁ । ଏହା ଅତଳ ଅଗାଧ ସମୁଦ୍ର ଆଗରେ ଏକ ବିନ୍ଦୁ ସଦୃଶ । ସେତେବେଳେ ଆମ୍ଭେମାନେ ସେହି ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ନିଜ ନିଜର ସଂସାର ବନ୍ଧନକୁ ଆଉ ସୁଦୃଢ଼ କରି ନ ଥାଉ । ସେହି ଅଚିନ୍ତ୍ୟ, ଅଲୌକିକ, ଅଦ୍ଭୁତ, ଅପାର ସୌନ୍ଦର୍ଯ୍ୟର ଛଟା ସମୟ ସମୟରେ ଏଚ୍ୟୁତ ଅବନୀ ଉପରେ ଅବତରିତ ହୋଇ ଭାଗ୍ୟବାନ୍ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି ଓ ସେମାନଙ୍କ ନୟନକୁ ସଫଳ କରନ୍ତି । ଯେଉଁମାନେ ସେହି ସୌନ୍ଦର୍ଯ୍ୟ ରାଶିକୁ ଥରେ ହେଲେ ବି ଆଉ ନୟନରେ ଦେଖି ନେଇଛନ୍ତି, ସେମାନେ ଧନ୍ୟ, କୃତାର୍ଥ ଓ ମୁକ୍ତ ଅଟନ୍ତି ।

ଭଗବାନଙ୍କର ପ୍ରତ୍ୟେକ ଅବତାର ସୁନ୍ଦର, ତାଙ୍କର ସମସ୍ତ ଚେଷ୍ଟା ସୁନ୍ଦର ଓ ସେ ଯେଉଁ ରୂପ ଧାରଣ କରନ୍ତୁ ନା କାହିଁକି, ତାହା ମଧ୍ୟ ସୁନ୍ଦର । ସେ ଯେଉଁ ବସ୍ତ୍ର ଆଭୂଷଣ ଧାରଣ କରି ଥାଆନ୍ତି, ତାହା ମଧ୍ୟ ଅଙ୍ଗର ସୌନ୍ଦର୍ଯ୍ୟ ନେଇ ସୁନ୍ଦର ହୋଇଥାଏ । ଭଗବାନ୍ ଦେବତା, ଋଷି, ମନୁଷ୍ୟ, ତିର୍ଯ୍ୟକ୍, ପଶୁ, ପକ୍ଷୀ, ଜଳଚର, ନଭଶ୍ଚର, ଓ ଭୂ-ଚର ଆଦି ସମସ୍ତ ଯୋନିରେ ଅବତରିତ ହୁଅନ୍ତି । ପ୍ରତ୍ୟେକେ ତାଙ୍କ ରୂପକୁ ଦେଖି ମୁଗ୍ଧ ହୁଅନ୍ତି, ଆତ୍ମବିସ୍ମୃତ ହୁଅନ୍ତି; କିନ୍ତୁ ଏହି ଶ୍ରୀକୃଷ୍ଣାବତାରରେ ତ ସେ ନିଜ ସୌନ୍ଦର୍ଯ୍ୟର, ପରାକାଷ୍ଠା ଦେଖାଇଛନ୍ତି । ଏପରି ସୁନ୍ଦର ସ୍ୱରୂପ ପୃଥିବୀ ପୃଷ୍ଠରେ କେବେ ପ୍ରକଟ ହୋଇ ନ ଥିଲା କିମ୍ବା ଏହାଠାରୁ ଅଧିକ ସୌନ୍ଦର୍ଯ୍ୟ ଭବିଷ୍ୟତରେ କେବେହେଲେ ପ୍ରକଟ ହୋଇ ନ ପାରେ । ସ୍ଥାବର, ଜଙ୍ଗମ, ଚର-ଅଚରଙ୍କ କଥା ତ ଅଲଗା । ସେ ନିଜେ ମଧ୍ୟ ନିଜର ଅଦ୍ଭୁତ ରୂପକୁ ନିରୀକ୍ଷଣ କରି ଆତ୍ମବିସ୍ମୃତ ହୋଇ ପଡ଼ନ୍ତି । ଯେତେବେଳେ ବି ସେ ଆଦର୍ଶରେ ନିଜର ରୂପ ଅବଲୋକନ କରନ୍ତି, ସେତେବେଳେ ଆପେ ଆପେ କହି ଉଠନ୍ତି, ଓ ହୋ ! କି ସୌନ୍ଦର୍ଯ୍ୟ ! କ'ଣ ବାସ୍ତବରେ ମୁଁ ଏତେ ସୁନ୍ଦର ? ପୁନଶ୍ଚ ଦେଖନ୍ତି ଯେ, କ୍ଷଣେ କ୍ଷଣେ ସେହି ରୂପ ନବୀନ ନବୀନ ହୋଇ ଯାଉଛି । ପ୍ରତି ମୁହୂର୍ତ୍ତରେ ସେ ତାହା ଭୁଲି ଯାଆନ୍ତି ଓ ବିସ୍ମିତ ନୟନରେ ଦେଖନ୍ତି । ଏହି ସୌନ୍ଦର୍ଯ୍ୟ କେଡ଼େ ଚିତ୍ତାକର୍ଷକ ନୁହେଁ ସତେ ? ଏ ମାଧୁର୍ଯ୍ୟ କେଉଁଠାରୁ ଆସିଲା ? ଯେତେବେଳେ ସେ ନିଜେ ନିଜ ରୂପରେ ମୁଗ୍ଧ ହୋଇ ଯାଉଛନ୍ତି, ଅନ୍ୟ କାହା କଥା ପଚାରେ କିଏ ? କିଏ ଅବା ସେହି ରୂପକୁ ବର୍ଣ୍ଣନା କରିବାରେ ସକ୍ଷମ ହୋଇ ପାରିବ ? କିଏ ସେହି ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଜୋର୍ ଦେଇ କିଛି କହି ପାରିବ ? ଆମ୍ଭେମାନେ ସମସ୍ତେ ତ ସେହି ରୂପର ଛାୟା-ଛବି କଥା ହିଁ କହିଥାଉ ।

ସୂତ କହିଲେ—"ମୁନିଗଣ ! ଦେବକୀଙ୍କର ଅଷ୍ଟମ ଗର୍ଭରୁ ସ୍ୱୟଂ ପରାତ୍ପର ପ୍ରଭୁ ସାକ୍ଷାତ୍ ପ୍ରକଟ ହୋଇଥିଲେ ।"

ଶୌନକ କହିଲେ—"ହେ ସୂତ ! ଭଗବାନଙ୍କର କି ଆବଶ୍ୟକ ଥିଲା ଯେ, ସେ ଏହି କୋଳାହଳ-ପୂର୍ଣ୍ଣ ସଂସାରରେ ଏହି ଦୁଃଖପୂର୍ଣ୍ଣ ମର୍ତ୍ତ୍ୟଧର୍ମୀ ମର୍ତ୍ତ୍ୟ-ଲୋକରେ ଆସି ଅବତରିତ ହୋଇ ଥିଲେ ?"

ସୂତ କହିଲେ—"ମହାରାଜ ! ଭଗବାନଙ୍କର ଧର୍ମ ଅତ୍ୟଧିକ ପ୍ରିୟ । ଧର୍ମ ତାଙ୍କର ହୃଦୟର ପୁତ୍ର । ଯଦି ତ ଅଧର୍ମ ତାଙ୍କ ପୃଷ୍ଠ ଦେଶରୁ ଉତ୍ପନ୍ନ ହୋଇଥିବା ପୁତ୍ର, ତଥାପି ସେ ତାଙ୍କର ଏତେ ଆଦରଣୀୟ ନୁହେଁ । ପୃଥିବୀରେ ଯେଉଁ ଯେଉଁ ସମୟରେ ପାପର ଅଭ୍ୟୁଦୟ ହୋଇଯାଏ, ଯେଉଁ ଯେଉଁ ସମୟରେ ସଂସାରରେ ଧର୍ମର ହ୍ରାସ ଘଟେ, ସେହି ସେହି ସମୟରେ ସେହି ସର୍ବେଶ୍ୱର ସର୍ବାତ୍ମା ଶ୍ରୀହରି ବିଭିନ୍ନ ରୂପରେ ଅବତରିତ ହୁଅନ୍ତି ।"

ଶୌନକ କହିଲେ—"ହେ ସୂତ ! ସାଧୁ ସନ୍ଥଙ୍କର ପରିତ୍ରାଣ ଓ ଦୁଷ୍କୃତ-ମାନଙ୍କର ବିନାଶ କରିବା କ'ଣ ଭଗବାନଙ୍କର ଅବତାର ହେବାର ଏକମାତ୍ର କାରଣ ?"

ସୂତ ହସି ହସି କହିଲେ—"ନା, ମହାରାଜ ! ତାଙ୍କର ଅବତାର ହେବାର ଯଥାର୍ଥ କାରଣ ସମ୍ବନ୍ଧରେ କିଏ ବା କହିବାକୁ ସକ୍ଷମ ହେବ ? ଦୁଷ୍ଟଗଣଙ୍କର ବିନାଶ ଓ ଶିଷ୍ଟମାନଙ୍କର ପାଳନ ତ ସେ ତାଙ୍କ ସଂକଳ୍ପମାତ୍ରେ କରିପାରନ୍ତି । ଜୀବଗଣଙ୍କର ଉତ୍ପତ୍ତି, ସ୍ଥିତି ଓ ବିନାଶ ତ ତାଙ୍କର ମାୟା ବିଳାସର ହେତୁ । ଯାହାଙ୍କର ଅହୈତୁକୀ ଅନୁଗ୍ରହ ହିଁ ଏହି ଜନ୍ମମରଣାଦିର ସବୁ ସମସ୍ୟା ପାଇଁ ନିବୃତ୍ତି, ଆତ୍ମସ୍ୱରୂପ ଓ ସୁଖ ସ୍ୱରୂପ ପ୍ରାପ୍ତିର ହେତୁ, ତାଙ୍କ ଅବତାର ସମ୍ବନ୍ଧରେ ନିଶ୍ଚିତ କରି କହିବା ଦୁଃସାହସ ମାତ୍ର । ଏହା ଅଜ୍ଞତା ଓ ମୂର୍ଖତା ମଧ୍ୟ ।"

ସେହି ପ୍ରଭୁଙ୍କର ଅବତାର ସମ୍ବନ୍ଧରେ ଯଦି କିଛି କୁହାଯାଇ ପାରୁଥାଏ, ତେବେ ଏହା ହିଁ ହୁଏ ଯେ, ସେ ଭକ୍ତଙ୍କ ଉପରେ କୃପା କରିବା ପାଇଁ କେବଳ ପୃଥିବୀ ପୃଷ୍ଠରେ ଅବତରିତ ହୋଇ ଥାଆନ୍ତି । ନିଜର ଅନୁଗତ ଆଶ୍ରିତମାନଙ୍କ ଉପରେ ଅନୁଗ୍ରହ କରିବା ବ୍ୟତୀତ ଆଉ କୌଣସି ନିର୍ଦ୍ଦିଷ୍ଟ କାରଣ ଅଛି ବୋଲି କହି ହୁଏନାହିଁ । ଯେଉଁ ଗାଈ ନିଜ ଉଦରରୁ ସ୍ତନ ମାଧ୍ୟମରେ କ୍ଷୀର ପ୍ରଦାନ କରେ, ତାହାର କାରଣ ହେଉଛି, ନିଜ ବତ୍ସ ପ୍ରତି କୃପା । ସେ ବାତ୍ସଲ୍ୟ ସ୍ନେହରେ ଦୁଗ୍ଧ ପ୍ରଦାନ କରେ । ଏହି ଦୁଗ୍ଧ ନିଃସୃତ ହେଉଥିବା ସମୟରେ କେହି ଦୋହନ କରି ତାହା ପାନ କରନ୍ତି, କେହି ଏହି ଦୁଗ୍ଧ ପାନ କରି ନିଜର ବଳ ବୃଦ୍ଧି କରନ୍ତି, କେହି ନିଜର ଆତ୍ମତୃପ୍ତି କରି ପାନ କରନ୍ତି, କେହି ନିଜର ପରାକ୍ରମ ବୃଦ୍ଧି କରନ୍ତି । ଗାଈର ଦୃଷ୍ଟି ତ ସର୍ବଦା ତା ବତ୍ସ ଉପରେ ହିଁ ନିବଦ୍ଧ ଥାଏ । ମାତାର ଦୁଗ୍ଧ ଉପରେ ସମ୍ପୂର୍ଣ୍ଣ ଅଧିକାର ତ ବତ୍ସର ।

ଏ କଳି ଯୁଗରେ ଜନ୍ମ ହୋଇଥିବା ମନୁଷ୍ୟ ଅତ୍ୟନ୍ତ ଦୀନ । ସେମାନେ ଦୁଃଖ ଓ ଶୋକଯୁକ୍ତ । କାହାକୁ ଧ୍ୟାନ କରିବା ଦ୍ୱାରା ସେମାନେ ଦୁଃଖ ଶୋକରୁ ମୁକ୍ତ ହେବେ ? ଏହା ହିଁ ଭକ୍ତବତ୍ସଳ ଭଗବାନ ଚିନ୍ତା କଲେ । ସେ ଚିନ୍ତାକଲେ— "ଅଳ୍ପରେ ସୁଖ ନାହିଁ, କ୍ଷୁଦ୍ରରେ ସୁଖ ନାହିଁ, ବିନାଶୀରେ ରସ ନାହିଁ । ମୁଁ କାହିଁକି ଅଦ୍ଭୁତ ରୂପ ନେଇ ଏହି ଦୁଃଖିତ, କ୍ଲାନ୍ତ ଜୀବଗଣଙ୍କ ମଧ୍ୟରେ ଅବତୀର୍ଣ୍ଣ ନ ହେବି ? କାହିଁକି ବା ମୁଁ ନିଜର ଅପାର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, ଲାବଣ୍ୟ ରୂପ ନ ଦେଖାଇ ଏମାନଙ୍କୁ ଶାନ୍ତିସୁଧା ପାନ ନ କରାଇବି ? ମୋ ରୂପର ଧ୍ୟାନ କରି ଅନନ୍ତକାଳ ପର୍ଯ୍ୟନ୍ତ ଜୀବ ସୁଖଶାନ୍ତି ଅନୁଭବ କରିବେ । ସେମାନଙ୍କର କ୍ଳେଶ, ଦୁଃଖ, ଶୋକ, ସନ୍ତାପ ଓ ଆଧିବ୍ୟାଧିଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଦୂର ହୋଇଯିବ । ମୋର ଯଶ ରୂପୀ ଅମୃତକୁ କର୍ଣ୍ଣପୁଟରେ ପ୍ରେମପୂର୍ବକ ପାନ କରିବାରେ ଜୀବ ଏହି ଭବସାଗରକୁ ଅନାୟାସରେ ପାର ହୋଇ ଯିବେ ।" ଏହିସବୁ କଥା ଚିନ୍ତା କରି ସେ ଅଜ୍ଞାନ ନିବୃତ୍ତିକାରୀ ନିଜର ପରମ ସୁଯଶ ସଂସାରରେ ବିସ୍ତାର କଲେ । ନିଜର ତ୍ରୈଲୋକ୍ୟ-ମୋହିନୀ ମୂର୍ତ୍ତିକୁ ପୃଥିବୀ ପୃଷ୍ଠରେ ପ୍ରକାଶ କଲେ । ଯେଉଁ ଅନୁପମ ରୂପକୁ ସାକ୍ଷାତ୍ ଦର୍ଶନ କରିବା ମାତ୍ରେ ଜୀବ ସମସ୍ତ ଅଶୁଭରୁ ସଙ୍ଗେ ସଙ୍ଗେ ନିସ୍ତାର ଲାଭ କରେ, ତାଙ୍କର ଯଶ ରୂପକ ପବିତ୍ର ତୀର୍ଥରେ ଅବଗାହନ କରୁଥିବା ସାଧୁଜନ, ତାହାକୁ ନିଜର କର୍ଣ୍ଣପୁଟରେ ବାରମ୍ବାର ପାନ କରୁଥିବା ପ୍ରଣତ ପୁରୁଷ ବା ଶରଣାଗତ ବ୍ୟକ୍ତି ମୋକ୍ଷର ପ୍ରତିବନ୍ଧ ସ୍ୱରୂପ କର୍ମବାସନାକୁ ସଙ୍ଗେ ସଙ୍ଗେ ତ୍ୟାଗ କରି ସଂସାର ବନ୍ଧନରୁ ଚିରଦିନ ପାଇଁ ମୁକ୍ତ ହୋଇ ଯାଆନ୍ତି । ବାରମ୍ବାର ପାନ ନ କରି ପାରିଲେ ମଧ୍ୟ, ଯଦି ଥରେ ମାତ୍ର ଶ୍ରୀହରିଙ୍କ ଯଶ ରୂପକ ଅମୃତକୁ ଶ୍ରୋତ୍ର ରୂପକ ଅଞ୍ଜଳିଦ୍ୱାରା କେବଳ ଆଚମନ କରି ପାରନ୍ତି, ତାହାହେଲେ କଲ୍ୟାଣ ହେବା ସୁନିଶ୍ଚିତ ।

ଏହି ଶ୍ରୀକୃଷ୍ଣାବତାରରେ ଭଗବାନ ମୁମୁକ୍ଷୁ, ମୁକ୍ତ, ନିତ୍ୟ ତଥା ବଦ୍ଧ ଜୀବଙ୍କ ପାଇଁ ବଡ଼ ବଡ଼ ଶ୍ରୁତିମଧୁର, ତ୍ରୈଲୋକ୍ୟପାବନ, ହୃଦୟସ୍ଥ ତଥା ଇନ୍ଦ୍ରିୟ ସୁଖ ପ୍ରଦାୟକ କ୍ରୀଡ଼ା ବା ଲୀଳା କରିଥିଲେ । କାମୀ, ବୀର, ଏପରିକି ସାଂସାରିକ ବିଷୟୀ ପ୍ରତି ମଧ୍ୟ ଏହି ଲୀଳା ଉତ୍କୃଷ୍ଟ ଥିଲା । ସେ ସମୟରେ ଅସୁରଗଣ ଧରିତ୍ରୀରେ ରାଜା ରୂପେ ଅବତୀର୍ଣ୍ଣ ହୋଇଯାଇ ଥିଲେ । ଅନେକ ଅକ୍ଷୌହିଣୀ ସେନା ବଳରେ ବଳୀୟାନ ହୋଇ ପ୍ରଭୁ ହୋଇ ଯାଇଥିଲେ । ସେମାନେ ଅତ୍ୟନ୍ତ ଦୁଃସାହସୀ, ଅଭିମାନୀ, କ୍ରୁର ହୋଇ ତପସ୍ୟାରେ ମଧ୍ୟ ମଜ୍ଜି ଯାଉଥିଲେ ଓ ସେମାନଙ୍କୁ କେହି ମାରିପାରୁ ନ ଥିଲେ । କାରଣ ସେମାନଙ୍କଠାରେ ତପଶକ୍ତି ବି ଥିଲା । ଭଗବାନଙ୍କ ବ୍ୟତୀତ ଏପରି ସାମର୍ଥ୍ୟଯୁକ୍ତ କ୍ରୂରକର୍ମୀଙ୍କର ବିନାଶ କରିବାକୁ କିଏ ଅବା ସକ୍ଷମ ହୋଇପାରି ଥାଆନ୍ତା ? ସେମାନଙ୍କ ଉପଦ୍ରବରେ ପୃଥିବୀ ଆକ୍ରାନ୍ତ ହୋଇ ପଡ଼ିଥିଲା । ସାଧୁ ସନ୍ଥଗଣ ବିନମ୍ର-ଭାବରେ ବିଶ୍ୱମ୍ଭରଙ୍କୁ ପ୍ରାର୍ଥନା କଲେ । ପ୍ରତି ପ୍ରାଣୀଙ୍କର ଅନ୍ତର୍ଯ୍ୟାମୀ ତଥା ହୃଦୟସ୍ଥର

ସ୍ୱଦକୁ ଜାଣି ପାରୁଥିବା, ଗୋ-ବ୍ରାହ୍ମଣଙ୍କ ବ୍ରତପାଳକ, ବ୍ରହ୍ମଣ୍ୟଦେବ ଗୋପାଳ ପୃଥିବୀକୁ ପାପଭାର ନିବାରଣ କରିବା ପାଇଁ ନିଜର ବଡ଼ଭାଇ ଶେଷାବତାର ସଙ୍କର୍ଷଣଙ୍କ ସହିତ ଧରାବକ୍ଷରେ ଅବତୀର୍ଣ୍ଣ ହେଲେ । ଅବତାର ଧାରଣ କରି ସେହି ଭଗବାନ୍ ମଧୁସୂଦନ ଏଭଳି କଠିନ କାର୍ଯ୍ୟମାନ କଲେ ଯେ, ତାହା ଦେବେଶ୍ୱରଗଣ ଅନ୍ତଃ-କରଣରେ ବି ଅନୁମାନ କରି ପାରିଲେ ନାହିଁ ।

ମହାରାଜ ! ଯାହାଙ୍କର ଲବଣ୍ୟମୟୀ ଲଳିତ ଲୀଳା ଭୋଜବଂଶୀ, ବୃଷ୍ଣିବଂଶୀ, ଅନ୍ଧକବଂଶୀ, ମଧୁବଂଶୀ, ଶୂରସେନ, ଦଶାର୍ହ, କୁରୁ, ସୃଞ୍ଜୟ ଓ ପାଣ୍ଡୁ-ବଂଶୀୟ ବୀରଗଣ ନିରନ୍ତର ଗାନ କରନ୍ତି ଏବଂ ତାଙ୍କର ପ୍ରଶଂସା କରନ୍ତି, ସେହି ଶ୍ରୀହରି ନିଜ ଚେଷ୍ଟାରେ ସଂସାରକୁ ତୃପ୍ତ କରି ଦେଇଥିଲେ । ସଂସାରୀମାନଙ୍କୁ ଏକ ସତ୍ୟ ସୁଖର ମାର୍ଗ ଦର୍ଶନ କରାଇ ଥିଲେ । ସେ ତାଙ୍କର ସ୍ନେହଯୁକ୍ତ ମନ୍ଦ ମନ୍ଦ ମଧୁର ହସମୁଖ ବାଙ୍କ ଚାହାଣୀରେ ଚାରି ରାଜ୍ୟରେ ପ୍ରେମ-ପ୍ରସାଦ-ପୂର୍ଣ୍ଣ କଳାସମୟୀ ବାଣୀରେ ବଳ, ବିକ୍ରମ ଓ ସାହସମୟୀ ଲଳିତ ଲୀଳା ମାଧ୍ୟମରେ ତ୍ରୈଲୋକ୍ୟ ପାବନ ଭୁବନମୋହନ ଦେବାଙ୍ଗ ସୁନ୍ଦର ସୁଖମୟ ସ୍ୱରୂପରେ ନରଲୋକକୁ ଉତ୍ଫୁଲ୍ଲ କରାଇ ତାକୁ ଆନନ୍ଦ ପ୍ରଦାନ କରିଥିଲେ । ହେ ମୁନିଗଣ ! ସେହି ଶ୍ରୀହରିଙ୍କର ସମ୍ପୂର୍ଣ୍ଣ ଅଙ୍ଗର ବର୍ଣ୍ଣନ କିଏ ବା କରିବାକୁ ସକ୍ଷମ ହେବ ? କେବଳ ଦୃଷ୍ଟାନ୍ତ ପାଇଁ, ରସାସ୍ୱାଦନ କରାଇବା ପାଇଁ ତାଙ୍କର ଅନୁପମ ଆନନର ଯତ୍କିଞ୍ଚିତ୍ ବର୍ଣ୍ଣନା କରି ପୁନଶ୍ଚ ତାଙ୍କ ଲଳିତ ଲୀଳା-ଗୁଡ଼ିକୁ ସଂକ୍ଷେପରେ ବର୍ଣ୍ଣନା କରିବି ।

"ମୁନିଗଣ ! ଆପଣମାନେ ଟିକିଏ ନିଜ ନିଜର ଦୁଗ୍ଧଫେନନିଭ ସ୍ୱଚ୍ଛ, କମଳ ସମ ବିକସିତ, କୁନ୍ଦ ପୁଷ୍ପ ପରି ସରସ ନେତ୍ରକୁ ବନ୍ଦ କରି ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଯୁକ୍ତ ଆନନକୁ ଧ୍ୟାନ କରନ୍ତୁ ।"

ଶୌନକ କହିଲେ—"ହେ ସୂତ ! ଆପଣ ବାରମ୍ବାର ଆନନ ଆନନ ବୋଲି କହୁ ଅଛନ୍ତି । ଶ୍ରୀକୃଷ୍ଣଙ୍କର ମୁଖ-କମଳକୁ ଆପଣ ମୁଖାରବିନ୍ଦ, ଚନ୍ଦ୍ରବଦନ ଆଦି କାହିଁକି ନ କହୁଛନ୍ତି ?"

ସୂତ ହସି ହସି କହିଲେ—"ହଁ ଅଜ୍ଞା, ମହାରାଜ ! ଆନନ କହିବାର ଅନେକ କାରଣ ଅଛି । ଆନନ କହିବାର ଅଭିପ୍ରାୟ ଏହି ଯେ, ଏହି ମୁଖକୁ ଅନ୍ୟ ସାଧାରଣ ମୁଖ ବୋଲି ମନେକରି ତାହା ଦର୍ଶନ କରିବାକୁ ଆସିବା ଅନୁଚିତ୍ । ଏଥିପାଇଁ ସାବଧାନତା ଅବଲମ୍ବନ ଏକାନ୍ତ ଆବଶ୍ୟକ । ଏହା ଏପରି ଏକ ଅଗାଧ ରସସାଗର ଯେ, ସେଥିରେ ପ୍ରବେଶ କରୁ କରୁ ନିମଗ୍ନ ହୋଇଯିବେ, ବୁଡ଼ିଯିବେ । ଏଥିପାଇଁ ଯଦି ସାବଧାନ ହୋଇ ଆସିବେ ତ ଆସନ୍ତୁ, ନ ଆସିଲେ ନ ଆସନ୍ତୁ ।"

ଅଥବା ମୁଖକୁ ଯେଉଁମାନେ ଚନ୍ଦ୍ର ସହିତ, କମଳ ସହିତ ଉପମା ଦିଅନ୍ତି ବା ତୁଳନା କରନ୍ତି, ସେମାନଙ୍କର ଉପମା ଏ ସ୍ଥଳରେ ଫିକା ପଡ଼ିଯାଏ । "ଆ ସମନ୍ତାତ୍

ନ ନ ।’’ ଅର୍ଥାତ୍ ଏଠାରେ ଚନ୍ଦ୍ର ଉଦ୍ଧୃତି ପାଉବେ ନାହିଁ କି କମଳ ବି ଉତ୍ପତି ପାଇବ ନାହିଁ । ବିନା ଉପମାରେ ତ ଏହାଙ୍କୁ ଅନୁପମ ବୋଲି ବିଚାର କରି କେବଳ ‘ଆନନ’ ବୋଲି ଉପସ୍ଥରରେ କହି ଦେଲି ।

ଅଥବା ଯାହାଙ୍କ ଦର୍ଶନ ପାଇବା ପାଇଁ ବ୍ରଜ ଜୀବଗଣ ବିଭିନ୍ନ ବିଗରୁ ଚେଷ୍ଟା କରି ଥାଆନ୍ତି, ସେ ସେହି ରୂପମାଧୁରୀଙ୍କୁ ସବୁବେଳେ ଦର୍ଶନ କରି କରି ରହନ୍ତି । ‘‘ଆସମନ୍ତାତ୍ ଅନନଂ—ଚେଷ୍ଟନଂ—ଯଦ୍ ଦର୍ଶନେନ ବ୍ରଜ ଜୀବାନାଂ ତତ୍ ଆନନଂ ।’’ ଏହି ପ୍ରକାର ଏହି ଆନନ୍ଦ ଶବ୍ଦ ବାହୁର୍ଥ ବାଚକ ଅଟେ । ଏଥିପାଇଁ ମୋର ଗୁରୁଦେବ ମୋତେ କୌଣସି ବିଶେଷଣ ନ ଲଗାଇ ଖାଲି ‘ଆନନ’ ବୋଲି କହୁ ଥିଲେ । ଯଦି ମୁଁ ଏହାର ଶାସ୍ତ୍ରୀୟ ବିଚାର ଆଲୋଚନା ଆରମ୍ଭ କରି ଦିଏ, ତେବେ ଆପଣମାନେ ‘ଆନନ’ରେ ହିଁ ଅଟକି ରହି ଯିବେ । ଯଦିଚ ଜୀବ ଏହି ଆନନର ତେଜ ସମ୍ପର୍କରେ ଜ୍ଞାତ ହେବା ବା ସମ୍ପୃକ୍ତ ହେବା ହିଁ ପରମ ପୁରୁଷାର୍ଥ, ନେତ୍ରର ସାର୍ଥକତା, ତଥାପି ମଧ୍ୟ ହେ ମହାଭାଗ ! ନେତ୍ରଗୁଡ଼ିକୁ ଆହାର ଦେବା କେବଳ ଧର୍ମ ନୁହେଁ । ଚଞ୍ଚଳ କର୍ଣ୍ଣଗୁଡ଼ିକ ଏଥିପାଇଁ କେତେକାଳରୁ ତୃଷାର୍ତ୍ତ ନୁହନ୍ତି ? ସେଗୁଡ଼ିକ ଶ୍ରୀକୃଷ୍ଣଙ୍କ ଗୁଣ ଶ୍ରବଣ-ଲୋଲୁପ ହୋଇ ଦ୍ୱାର ଉନ୍ମୁକ୍ତ କରି କେତେକାଳ ହେଲା ରହି ନାହାନ୍ତି ? ଏମାନଙ୍କ ପାଇଁ ତ ପୁଣି କଛଟା ଶୀଳ-ସଙ୍କୋଚ କରାଯିବା କଥା, ଏମାନଙ୍କୁ ତ ପୁଣି ଯଶ-ରୂପକ ଅମୃତ ପାନ କରାଇବା କଥା । ତେଣୁ ଆଉ ଆନନର ଅର୍ଥ ନ କରି ଆନନର ମୁଁ ସୌନ୍ଦର୍ଯ୍ୟ ରସକୁ କେତେକାଂଶରେ ଆପଣମାନଙ୍କୁ ଆସ୍ୱାଦନ କରାଇବି । ଏହାର ଦୃଷ୍ଟାନ୍ତ ସହ ଅତ୍ୟନ୍ତ କର୍ଣ୍ଣପ୍ରିୟ ତଥା ଶ୍ରୁତିମଧୁର କୃଷ୍ଣଚରିତ ବର୍ଣ୍ଣନା କରିବି ।’’

ଶୌନକ କହିଲେ—‘‘ସୂତ ! ‘‘ଆସମନ୍ତାତ୍ ଆନନ = ଆନନମ୍ ଯା ଆ ସମନ୍ତାତ୍ ନ ନ ଆନନଂ ଏହି ବ୍ୟାଖ୍ୟାରେ ଆମ୍ଭମାନଙ୍କର ଆନନ୍ଦ ଅନୁଭବ ହେଉ ନାହିଁ । ଆପଣ ତ ଆମ୍ଭମାନଙ୍କୁ ସେହି ଅନୁପମ ଆନନର ମାନସିକ ଆକର୍ଷଣ କରାଇବେ ।’’

ସୂତ କହିଲେ—‘‘ହଁ, ନିଶ୍ଚୟ କରାଇବି ମହାରାଜ ! ଏବେ ନେତ୍ର ବନ୍ଦ କରନ୍ତୁ ଓ ଧ୍ୟାନ କରନ୍ତୁ । ଶିରରେ ଦୋଳାୟମାନ ମୟୂର ପୁଚ୍ଛ ଶୋଭିତ ମୁକୁଟ, କଳା କଳା କୁଞ୍ଚିତ କେଶଗୁଚ୍ଛ, କେଶରେ ସ୍ଥିତିସ୍ଥାପକ କ୍ଷୁଦ୍ର ରୂପା କାଠି, (Clip) ମନୋହର ଦୋଳାୟମାନ କପୋଳ ବ୍ୟଞ୍ଜନକାରୀ କେଶଗୁଚ୍ଛର, ନୀଳ-କମଳ ସମ କର୍ଣ୍ଣାବୃତକାରୀ ଅର୍ଦ୍ଧ କୁଞ୍ଚିତ କେଶ କର୍ଣ୍ଣର ନିମ୍ନଭାଗସ୍ଥ ଛିଦ୍ର ବିମଣ୍ଡିତ ମକରକୁଣ୍ଡ ଳମନୀୟ ଦୋଳାୟମାନ କୁଣ୍ଡଳ । କେବଳ କର୍ଣ୍ଣର ନାହିଁକି ଏହା କପୋଳର ଶ୍ରୀବୃଦ୍ଧି ମଧ୍ୟ କରୁଅଛି । ଗୋଲ ଗୋଲ ଦର୍ପଣ ସମାନ ଲୋଳ କପୋଳ କୁଣ୍ଡଳର ଝଲକରେ, ନେତ୍ରରଶ୍ମିର ଚମକରେ, କୁଞ୍ଚିତ କେଶଗୁଚ୍ଛର ଆଭାରେ, ସୌନ୍ଦର୍ଯ୍ୟ ବିକଶିତ ହେଉଛି । ପକ୍ୱ ବିମ୍ବଫଳ ପରି ଲାଲ୍ ଲାଲ୍ ତଥା ରସରେ ଟଳ ଟଳ ହେଉଥିବା ଅଧରରେ ମନ୍ଦ ମନ୍ଦ ବିକଶିତ ହାସ୍ୟଛଟା ଯେତେ ଯେପରି ବନ୍ଧୁଲି ଫୁଲର

କଳିକା ଉପରେ ଚନ୍ଦ୍ରରଶ୍ମି ଛଟିକ ପଡ଼ୁଛି ଓ ମୃଦୁମନ୍ଦ ମଳୟରେ ଝିଲ୍ ଝିଲ୍ କରି ତାହାକୁ ହର୍ଷୋତ୍‌ଫୁଲ୍ଲ କରୁଛି । ଏହିପରି ସେହି ରସସିକ୍ତ ଲଜକୁଆ ଲଜକୁଆ ମଧୁମୟ ହାସ୍ୟରେ ଓଷ୍ଠ ହଲି ଯାଉଛି । ଦୁଇଟି ପଦ୍ମଫୁଲ ପରି ବଡ଼ ବଡ଼ ନେତ୍ରର କଟାକ୍ଷରୂପକ ବାଣ ସଙ୍ଗେ ଯେପରି ଭୃକୁଟୀ ରୂପକ ଧନୁଶରେ ଟଙ୍କାଯାଇ ଦର୍ଶକଙ୍କୁ ଆହତ କରିବା ପାଇଁ ପ୍ରସ୍ତୁତ ହେଉଛି । ଏତାଦୃଶ ସେହି ଶ୍ୟାମସୁନ୍ଦର, ମଦନମୋହନ, ଆନନ୍ଦକନ୍ଦ, ବ୍ରଜଚନ୍ଦ୍ରଙ୍କର ମୁଖାରବିନ୍ଦକୁ ଅବଲୋକନ କରି ସେହି ସୌନ୍ଦର୍ଯ୍ୟର ମଧୁର ମକରନ୍ଦକୁ ନିଜ ନିଜର ନୟନପୁଟରେ ଯଥେଷ୍ଟ ପାନକରି ମଧ୍ୟ ପ୍ରତ୍ୟେକ ନର-ନାରୀ, ଯୁବକ ଯୁବତୀ, ତ୍ୟାଗୀ-ବୈରାଗୀ ଓ ସଂସାରାସକ୍ତ ମନୁଷ୍ୟ କଦାପି ତୃପ୍ତ ହେଉ ନ'ଥିଲେ । ସେମାନେ ଚାହୁଁଥିଲେ—ଅପଲକ ଭାବରେ ସେହି ସାକାର ରୂପର ମନଲୋଭା ଆନନକୁ ନିରୀକ୍ଷଣ କରୁଥିବେ; କିନ୍ତୁ ମଝିରେ ମଝିରେ ସେମାନଙ୍କର ନେତ୍ରର ପଲକ ଏଥିରେ ପ୍ରତିବନ୍ଧକ ହେଉଥିଲା । ନେତ୍ରର ପଲକ ଶୀଘ୍ର ପଡ଼ିଯାଉଥିବାରୁ ଦର୍ଶନରେ ସମୟର ବ୍ୟବଧାନ ବୃଦ୍ଧି ପାଉଥିଲା । ଏଥିପାଇଁ ପ୍ରତ୍ୟେକ ପଲକର ଅଧିଷ୍ଠାତୃ ଦେବ ରାଜା ନିମିଙ୍କୁ ଗାଳିଦେଇ କହୁଥିଲେ ଯେ, ହେ ନିମି ! ତୁମେ ହିଁ ଆମ୍ଭମାନଙ୍କ ଦର୍ଶନରେ ବିଘ୍ନ ସୃଷ୍ଟି କରୁଅଛ, ପଲକ ମାରି ଦର୍ଶନରେ ଅନ୍ତରାୟ ସୃଷ୍ଟି କରୁଅଛ, ତେଣୁ ଶୀଘ୍ର ଏହି ପଲକ ପ୍ରଥାକୁ ତୁମେ ଉଠାଇ ନିଅ । ବିଧାତାଙ୍କୁ କହିଦିଅ ଆମ୍ଭମାନଙ୍କର ନେତ୍ରର ପଲକ ଆଉ ଯେପରି ନ ପଡ଼େ । ତାହା ଅନ୍ୟ ସମୟରେ ଯେପରି ପଡ଼ିବା କଥା ପଡ଼ୁ ପଛକେ; କିନ୍ତୁ ଆମ୍ଭେମାନେ ଶ୍ରୀକୃଷ୍ଣଙ୍କ ରୂପସୁଧା ପାନ କଲାବେଳେ ନ ପଡ଼ୁ ।"

ସୂତ କହିଲେ—"ମୁନିଗଣ ! ମୁଁ ଆଉ ଅଧିକ କ'ଣ ଅବା ଆପଣମାନଙ୍କୁ କହିବି, ଭଗବାନଙ୍କର ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ଅକଥନୀୟ । ସେହି ଭାଗ୍ୟବାନ୍ ବ୍ୟକ୍ତିମାନେ ହିଁ ଏହା ଅନୁମାନ କରିପାରନ୍ତି, ଯେଉଁମାନେ କି ଥରେ ମାତ୍ର ତାଙ୍କୁ ଦର୍ଶନ କରିଛନ୍ତି । ସେମାନଙ୍କୁ ସଂସାରର ସୌନ୍ଦର୍ଯ୍ୟ ଫିକା ଫିକା ଦେଖାଯାଏ । ମହାଭାଗ ! ଏବେ ମୁଁ ଶ୍ରୀକୃଷ୍ଣଙ୍କ ଚରିତ କହିବାକୁ ଆରମ୍ଭ କରୁଅଛି । ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍ପୟ

ତା ଦେପି ଶତବନ ମଧୁର ମନ୍ଦ ମୃଦୁହାସ-ମୟୀ ହେ ।
ନୟନ ପଟନ ତେଂ ପାନ କରନ ଛବି ସୁଧାମଇ ହେ ॥
କାନନ କୁଣ୍ଡଲ ସୁଧର କପୋଲନ ଆନନ୍ଦ ଦମକେ ।
ଚକ୍ଷୁରଶ୍ମି କେ ପରତ ସୁଦାମିନ ସମ ସୋ ଚମକେ ॥
ଇକ ଟକ ନିରଖହିଂ ନାରି-ନର, ମନ ଅଁଟକେ ଶତ ଚକିତ ହ୍ଵୈ ।
ପରେ ପଲକ ବ୍ୟବଧାନ ତୋ, ନିମିକୂଁ କୋସେଂ ଦୁଃଖିତ ହ୍ଵୈ ।



କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ